ଜ୍ଞାନଯୁଗ

# ସାହିତ୍ୟ ଶବ୍ଦକୋଷ



ଡକ୍ଟର ରମେଶ ଚନ୍ଦ୍ର ପାଣି

ଜ୍ଞାନଯୁଗ

# ସାହିତ୍ୟ ଶବ୍ଦକୋଷ


ସଂକଳକ

ଡକ୍ଟର ରମେଶ ଚନ୍ଦ୍ର ପାଣି





ଜ୍ଞାନଯୁଗ ପବ୍ଲିକେଶନ

ଭୁବନେଶ୍ୱର

# ଜ୍ଞାନଯୁଗ ସାହିତ୍ୟ ଶବ୍ଦକୋଷ

ସଂକଳକ : ଡକ୍ଟର ରମେଶ ଚନ୍ଦ୍ର ପାଣି

ISBN 81-89726-29-3



ପ୍ରକାଶନ ଉପଦେଷ୍ଟା :
ବିନୋଦ ବିହାରି ବିଶୋଇ
(M) ୯୯୩୭୬୯୪୭୮୧

ପ୍ରକାଶକ :
ଜ୍ଞାନଯୁଗ ପବ୍ଲିକେଶନ୍, ଏନ୍-୬/୪୨୮,
ଆଇ.ଆର୍.ସି.ଭିଲେଜ, ନୂଆପଲ୍ଲୀ,
ଭୁବନେଶ୍ୱର-୧୫, ଫୋନ୍ ନଂ.- ୨୫୫୨୦୯୧

ମୁଦ୍ରଣ :
କ୍ରିଏଟିଭ୍ ଅଫସେଟ୍, ଏନ୍-୬/୪୨୮,
ଆଇ.ଆର୍.ସି.ଭିଲେଜ, ନୂଆପଲ୍ଲୀ,
ଭୁବନେଶ୍ୱର-୧୫, ଫୋନ୍ ନଂ.- ୨୫୫୨୦୯୧

ପ୍ରଥମ ପ୍ରକାଶ : ୨୦୦୭
ଦ୍ୱିତୀୟ ପ୍ରକାଶ : ୨୦୦୯

ମୂଲ୍ୟ : ଟ ୧୩୫.୦୦ ଙ୍କା

Published by Smt. Susama Bisoi on behalf of Gyanajuga Publications,
N-6/428, IRC Village, Nayapalli, Bhubaneswar-751015, Orissa.
Ph: (0674) 2552091 / 2556107.

## ଉତ୍ସର୍ଗ

ଓଡ଼ିଶାର ବାଗ୍‌ଦେବୀ ମା'ଶାରଳାଙ୍କର ଚରଣ କମଳରେ
ଅର୍ପଣ କରୁଅଛି ।

ରମେଶ

# ସ୍ୱୀକାରୋକ୍ତି

ସାହିତ୍ୟ ଭାଷାନୁବଦ୍ଧ ଅଭିବ୍ୟକ୍ତିର ମହାସମୁଦ୍ର । ଏହାର ବୈଚିତ୍ର୍ୟମୟ ଅଙ୍ଗ ଓ ଆତ୍ମାର ସଂଗଠନାରେ ଶବ୍ଦର ବିସ୍ମୟମୟ ଭୂମିକା କେବଳ ଚମକ୍ ଦିଏନାହିଁ ଚକିତ ମଧ୍ୟ କରିଥାଏ । ସାହିତ୍ୟ ସୃଷ୍ଟିର ଯଥାର୍ଥ ପରିଚୟ ଦେବାପାଇଁ ଓଡ଼ିଆ ଭାଷାରେ ତଥ୍ୟଭିତ୍ତିକ ପୁସ୍ତକଟିଏ ପାଇପାରିବାର ଅଭାବବୋଧ ହିଁ ଏ ସଂକଳନ ପ୍ରସ୍ତୁତିର ମାନସ ଭୂମି । ଉକ୍ତ ସଂକଳନ ସାହିତ୍ୟର ଇତିହାସ ନୁହେଁ କିମ୍ବା ଭାଷା ତାତ୍ତ୍ୱିକ ଅଧ୍ୟୟନ ଅବା ସାହିତ୍ୟ ତତ୍ତ୍ୱର ଅଧ୍ୟୟନ ପାଇଁ ଉଦ୍ଦିଷ୍ଟ ନୁହେଁ । ଓଡ଼ିଆ ସାହିତ୍ୟର ନିଜସ୍ୱ ବିଭବ ତଥା ସଂସ୍କୃତ ଓ ପାଶ୍ଚାତ୍ୟ ସାହିତ୍ୟର ବିଭିନ୍ନ ଉପାଦାନ, ଯାହାକୁ ନେଇ ଆମର ଭାଷା ସାହିତ୍ୟ ବହୁ ଐଶ୍ୱର୍ଯ୍ୟରେ ବିମଣ୍ଡିତ ହୋଇଛି ସେଗୁଡ଼ିକୁ ସଂଗ୍ରହ କରାଯାଇଛି । ଓଡ଼ିଆରେ ରଚିତ, ଅନୂଦିତ ଏବଂ ଆଲୋଚିତ ସାହିତ୍ୟ ସମ୍ବନ୍ଧିତ ବ୍ୟାକରଣ, ସାହିତ୍ୟତତ୍ତ୍ୱ, ଅଭିଧାନ, ଇତିହାସ ଗୁଡ଼ିକରୁ ଏହି ଶବ୍ଦ ଗୁଡ଼ିକର ପରିଭାଷା ସଂକଳିତ କରାଯାଇଛି । ଏଇଥିପାଇଁ ଯେ, ଆମ ସାହିତ୍ୟର ବୈଚିତ୍ର୍ୟମୟ ଉସ୍ ଏବଂ ରଚନାତତ୍ତ୍ୱର ଉପାଦାନ ଗୁଡ଼ିକ ଗୋଟିଏ ପୁସ୍ତକ ଭିତରେ ଜଣେ ପାଇପାରିବ ।

ବିଶେଷ ଭାବରେ ଏ ସମୟରେ ଓଡ଼ିଶାର ଲବ୍ଧପ୍ରତିଷ୍ଠିତ ସାରସ୍ୱତ ସ୍ରଷ୍ଟା ସର୍ବଶ୍ରୀ ବନମାଳୀ ରଥଙ୍କ ରଚିତ 'ଭାରତୀୟ ସାହିତ୍ୟ ତତ୍ତ୍ୱ', କେତକୀ ନାୟକଙ୍କ 'ସଂସ୍କୃତ କାବ୍ୟତତ୍ତ୍ୱ ବିଚାର', ଶ୍ରୀଧର ଦାସଙ୍କ 'ସର୍ବସାର ବ୍ୟାକରଣ', ବଂଶୀଧର ବିଶ୍ୱାଳଙ୍କ 'ଓଡ଼ିଆ ସାହିତ୍ୟ କୋଷ', ସୁରେନ୍ଦ୍ର ମହାରଣାଙ୍କ 'ଓଡ଼ିଆ ସାହିତ୍ୟର ଇତିହାସ', ବଂଶୀଧର ମହାନ୍ତିଙ୍କ 'ଓଡ଼ିଆ ସାହିତ୍ୟର ଇତିହାସ', ସୁରେନ୍ଦ୍ର ମହାନ୍ତିଙ୍କ 'ଓଡ଼ିଆ ସାହିତ୍ୟର ଆଦିପର୍ବ', ମଧ୍ୟପର୍ବ', ବିଭୂତି ପଟ୍ଟନାୟକଙ୍କ 'ସାହିତ୍ୟର ସୂଚୀପତ୍ର', ଡଃ ଚିତ୍ତରଞ୍ଜନ ମିଶ୍ରଙ୍କର 'ସାମ୍ପ୍ରତିକ ସାହିତ୍ୟ ତତ୍ତ୍ୱ', ଡଃ ଅଜୟ ମିଶ୍ରଙ୍କ 'ସାହିତ୍ୟିକ ମତବାଦ' ରୁ ସ୍ୱତନ୍ତ୍ର ଭାବେ ଆହରଣ କରିଥିବାରୁ ମୁଁ ସେମାନଙ୍କୁ ଆନ୍ତରିକ କୃତଜ୍ଞତା ଜଣାଉଛି । ଏହା ସହିତ ଏଥିରେ ସଂକଳିତ ଶବ୍ଦଗୁଡ଼ିକର ପରିଭାଷା ପାଇଁ ଓଡ଼ିଶାର ଅଗଣିତ ଲେଖକ ଓ ତାଙ୍କର ପୁସ୍ତକଗୁଡ଼ିକର ସାହାଯ୍ୟ ନେଇଛି ସେମାନଙ୍କୁ ମୋର ହୃଦୟର କୃତଜ୍ଞତା ଜଣାଉଛି ।

ସାହିତ୍ୟର ଏହା ଏକ ରୂପତାତ୍ତ୍ୱିକ ଶବ୍ଦ ସଂଗ୍ରହ ମାତ୍ର । କେବଳ ସାହିତ୍ୟର ଛାତ୍ରଟିଏ ପାଇଁ ନୁହେଁ, ସାଧାରଣ ଓଡ଼ିଆ ପାଠକଟିଏ ଏହାର ଉପଯୋଗୀତା ଉପଲବ୍ଧ କରିପାରିଲେ, ମୋର ଶ୍ରମ ସାର୍ଥକ ହେଲା ବୋଲି ଭାବିବି । ଏଥିରେ ସନ୍ନିବେଶିତ ସାହିତ୍ୟଶବ୍ଦ ଗୁଡ଼ିକର ପରିଭାଷା ବ୍ୟାଖ୍ୟାରେ ତ୍ରୁଟି ଥିଲେ, ସହୃଦୟତାର ସହିତ ସଂଶୋଧନ ପାଇଁ ପରାମର୍ଶ ଦେଲେ ମୁଁ ଚିର ଉପକୃତ ହୋଇ ରହିବି ।

ପରିଶେଷରେ ଜ୍ଞାନଯୁଗ ପ୍ରତିଷ୍ଠାନର ଉପଦେଷ୍ଟା ବନ୍ଧୁ ବିନୋଦ ବିହାରି ବିଶୋଇଙ୍କୁ ଏ ଶବ୍ଦକୋଷ ମୁଦ୍ରଣ ପାଇଁ ଅକୁଣ୍ଠିତ ଆନ୍ତରିକତା ବହନ କରିଥିବାରୁ ମୁଁ ତାଙ୍କୁ ଆନ୍ତରିକ କୃତଜ୍ଞତା ଜଣାଉଛି ।

ରମେଶ

# ଅ

**ଅ** - ଓଡ଼ିଆ ସ୍ୱରବର୍ଣ୍ଣର ପ୍ରଥମ ଅକ୍ଷର । 'ଅ' ଅର୍ଥ ବିଷ୍ଣୁ । ଅଭାବ ଅର୍ଥରେ ବ୍ୟବହୃତ ହୁଏ । 'ଅ'କାର ଯୁକ୍ତ ହେଲେ ବ୍ୟଞ୍ଜନବର୍ଣ୍ଣର ହସନ୍ତ ( ୍ ) ଚିହ୍ନ ଲୁପ୍ତ ହୁଏ । ଓଡ଼ିଆ କୃଦନ୍ତ ପ୍ରତ୍ୟୟ ଅନ୍ତର୍ଗତ 'ଅ' ପ୍ରତ୍ୟୟ ଭାବବାଚ୍ୟରେ ପରିଣତ ହୁଏ ।

**ଅକର୍ମକ କ୍ରିୟା** – ଯେଉଁ କ୍ରିୟାର କର୍ମ ନଥାଏ ତାହା ଅକର୍ମକ କ୍ରିୟା । ଅର୍ଥ ଭେଦରେ କ୍ରିୟା ସକର୍ମକ କିମ୍ବା ଅକର୍ମକ ହୋଇଥାଏ । ବ୍ୟବହାର ଅନୁସାରେ ସକର୍ମକ କ୍ରିୟା ଅକର୍ମକ ଓ ଅକର୍ମକ କ୍ରିୟା ସକର୍ମକ ହୋଇଥାଆନ୍ତି । କେତେକ ଅକର୍ମକ କ୍ରିୟା ତଦର୍ଥକ କର୍ମପଦ ଗ୍ରହଣ କରି ସକର୍ମକ ହୋଇଥାଆନ୍ତି । ଏ ପ୍ରକାର କର୍ମକୁ କ୍ରିୟାର୍ଥକ କର୍ମ କୁହାଯାଇଥାଏ । ଉଡ଼ିବା, ଚାଲିବା, କାଶିବା, ହସିବା ଇତ୍ୟାଦି ଅକର୍ମକ କ୍ରିୟା ।

**ଅକର୍ମସାଧନା** – 'ଅକର୍ମ' ଶବ୍ଦ ଗୂଢ଼ାର୍ଥ ଅଟେ । ଯେଉଁ କର୍ମକୁ ଦେଖି ହେବ ନାହିଁ ବା ଜାଣି ହେବନାହିଁ, ଯେଉଁ କର୍ମ ଅନ୍ତଃସାଧନାର ଅଙ୍ଗ, ତାହାହିଁ ଅକର୍ମସାଧନା । ଏହା ଓଡ଼ିଆ ସିଦ୍ଧ ସାହିତ୍ୟରେ ଦେଖାଯାଇଥାଏ । ଏହା ସାଧକର ଅନ୍ତର୍ମୁଖୀ ବ୍ରହ୍ମ ଭଜନ । ସାଧାରଣ ମଣିଷ ଜୀବନଧାରଣ ନିମିତ୍ତ ବିଭିନ୍ନ 'କର୍ମ'କୁ ପ୍ରାଧାନ୍ୟ ଦେଇଥାଏ କିନ୍ତୁ ସିଦ୍ଧଯୋଗୀ ମାନେ 'ଅକର୍ମ'କୁ ପ୍ରାଧାନ୍ୟ ଦେଇଥାନ୍ତି । ପଞ୍ଚସଖା ଓ ତାଙ୍କ ଅନୁଚରମାନେ- ଅକର୍ମସାଧନାକୁ ଗୁରୁତ୍ୱ ଦେଇଛନ୍ତି -

''ଅକର୍ମେ ବସୁଦେବ ପ୍ରୀତି । କର୍ମ କରିଲେ କ୍ଷୟଯାନ୍ତି''

**ଅଙ୍କ**– ନାଟକ ଅଧ୍ୟାୟଗୁଡ଼ିକୁ ଅଙ୍କ କୁହାଯାଏ । କେତୋଟି ଦୃଶ୍ୟକୁ ନେଇ ନାଟକରେ ଗୋଟିଏ 'ଅଙ୍କ' ଗଠିତ ହୋଇଥାଏ । ସଂସ୍କୃତ ଅଳଙ୍କାର ଶାସ୍ତ୍ରରେ ପ୍ରାଚୀନ ରୂପକକୁ କେତେଗୁଡ଼ିଏ ଅଧ୍ୟାୟରେ ବିଭକ୍ତ କରାଯାଇ ପ୍ରତ୍ୟେକ ବିଭାଗର ନାମ ରଖାଯାଇଥିଲା 'ଅଙ୍କ' । ଏହି ଅଙ୍କ ପାଞ୍ଚଟି ସନ୍ଧି ଯଥା– ମୁଖ, ପ୍ରତିମୁଖ, ଗର୍ଭ, ବିମର୍ଶ ଓ ନିର୍ବହଣ ଅନୁସାରେ ଗତିଶୀଳ ହେଉଥିଲା । କୌଣସି ପ୍ରଧାନ ଅଙ୍କ ଭିତରେ ଥିବା କ୍ଷୁଦ୍ର ଅଙ୍କକୁ 'ଗର୍ଭାଙ୍କ' କୁହାଯାଏ । ପ୍ରାଚ୍ୟ ଓ ପାଶ୍ଚାତ୍ୟତତ୍ତ୍ୱରେ ନାଟକ ଏକ ଅଙ୍କରୁ ପାଞ୍ଚ ଅଙ୍କ ବିଶିଷ୍ଟ ଦେଖାଯାଏ ।

**ଅଙ୍କମୁଖ**– ନାଟକର ଗୋଟିଏ ଅଙ୍କରେ ଅନ୍ୟ ସମସ୍ତ ଅଙ୍କର ସୂଚନା ଯାହା ଦ୍ୱାରା ମିଳେ ତାହାକୁ ଅଙ୍କମୁଖ କୁହାଯାଏ ।

**ଅଙ୍କାବତାର** – ନାଟକର ଗୋଟିଏ ଅଙ୍କର ଶେଷରେ ପରବର୍ତ୍ତୀ ଅଙ୍କର ସୂଚନା ଯାହା ଦ୍ୱାରା ଦିଆଯାଏ, ତାହାକୁ ଅଙ୍କାବତାର କୁହାଯାଏ

**ଅକ୍ରିୟବାଦ** – ଏହା ବୌଦ୍ଧଧର୍ମର ସମସାମୟିକ ଏକ ଦାର୍ଶନିକ ମତବାଦ । ଏହାର ପ୍ରବକ୍ତା ପୂରାଣ ପ୍ରସିଦ୍ଧ କାଶ୍ୟପ ଋଷି । ତାଙ୍କ ମତରେ ଦାନ, ଧର୍ମ, ସଂଯମ, ସତ୍ୟ ଭାଷଣ ଆଦି ଦ୍ୱାରା କୌଣସି ପୁଣ୍ୟ କିମ୍ବା ପାପ ମଧ୍ୟ ହୁଏନାହିଁ । ପାପ, ପୁଣ୍ୟ, ସ୍ୱର୍ଗ, ନର୍କ ଏକ ଭ୍ରାନ୍ତ ଧାରଣା । ଯାହା ନିଜ ତଥା ସମସ୍ତ ଲୋକଙ୍କ ପାଇଁ ଭଲ ତାହା କରଣୀୟ । ଏହା ପ୍ରକୃତି ଓ ପୁରୁଷ ଦୁଇ ମତରେ ବିଶ୍ୱାସୀ । ଏହା ସାଂଖ୍ୟ ମତ ସହ ପ୍ରାୟ ସମାନ ।

**ଅଙ୍ଗ** – ବୈଦିକ ସାହିତ୍ୟର ଅନ୍ତର୍ଗତ । ଚାରି ଉପବେଦ ଛଡ଼ା ବେଦର ଛଅଗୋଟି ଅଙ୍ଗ ଅଛି । ବେଦର ଅଧ୍ୟୟନକୁ ଯଥାରୀତି ଅଧ୍ୟୟନ କରିବାକୁ ହେଲେ ବେଦର ଛଅଟି ଅଙ୍ଗକୁ ଅଧ୍ୟୟନ କରିବାକୁ ହୁଏ ଯଥା - ଶିକ୍ଷା, କଳ୍ପ, ବ୍ୟାକରଣ, ନିରୁକ୍ତି , ଜ୍ୟୋତିଷ ଓ ଛନ୍ଦ । ସଂହିତାରେ, ବ୍ରାହ୍ମଣରେ ଓ ସୂତ୍ରରେ ଏହି ଛଅ 'ଅଙ୍ଗ'ର ପ୍ରୟୋଗ ରହିଛି । ଉଚ୍ଚାରଣ ସଂପର୍କରେ ଉପଦେଶ ରଚନାକୁ ଶିକ୍ଷା, ଯଜ୍ଞଯାଗାଦି କର୍ମ ସମ୍ବନ୍ଧୀୟ ଉପଦେଶ ରଚନା ଗୁଡ଼ିକୁ କଳ୍ପ, ଶବ୍ଦ ସମ୍ବନ୍ଧୀୟ ବିଚାର ଗୁଡ଼ିକୁ ବ୍ୟାକରଣ ଏବଂ ସେଗୁଡ଼ିକର ବ୍ୟୁତ୍ପତ୍ତି ଓ ଅର୍ଥ ସମ୍ବନ୍ଧରେ ବିଚାରକୁ ନିରୁକ୍ତ କୁହାଯାଏ । ଯଜ୍ଞଯାଗାଦି କରିବାକୁ ଠିକ୍ ମୁହୂର୍ତ୍ତର ବିଚାର ଓ ସେ ସମ୍ବନ୍ଧୀୟ ଜ୍ଞାନକୁ ଜ୍ୟୋତିଷ ଏବଂ ଛନ୍ଦ ସମ୍ବନ୍ଧରେ ଜ୍ଞାନକୁ ଛନ୍ଦ କୁହାଯାଏ ।

**ଅଗୂଢ଼ ବ୍ୟଙ୍ଗ୍ୟ** – ବ୍ୟଙ୍ଗ୍ୟାର୍ଥ ବାଚ୍ୟାର୍ଥ ପରି ସ୍ପଷ୍ଟ ଭାବରେ ଓ ସମକାଳରେ ପ୍ରତୀତ ହେଲେ ଅଗୂଢ଼ ବ୍ୟଙ୍ଗ ହୁଏ । ଯଥା

''ଭିତରେ କାନ୍ଦି ମୁଁ ବାହାରେ ହସୁଛି
ଏହା ମୋର ପରିଚୟ ।''

ମୋ ଜୀବନ ଦୁଃଖପୂର୍ଣ୍ଣ । ଏହାହିଁ ଏଥିରେ ବ୍ୟଙ୍ଗ । କିନ୍ତୁ ଏହା ବାଚ୍ୟାର୍ଥ ପରି ସ୍ପଷ୍ଟ ଭାବରେ ବୁଝାପଡୁଛି ।

**ଅଗୋଚରୀ ମୁଦ୍ରା** – ସିଦ୍ଧ ସାହିତ୍ୟରେ ମନକୁ ରୁଦ୍ଧ କରି ଏକାତ୍ମ କରିବାର ନାମ ଅଗୋଚରୀ ମୁଦ୍ରା । ଯୋଗଶାସ୍ତ୍ରାନୁଯାୟୀ ଏହି ମୁଦ୍ରା ସାହାଯ୍ୟରେ ବାହ୍ୟଶବ୍ଦ ଶ୍ରବଣ ପ୍ରତିରୋଧ କରାଯାଇ ଭିତରର ଅନାହତ ଶବ୍ଦ ସାଧକ ଶୁଣିଥାଏ ।

**ଅଚିନ୍ତ୍ୟ ଭେଦାଭେଦ** – ଏହାକୁ ଚୈତନ୍ୟମତ ଓ ଗୌଡ଼ୀୟ ବୈଷ୍ଣବମତ ବୋଲି କୁହାଯାଏ । ଅଚିନ୍ତ୍ୟ ଭେଦାଭେଦ ମତରେ ଜୀବ ଓ ପରମ ମଧ୍ୟରେ ଭେଦ ଓ ଅଭେଦ ଉଭୟ ଭାବ ବିଦ୍ୟମାନ । ଅଚିନ୍ତ୍ୟ ଭେଦାଭେଦ ଅନୁସାରେ ହରିର ତିନୋଟି ଶକ୍ତି ଯଥା- ସ୍ୱରୂପଶକ୍ତି, ତଟସ୍ଥଶକ୍ତି ଓ ମାୟାଶକ୍ତି ପ୍ରଧାନ । ଏହି ତିନିଶକ୍ତିକୁ ନେଇ ପରାଶକ୍ତି । ଏହାକୁ ଦ୍ୱୈତାଦ୍ୱୈତବାଦ କୁହାଯାଏ ।

**ଅଚେତନ** – ମନସ୍ତତ୍ତ୍ୱରେ ଯାହା 'ଇଡ୍' ଏବଂ ସାହିତ୍ୟରେ ଯାହା ଇଦମ୍ ରୂପେ ପରିଚିତ, ତାହା ଅଚେତନ ଭାବରେ ନାମିତ । ମନସ୍ତାତ୍ତ୍ୱିକ ବିଶ୍ଳେଷଣରେ ମଣିଷ ମନ, ଚେତନ ସ୍ତରରେ ଅବା ଅବଚେତନ ସ୍ତରରେ ଯେଉଁସବୁ କାମକରେ, ସେ ସବୁର ଅନ୍ତରାଳେ ଥାଏ 'ଅଚେତନ' ମନର ପ୍ରେରଣା । ଫ୍ରଏଡ୍ ତାକୁ ଇଡ୍, ଲିବିଡୋ ବା ଯୌନତା ବୋଲି କହନ୍ତି । ତାଙ୍କ ମତରେ ଏହି ଯୌନତା ମଣିଷକୁ ପରିଚାଳିତ କରେ । ସମସ୍ତ କାମ, କାମନା, ବାସନା, ଭାବନା ମୂଳରେ ଏହି ଯୌନତା ବିଦ୍ୟମାନ । ଏହା ଇଂରାଜୀ ଅନକନ୍‌ସସନେସ୍ Unconsciousness ର ପ୍ରତିଶବ୍ଦ ।

**ଅର୍ଚ୍ଚନା** – ଦେବତା ଓ ପୂଜ୍ୟପ୍ରିୟଜନଙ୍କୁ ଅର୍ଚ୍ଚନା ମାଧମରେ ଭକ୍ତି ପ୍ରକଟ କରାଯାଏ ।

ଶୁଦ୍ଧି ନ୍ୟାସାଦି ପୂର୍ବାଙ୍ଗ କର୍ମ ନିର୍ବାହ ପୂର୍ବକମ୍
ଅର୍ଚ୍ଚନଂତୁ ପଚାରାଣାଂସ୍ୟାନ୍ ମନ୍ତ୍ରେଣୋପପାଦନମ୍ ।

(ହ:ଭ:ର:ସ ୧/୨/୨୬)

ବୈଷ୍ଣବ ସମାଜର ମହନୀୟ ରଚନା ବିଷ୍ଣୁ ରହସ୍ୟରେ କୁହାଯାଇଛି –

ଶ୍ରୀ ବିଷ୍ଣୋରର୍ଚ୍ଚନଂ ଯେତୁ ପ୍ରକୁର୍ବନ୍ତି ନରାଭୁବ
ତେ ଯାନ୍ତି ଶାଶ୍ୱତଂ ବିଷ୍ଣୋରାନନ୍ଦଂ ପରମଂପଦମ୍ ।

ଅର୍ଥାତ୍ ଯେଉଁମାନେ ଭଗବାନ ବିଷ୍ଣୁଙ୍କର ଅର୍ଚ୍ଚନା କରନ୍ତି, ସେମାନେ ସେହି ପରମପୁରୁଷଙ୍କ ଆନନ୍ଦରୂପୀ ପରମପଦ ପ୍ରାପ୍ତ ହୁଅନ୍ତି । ଏହା ନବଧା ଭକ୍ତିର ଅନ୍ତର୍ଗତ । ପତ୍ର, ପୁଷ୍ପ, ଫଳ, ଜଳ ପ୍ରଭୃତିର ସମର୍ପଣ ଦ୍ୱାରା ଭଗବାନଙ୍କର ସେବା ଅର୍ଚ୍ଚନା କରାଯାଏ ।

**ଅଜପାଜପ** – ଆମ ଶରୀରେ ଦିନରାତି ଶ୍ୱାସପ୍ରଶ୍ୱାସ ଯିବା ଆସିବା କରୁଛି । ଏହି ଶ୍ୱାସପ୍ରଶ୍ୱାସର ଗତି ହିଁ ଅଜପାଜପ ଭାବରେ କଥିତ । ଶ୍ୱାସପ୍ରଶ୍ୱାସକୁ କେଉଁଠି 'ଅହଂ' 'ସୋହଂ' ବା କେଉଁଠି ରାମକୃଷ୍ଣ ଭାବରେ ସାଧକ ବା ଯୋଗୀ ଜପ କରିଥାଏ । ଏହା ଏକ ଅନ୍ତର୍ମୁଖୀ ସାଧନା । ଏଥିରେ ନାମୋଚାରଣ ବା ମାଳାଦ୍ୱାରା ଜପ କରାଯାଇନଥାଏ । ଯୋଗଶାସ୍ତ୍ରରେ 'କୁମ୍ଭକ' ହିଁ ଅଜପାମନ୍ତ୍ର । ଅଜପାଜପ କାୟା ସାଧନାର ଏକ ବିଶିଷ୍ଟ ଦିଗ । ଯୋଗରେ ଏହି ବାୟୁ ସଂଚାଳନ ବ୍ୟବସ୍ଥା ତନ୍ତ୍ର ସାହିତ୍ୟରେ ମଧ ବହୁ ଗୂଢ଼ାର୍ଥ ବହନ କରିଥାଏ । ସନ୍ଥ ସାହିତ୍ୟରେ କଥିତ ଅଛି – ''ଅଜପା ମନ୍ତ୍ରକୁ ଅମନେ ଘୋଷିବୁ ସଦ୍‌ଗୁରୁ ଆଗ୍ୟାଂ ପାଇ'' (ସୁଧାସାର ଗୀତା)

**ଅତଦ୍‌ଗୁଣ** – ନିକଟ ସଂପର୍କରେ ଆସିଲେ ସାଧାରଣତଃ ଗୋଟିଏ ପ୍ରକୃତ ବସ୍ତୁ ବିସଦୃଶ ପ୍ରଭାବଶାଳୀ ବସ୍ତୁର ଗୁଣଦ୍ୱାରା ପ୍ରଭାବିତ ହୋଇଥାଏ । କିନ୍ତୁ ଯେଉଁଠି ତାହା ହୁଏ ନାହିଁ, ସେଠାରେ ଅତଦ୍‌ଗୁଣ ଅଳଙ୍କାର ହୁଏ । ଉଦାହରଣ –

କେବ ହେଁ ନିମ୍ବ ନୋହେ ମଧୁର
ସଂଯୋଗ କଲେ ଦେଇ ଶାକର
କଳାକୁ ନଛଡ଼ାଇ ଅଙ୍ଗାର ଦୁଧେ
ଧୋଇଲେ ଯେ .... ''

**ଅତିବଡ଼ୀ** – ଶ୍ରୀ ଚୈତନ୍ୟ ଅଲୌକିକ ସାଧନା, ସିଦ୍ଧି ସମ୍ପନ୍ନ ତଥା ନୈସର୍ଗିକ କବିତ୍ୱର ଅଧିକାରୀ । ଜଗନ୍ନାଥ ଦାସଙ୍କୁ 'ଅତିବଡ଼ୀ' ଉପାଧିରେ ଭୂଷିତ କରିଥିଲେ । ଏହି ଜଗନ୍ନାଥ ଦାସଙ୍କ ଦ୍ୱାରା ବୈଷ୍ଣବ ସଂପ୍ରଦାୟକୁ ଅତିବଡୀ ସଂପ୍ରଦାୟ କୁହାଯାଏ । ଏହା ଗୁରୁ ପରଂପରାର ପ୍ରତୀକ । ଏହି 'ଅତିବଡ଼ୀ' ମାନେ ଏକକଣ୍ଠୀ ଅର୍ଥାତ୍ ଗୋଟିଏ ମାତ୍ର ମାଳି ପିନ୍ଧିଥାନ୍ତି, ପୁଣି ମହାମନ୍ତ୍ରରେ ଏମାନେ ପ୍ରଥମେ ହରେ ରାମ ଉଚ୍ଚାରଣ କରି ପରେ 'ହରେ କୃଷ୍ଣ' ଉଚ୍ଚାରଣ କରିଥାନ୍ତି ।

**ଅତିବାସ୍ତବତା**– ଅତିବାସ୍ତବତା ଅର୍ଥ ଅଧିକ ବାସ୍ତବତା । ବିଂଶ ଶତାବ୍ଦୀର ପ୍ରାରମ୍ଭରେ ଇଂଲଣ୍ଡର କଳା ଓ ସାହିତ୍ୟ ମାଧ୍ୟମରେ ବାସ୍ତବ ଜୀବନଧାରାରୁ ବ୍ୟାଖ୍ୟା କରିବାର ଏକ ଚିନ୍ତାଧାରାରୁ ଏହାର ଜନ୍ମ । ପ୍ରଥମ ବିଶ୍ୱଯୁଦ୍ଧ ପରେ ଜଟିଳ ଜୀବନଯାପନର ପ୍ରତିକ୍ରିୟାରେ ସମାଜରେ ପ୍ରଚଳିତ ରୁଚି, ନୈତିକତା, ଚଳଣିକୁ ଧ୍ୱଂସକରି ନୂତନତା ସୃଷ୍ଟିକରିବା ଏହି ମତବାଦର ଲକ୍ଷ୍ୟଥିଲା । ଏହି ମତବାଦର ପ୍ରଥମ ପ୍ରବକ୍ତା ଡାଡ଼ାଙ୍କ ମତରେ– କିଛି ନାହିଁ, ଅଛି କେବଳ କବିର ଖିଆଲ । ସଂଯତ ଓ ଅସଂଯତ ଶବ୍ଦରାଜି ଅର୍ଥହୀନ ହେଲେ ବି ବିଚିତ୍ର ହୁଏ, ଯାହା ଅତିବାସ୍ତବତା ପର୍ଯ୍ୟାୟଭୁକ୍ତ । ଏହା ଇଂରାଜୀ ଶବ୍ଦ 'Surrealism' ର ଓଡ଼ିଆ ପ୍ରତିଶବ୍ଦ ।

**ଅତିବାସ୍ତବବାଦ** – ବାସ୍ତବବାଦର ଅବକ୍ଷୟ ପରେ ସାହିତ୍ୟ କ୍ଷେତ୍ରକୁ ଆସିଥିଲା ଅତିବାସ୍ତବବାଦୀ ଚେତନା । ଏହି ଚେତନା ପ୍ରକୃତରେ ମଣିଷର ମନସ୍ତାତ୍ତ୍ୱିକ ଭିତ୍ତିଭୂମି ଉପରେ ପ୍ରତିଷ୍ଠିତ ଥାଇ, ମନୋଜଗତର ବହୁ ଅଜ୍ଞାତ ରହସ୍ୟ ଉଦ୍‌ଘାଟନ କରିବାରେ ପ୍ରୟାସ କରିଥିଲା । ମଣିଷ ମନର ସଂଗୁପ୍ତ ବାସନାରାଜିର ବାସ୍ତବିକ ସାହିତ୍ୟିକ ବିକାଶ କରିବା ହେଉଛି ଅତିବାସ୍ତବବାଦୀ ସାହିତ୍ୟର ଅଭିଲକ୍ଷ୍ୟ । ଅତିବାସ୍ତବବାଦୀମାନଙ୍କ ମତରେ ମଣିଷମାନଙ୍କ ଲୁକ୍କାୟିତ ହୋଇଥିବା ବାସନା ହେଉଛି ଆନ୍ତଃବାସ୍ତବତା ଓ ମଣିଷର ବାହ୍ୟ ପ୍ରବୃତ୍ତି ଓ ଆଚରଣ ତାହାର ବାହ୍ୟ ବାସ୍ତବତା । ବାହ୍ୟ ବାସ୍ତବତା ସହିତ ଅନ୍ତର୍ନିହିତ ବାସ୍ତବତାର ପାରସ୍ପରିକ ସହଯୋଗ ଦ୍ୱାରା ଅତିବାସ୍ତବବାଦୀ ସୃଷ୍ଟି ହେବା ଆବଶ୍ୟକ । ଏ ପ୍ରକାର ସାହିତ୍ୟରେ ପ୍ରେମ ଅପେକ୍ଷା କାମ ଓ ଯୌନଚର୍ଯ୍ୟା ଅଧିକ ସ୍ଥାନ ଲାଭ କରିଥାଏ । ଏଣୁ ଚରିତ୍ରର ଅଶ୍ଳୀଳତା ଓ ନାରୀର ବ୍ୟଭିଚାରିତା ଓ ସ୍ୱୈରିଣୀଭାବ ଏଥିରେ ସ୍ଥାନ ପାଇଥାଏ । ଏ ଧରଣର ସାହିତ୍ୟ ସୃଷ୍ଟିରେ ବିଶେଷତଃ ସାମାଜିକ ନୀତି-ଅନୀତିର

ବିଚାରବୋଧ ଗୌଣ ମନେହୋଇଥାଏ । ଫ୍ରଏଡ଼ଙ୍କ ମନସ୍ତାତ୍ତ୍ୱିକ ବିଶ୍ଳେଷଣ ଦ୍ୱାରା ପ୍ରଭାବିତ ହୋଇ ଏହି ମତବାଦ ସୃଷ୍ଟି ହୋଇଥିଲା ଏବଂ ହେଗେଲଙ୍କ ଦ୍ୱନ୍ଦ୍ୱମୟ ସଂସ୍କାର ପ୍ରବଣତା ନେଇ ଏହି ବାଦ ରୂପ ଗ୍ରହଣ କରିଥିଲା ।

**ଅତିନ୍ଦ୍ରୀୟ** – ଇନ୍ଦ୍ରିୟୋତ୍ତର ଚେତନା । ରହସ୍ୟବାଦୀ ସାହିତ୍ୟ, ମେଟାଫିଜିକାଲ ରଚନା ଏହି ପର୍ଯ୍ୟାୟର । ରହସ୍ୟବାଦୀଙ୍କ ମତରେ ଏହା ଲୋକୋତ୍ତର ଅନୁଭବ ଓ ଅଲୌକିକ ଆନନ୍ଦ । ଇନ୍ଦ୍ରିୟାତୀତ ବାସ୍ତବତଃ ଜଡ଼ୋତ୍ତର ସତ୍ୟର ଅନ୍ୱେଷଣ । ଇନ୍ଦ୍ରିୟଗ୍ରାହ୍ୟ ତଥା ଇନ୍ଦ୍ରିୟାତୀତ ସଂପର୍କର ଫଳ ସ୍ୱରୂପ ଏହା ଅଲୌକିକ ଅନୁଭୂତିର ସମନ୍ୱୟରେ ରସୋତ୍ତୀର୍ଣ୍ଣ ।

**ଅତିନାଟକ** – ଆବେଗଧର୍ମୀ ନାଟକ । ଏହା ଗୀତଯୁକ୍ତ ଓ ରୋମାଞ୍ଚକର ଘଟଣାପ୍ରଧାନ ନାଟକ ଭାବେ ଅଭିହିତ ।

**ଅତୀତ କାଳ** – ବ୍ୟାକରଣରେ କ୍ରିୟାପଦ ଦ୍ୱାରା କାଳ ସ୍ଥିର କରାଯାଏ । ଯେଉଁ କ୍ରିୟା ଦ୍ୱାରା କାର୍ଯ୍ୟ ଅତୀତ ସମୟରେ ଘଟିଥିବାର ଜଣାଯାଏ, ତାହାର ଅତୀତକାଳ ହୁଏ । ଅତୀତକାଳ ଆଠ ପ୍ରକାର । ଯଥା – ଅଦ୍ୟତନ ଭୂତ, ବର୍ତ୍ତମାନ ସାମୀପ୍ୟ ଭୂତ, ଅନଦ୍ୟତନ ଭୂତ, ଅସମ୍ପନ୍ନ ଭୂତ, ପ୍ରାଗ୍ ଭୁତ, ନିତ୍ୟ ପ୍ରବୃତ୍ତ ଭୂତ, ସମ୍ଭାବ୍ୟ ଭୂତ, ଆନୁମାନିକ ଭୂତ ।

**ଅତ୍ୟୁକ୍ତି** – ବର୍ଣ୍ଣନୀୟ ବିଷୟର ଅଲୌକିକ ପ୍ରତିପାଦନ ପାଇଁ ଯଦି ଅଯଥାର୍ଥ ଅବତାରଣା କରଯାଏ ତେବେ ଅତ୍ୟୁକ୍ତି ଅଳଙ୍କାର ହୁଏ ।

> "ବିଶ୍ୱକାନ୍ତି ସାର ପୀୟୁଷ ଗୋଳି
> ବିଧି ବନାଇଛି ଶୋଭା ପିତୁଳି
> ବରଦୀପ୍ତ ଟାଙ୍ଗଣରେ ଝାଳିଲା
> ବିଚିତ୍ର ହେମ ରସାଣେ ଶାଣିଲା ସେ
> ବିଗ୍ରହ ଲାବଣ୍ୟନୀରେ ଯେ
> ବୁଡ଼ାଇ ଥୋଇ ଜୀବନ୍ୟାସ କରିଛି ପରା ମୋହନ ମନ୍ତ୍ରରେ ହେ ।
> (ବିଦ୍‌ଗଧ ଚିନ୍ତାମଣି)

ଏଠାରେ ସୌନ୍ଦର୍ଯ୍ୟ ବର୍ଣ୍ଣନା କରିବାକୁ ଯାଇ କବି ବହୁ ଅସମ୍ଭବ କଥାର ଅବତାରଣା କରିଛନ୍ତି ।

**ଅଥର୍ବବେଦ** – ବୈଦିକ ସାହିତ୍ୟର ଅନ୍ତର୍ଭୁକ୍ତ । ଏହି ବେଦକୁ ଅଥର୍ବ ନାମକ ଋଷି ଲେଖିଛନ୍ତି ବୋଲି ଏହାର ନାମ ଅଥର୍ବ ବେଦ । ଏଥିରେ ୭୬୦ ସୂକ୍ତ ଅଛି । ଅଥର୍ବ ବେଦ ୯

ଭାଗରେ ବିଭକ୍ତ ଯଥା:- ପୈପଲାଦ, ଶୌଣକୀୟ, ଦେବଦର୍ଶୀ, ଚରଣବିଦ୍ୟା, ପେଉଯନ, ଜାମୋଦ, କାମଲ, ବ୍ରହ୍ମପାଳଶ, କୁନରବା । ଅନ୍ୟ ମତରେ ସେହି ଶାଖାଗୁଡ଼ିକର ନାମ - ପୈପ ପଲାଦ, ଆନ୍ତ, ପ୍ରଦାଭ, ସ୍ନାତ, ଶୋତ, ବ୍ରହ୍ମ ଦାବନ, ଶୌନକ, ଦେବଦର୍ଶତୀ ଓ ଚାରଣବିଦ୍ୟା । ଏହି ବେଦରେ ବ୍ୟକ୍ତି ବିଶେଷଙ୍କ ପାଇଁ ନିଦାନ, ଘରୋଇକାମ, ଘଟଣାରେ ସଫଳତା ଓ ଆବଶ୍ୟକତାର ଉପାୟ ଅଛି ।

**ଅର୍ଥ** – ଶବ୍ଦର ପ୍ରୟୋଗରେ ଯେଉଁ ବସ୍ତୁଗତ ଓ ଭାବଗତ ଲକ୍ଷଣ, ସଂପର୍କ ଓ ସତ୍ୟ ସୂଚିତ ହୁଏ, ତାହାକୁ ଅର୍ଥ ପ୍ରକଟନ କୁହାଯାଏ । ଗୋଟିଏ ଗୋଟିଏ ଶବ୍ଦର ଭିନ୍ନ ଭିନ୍ନ ଅର୍ଥ ଅଛି, ତାହା ସବୁ ଅଭିଧାନରୁ ଜାଣିହୁଏ । ଶବ୍ଦର ଉଚ୍ଚାରଣ, ପ୍ରୟୋଗ, ଭାବପ୍ରକ୍ଷେପଣରୁ ଅର୍ଥର ସୂଚନା ମିଳିଥାଏ ।

**ଅର୍ଥଚିତ୍ର କାବ୍ୟ** – ବ୍ୟଙ୍ଗ୍ୟାର୍ଥବିହୀନ ଅର୍ଥ ବୈଚିତ୍ର୍ୟ ପୂର୍ଣ୍ଣ କାବ୍ୟକୁ ଅର୍ଥଚିତ୍ର କାବ୍ୟ କୁହାଯାଏ ।

**ଅର୍ଥଦୋଷ** – ସାମାନ୍ୟ ଭାବରେ କାବ୍ୟରସର ଅପକର୍ଷମାନଙ୍କୁ କାବ୍ୟଦୋଷ କୁହାଯାଏ । କାବ୍ୟରେ ଅର୍ଥଦ୍ୱାରା ରସ ପ୍ରତୀତ ହେଉଥିବାରୁ କାବ୍ୟଦୋଷମାନଙ୍କ ମଧ୍ୟରୁ ଏହା ଅନ୍ୟତମ ଦୋଷ । କାବ୍ୟଦୋଷ ପାଞ୍ଚ ପ୍ରକାର । (୧) ପଦଦୋଷ, (୨) ପଦ୍ୟାଂଶଦୋଷ, (୩) କାବ୍ୟଦୋଷ, (୪) ଅର୍ଥଦୋଷ, (୫) ରସଦୋଷ ।

**ଅର୍ଥ ପ୍ରକୃତି** – ନାଟକର ଫଳରୂପ ପ୍ରୟୋଜନର ସିଦ୍ଧିପାଇଁ ଯେଉଁ ଅବାନ୍ତର ଘଟଣାମାନଙ୍କର ବର୍ଣ୍ଣନା କରାଯାଏ, ସେଗୁଡ଼ିକୁ ସୁଂସହତ ଓ କ୍ରମବଦ୍ଧ ରୂପ ଦେବାପାଇଁ ଯେଉଁ କୌଶଳ ଅବଲମ୍ବନ କରାଯାଏ, ତାହାର ନାମାନ୍ତର ''ଅର୍ଥ ପ୍ରକୃତି'' । 'ଅର୍ଥ' ମାନେ ପ୍ରୟୋଜନ ଅଥବା ଫଳ ଓ 'ପ୍ରକୃତି' ମାନେ କାରଣ ବା ହେତୁ । ତେଣୁ ଅର୍ଥ ପ୍ରକୃତି ଅର୍ଥାତ୍ ନାଟକୀୟ ପ୍ରୟୋଜନ ସିଦ୍ଧିର କାରଣାବଳୀ । ଅର୍ଥ ପ୍ରକୃତି ପାଞ୍ଚ ପ୍ରକାର - ବୀଜ, ବିନ୍ଦୁ, ପତାକା, ପ୍ରକରୀ ତଥା କାର୍ଯ୍ୟ ।

**ଅର୍ଥବେଦ**– ଅର୍ଥଶାସ୍ତ୍ର ବିଷୟକ ବୈଦିକକାଳର ଅଥବା ଶୁଦ୍ଧ ବୈଦିକ ସାହିତ୍ୟ ସମ୍ବନ୍ଧ କୌଣସି ଗ୍ରନ୍ଥ ଦେଖାଯାଏ ନାହିଁ । ପଣ୍ଡିତ ଧନରାଜ ଶାସ୍ତ୍ରୀଙ୍କ ଗ୍ରନ୍ଥସୂଚୀରେ ଅର୍ଥୋପବେଦ, ଅର୍ଥବେଦ, ଅର୍ଥଚନ୍ଦ୍ରୋଦୟ ନାମକ ତିନୋଟି ଗ୍ରନ୍ଥସୂଚୀ ରହିଛି । କୌଟିଲ୍ୟଙ୍କ ଅର୍ଥଶାସ୍ତ୍ରକୁ ଅର୍ଥବେଦ ଭାବରେ ରୂପାନ୍ୱିତ କରାଯାଇପାରେ ।

**ଅର୍ଥାନ୍ତରନ୍ୟାସ** – ସାମାନ୍ୟ ଅର୍ଥଦ୍ୱାରା ବିଶେଷ ଅର୍ଥ, ଅଥବା ବିଶେଷ ଅର୍ଥଦ୍ୱାରା ସାମାନ୍ୟ ଅର୍ଥ ସମର୍ଥିତ ହେଲେ ଅର୍ଥାନ୍ତରନ୍ୟାସ ଅଳଙ୍କାର ହୁଏ । ସାମାନ୍ୟ ଦ୍ୱାରା ବିଶେଷଣର ସମର୍ଥନ –

ବରଷାକାଳ ଅଟେ ଉଦ୍ଭିଦ ମିତ୍ର
ମାତ୍ର ପଙ୍କଜ ମଲା ନୋହେ ବିଚିତ୍ର ।
ଜଳ ଗହଳ ହେଲା ତା'ପକ୍ଷେ ଯମ
ଅତି ସମ୍ପଦ ବାବୁ ମହା ବିଷମ ।(ତୁଳସୀ ସ୍ତବକ)

'ଏଠାରେ ଅତି ସମ୍ପଦ ବାବୁ ମହାବିଷମ' ଏହି ସାଧାରଣ ଅର୍ଥ ଦ୍ୱାରା ବର୍ଷାକାଳରେ ମଧ ପଙ୍କଜ(ପଦ୍ମ) ମରିବା ରୂପକ ବିଶେଷ ଅର୍ଥଟି ସମର୍ଥିତ ହେଉଛି ।

ବିଶେଷ ଦ୍ୱାରା ସାମାନ୍ୟର ସମର୍ଥନ -

ମହତ ଜନର ଦୟା ସବୁଠାରେ
ସମହୁଏ ବିତରିତ
କର୍ତ୍ତକ ମସ୍ତକୁ ନକରଇ ତରୁ
ସ୍ୱଚ୍ଛାୟା ଅପସାରିତ (ଇନ୍ଦୁମତୀ)

ଏଠାରେ ମହତଜନର ବିଶେଷଣ କର୍ତ୍ତକ (ଗଛ କାଟୁଥିବା ଲୋକ) କୁ ସମର୍ଥିତ ହେଉଛି ।

**ଅର୍ଥପ୍ରହେଳିକା** – କାବ୍ୟ କବିତାରେ ବହୁ ଅର୍ଥ ବିଶିଷ୍ଟ ପଦ ପ୍ରୟୋଗରେ ଗୋଟିଏ ନିର୍ଦ୍ଦିଷ୍ଟ ଅର୍ଥର ସୂଚନା ଦିଆଗଲେ, ତାହାକୁ ଅର୍ଥପ୍ରହେଳିକା କୁହାଯାଏ । ରୀତିଯୁଗରେ ଏହି ଅର୍ଥପ୍ରହେଳିକାର ପ୍ରୟୋଗ ଥିଲା ଅତ୍ୟଧିକ ।

**ଅର୍ଥାପତ୍ତି** – ଗୋଟିଏ ବିଷୟର ବର୍ଣ୍ଣନାରୁ ତତ୍ ସମ୍ପର୍କୀୟ ଆଉ ଗୋଟିଏ କଥା ସହଜରେ ଅଭିବ୍ୟକ୍ତି ହେଲେ ଅର୍ଥାପତ୍ତି ଅଳଙ୍କାର ହୁଏ । ଉଦାହରଣ -

ଥାଉ ଆନ କଥା, ଯୋଗୀଜନ ମନ
ହୋଇଛି ଆଜି ଅଥୟ
ଦେଖୁଥିଲେ ଯେହୁ ବ୍ରହ୍ମମୟ ବିଶ୍ୱ
ଦେଖନ୍ତି ସେ ନାରୀମୟ । (ପାର୍ବତୀ)

ଏଠାରେ ଯୋଗୀମାନଙ୍କ କଥା କୁହାଯାଉଥିଲେ ବି ସଂସାରୀମାନଙ୍କ ଅବସ୍ଥା ଅଭିବ୍ୟକ୍ତ ହେଉଛି ।

**ଅର୍ଥୋପକ୍ଷେପକ** – ନାଟକୀୟ ଚରମ ପରିଣତିର ପ୍ରତିଷ୍ଠାପାଇଁ ମୁଖ୍ୟ ଘଟଣା ସହିତ ସିଧାସଳଖ ସଂପର୍କ ନଥିବା କେତେ ଘଟଣାକୁ କାଟିଦିଆଯାଏ କିନ୍ତୁ କାଟିଦିଆଗଲେ ମଧ ମୁଖ୍ୟ କଥାର ଗତିରେ ଧାରାବାହିକତା ରକ୍ଷା କରିବାପାଇଁ ସେଗୁଡ଼ିକୁ କୌଶଳକ୍ରମେ ସୂଚିତ କରିଦିଆଯାଏ । ଏହିପରି ମୁଖ୍ୟକଥାର ସୂଚନାଧର୍ମୀ ଘଟଣାବଳୀ କୁ 'ସୂଚ୍ୟ' କିମ୍ବା ଅର୍ଥୋପକ୍ଷେପକ କୁହାଯାଏ ।

**ଅଦ୍‌ଭୁତ ରସ** – ବିସ୍ମୟ ବା ଆଶ୍ଚର୍ଯ୍ୟ ଅଦ୍ଭୁତ ରସର ସ୍ଥାୟୀ ଭାବ । ଅଲୌକିକ ଚରିତ୍ର, ଦୃଶ୍ୟ, ଅଥବା ବିଚିତ୍ର ବସ୍ତୁ ଏହାର ଆଲମ୍ବନ । ଏହିପରି ବସ୍ତୁ ବା ଚରିତ୍ରମାନଙ୍କରେ ବିଷୟ ଶୁଣିବା, ବାରମ୍ବାର ଚିନ୍ତା କରିବା ଇତ୍ୟାଦି ଉଦ୍ଦୀପନ ବିଭାବ । ବିସ୍ଫାରିତ ନୟନରେ ଦେଖିବା, ରୋମାଞ୍ଚିତ ହେବା, ବାକ୍‌ସ୍ଫୁତ ନହେବା, ସ୍ତବ୍ଧ ହୋଇଯିବା ଇତ୍ୟାଦି ଅନୁଭବ। ହର୍ଷ, ଆବେଗ, ଧୃତି, ଔତ୍ସୁକ୍ୟ, ଚଞ୍ଚଳତା, ପ୍ରଳାପ ଆଦି ସଂଶୟ ଭାବ । ଉଦାହରଣ -

ନିସ୍ତବ୍ଧ ନୀରବ ସେ ମହାବିଜନେ
ସନାତନ ଶ୍ୱେତ ତୁଷାର ଆସନେ
ବ୍ୟୋମକେଶ ମୂର୍ତ୍ତି ଦେଖିଲି ଚମକି
ପଡ଼ିଲା ସେ ରୂପେ ଚିତ୍ତବୃତ୍ତି ଥକି । (ଚିଲିକା)

**ଅଦ୍ୱୈତବାଦ** – ଏକ ବ୍ରହ୍ମ, ଦ୍ୱିତୀୟ ନାସ୍ତି । ବିଶ୍ୱର ସୃଷ୍ଟି ଓ ପରିଚାଳନା କର୍ତ୍ତା ଜଣେ, ଦ୍ୱିତୀୟ କେହି ନୁହେଁ । ଭାରତୀୟ ଧର୍ମଦର୍ଶନରେ ସେହି ଶକ୍ତି ପୁରୁଷ, ଆତ୍ମା, ବ୍ରହ୍ମ ଆଦି ନାମରେ ପରିଚିତ । ବୈଦିକ ଅଦ୍ୱେତ ତତ୍ତ୍ୱ ଥିଲା- ଏକ ସତ୍ୟ, ବିପ୍ରା ବହୁଧା ବଦନ୍ତି(ଋକ୍), ଏକମେବା ଦ୍ୱିତୀୟମ୍ ବ୍ରହ୍ମମ୍(ଛାନ୍ଦୋଗ୍ୟ) ଇତ୍ୟାଦି । ଏହିପରି ପାଶ୍ଚାତ୍ୟ ପଣ୍ଡିତଙ୍କ ମଧ୍ୟରୁ ଷ୍ଟିଫେନ୍ ଆତ୍ମାକୁ, ସେଲିଙ୍ଗ ପ୍ରକୃତିକୁ, ହେଗେଲ୍ ନିରପେକ୍ଷ ପ୍ରତ୍ୟୟକୁ, ଗ୍ରୀନ୍ ଅପରିଚ୍ଛିନ୍ନ ଚୈତନ୍ୟକୁ ଏବଂ ବ୍ରାଡଲେ ଅପରାନୁଭବକୁ ଅଦ୍ୱୈତ ସତ୍ତା ଭାବରେ ସ୍ୱୀକୃତି ଦେଇଛନ୍ତି । ଆଦି ଶଙ୍କରାଚାର୍ଯ୍ୟ ଅଦ୍ୱୈତ ଓ ମାୟାର ପ୍ରମୁଖ ଆଚାର୍ଯ୍ୟ ଥିଲେ ।

**ଅଧମ କାବ୍ୟ** – ଶବ୍ଦାଳଙ୍କାରଗତ ଓ ଅର୍ଥାଳଙ୍କାରଗତ ଚମତ୍କାରିତା ପ୍ରାଧାନ୍ୟକୁ ଦୃଷ୍ଟି ଆଗରେ ରଖି ଶବ୍ଦଚିତ୍ର ଓ ଅର୍ଥଚିତ୍ର କାବ୍ୟ ପରିକଳ୍ପନା କରାଯାଏ । ଏଥିରେ ସଂଯୋଜନା ପାଇଁ କବିଙ୍କର ସମସ୍ତ ଶକ୍ତି ଓ ସାମର୍ଥ୍ୟ ବିନିଯୁକ୍ତ ହେଉଥିବାରୁ ଆଙ୍ଗିକ ସୌଷ୍ଠବ ଅପେକ୍ଷା ଆତ୍ମିକ ଭାବ ବିଭବ ଦୁର୍ବଳ ହୋଇଥାଏ । ଏହିପରି ରଚନାକୁ ଆଳଙ୍କାରିକ ମାନେ 'ଅଧମକାବ୍ୟ' ଭାବରେ ଗ୍ରହଣ କରିଥାନ୍ତି ।

**ଅଧିକରଣ କାରକ** – କ୍ରିୟା ଯେଉଁ ସ୍ଥାନରେ ବା ଯେଉଁ ସମୟରେ ସାଧିତ ହୁଏ, ସେହି ସମୟର ବା ସ୍ଥାନରେ ଅଧିକରଣ କାରକ ହୁଏ । ଉଦାହରଣ- *ପାତ୍ରରେ ଜଳ ଅଛି ।*

**ଅର୍ଦ୍ଧମାତ୍ରା** – ଓଁ କାର ମଧ୍ୟକୁ ଚନ୍ଦ୍ରକଳା, ତହିଁ ମଧ୍ୟସ୍ଥ ବିନ୍ଦୁ ଭାବରେ ଆଖ୍ୟାତ । ଓଁ କାରର ଚନ୍ଦ୍ରକୁ ଲାଗିଥିବା ଦଣ୍ଡ ବଙ୍କୁ ଲୀଳା ଭାବରେ କଥିତ । ଏହା ପ୍ରଣବ ଓ ତହିଁରେ ସମସ୍ତ ସୃଷ୍ଟି ତତ୍ତ୍ୱ ନିବଦ୍ଧ । ଏହା ସନ୍ଥ ସାହିତ୍ୟରେ ଦେଖାଯାଏ ।

**ଅନବୀକୃତତା** – ବକ୍ତବ୍ୟ ପଦାର୍ଥଟିକୁ ବହୁବାର ବ୍ୟକ୍ତ କରିବା ଆବଶ୍ୟକ ହେଲେ ପ୍ରକାଶଭଙ୍ଗୀର ରୂପଗତ ପରିବର୍ତ୍ତନ ଏକାନ୍ତ ଆବଶ୍ୟକ । ଯଦି ତାହା ନକରି ସେହି

ଗୋଟିଏ କାବ୍ୟକୁ ବାରମ୍ବାର ଆବୃତ୍ତି କରାଯାଏ, ତେବେ ସେଠାରେ ଅନବୀକୃତତା ଦୋଷ ହୁଏ ।

''ମିଶିଯାଏ ଯଥା ପ୍ରଭାତି ତାରା ରବି କିରଣେ
ମିଶିଯାଏ ଯଥା ଜୀବାତ୍ମା ପରମାତ୍ମା ଚରଣେ''। (ଚନ୍ଦ୍ରଭାଗା)

**ଅନନ୍ୱୟ ଅଳଙ୍କାର** – ବର୍ଣ୍ଣନୀୟ ବସ୍ତୁର ଉତ୍କର୍ଷ ପ୍ରତିପାଦନ ପାଇଁ ଏକମାତ୍ର ପଦାର୍ଥକୁ ଉପମେୟ ଓ ଉପମାନ ରୂପେ ବର୍ଣ୍ଣନା କରାଗଲେ ଅନନ୍ୱୟ ଅଳଙ୍କାର ହୁଏ ।

ତହିଁ ସିଂହାସନେ ସୁନ୍ଦରୀ ଆସୀନା
ଜଗତେ ତୁଳନା ସେହି ତା'ର ସିନା । (ଚିଲିକା)

ଏଠାରେ ସୁନ୍ଦରୀଙ୍କ ସହିତ ତୁଳିତ ହେବାପାଇଁ ସେପରି ସୁନ୍ଦରୀ ସଂସାରରେ ଆଉ ନଥିବାରୁ 'ସେହି ତା'ର ତୁଳନା' ବୋଲି ବର୍ଣ୍ଣନା କରିବା ଦ୍ୱାରା ବର୍ଣ୍ଣନୀୟ ସୁନ୍ଦରୀଙ୍କର ଅନୁପମ ସୌନ୍ଦର୍ଯ୍ୟ ପ୍ରକଟିତ ହେଉଥିବାରୁ ଅନନ୍ୱୟ ଅଳଙ୍କାର ହୋଇଛି ।

**ଅନ୍ୟୋନ୍ୟ** – କବି ବର୍ଣ୍ଣିତ ପଦାର୍ଥଦ୍ୱୟର କାର୍ଯ୍ୟରେ ପରସ୍ପର ଉପକାର ସାଧିତ ହେଲେ ଅନ୍ୟୋନ୍ୟ ଅଳଙ୍କାର ହୁଏ । ଉଦାହରଣ –

ପୁର କମଳା ତହିଁ ସ୍ମିତ ବଦନେ
କୃଷ୍ଣାଙ୍କୁ ଅଭ୍ୟର୍ଥିଲା ସ୍ନେହାଲିଙ୍ଗନେ
ହେଲେ ସେ ପରସ୍ପରେ ଶୋଭା ବର୍ଦ୍ଧିନୀ
ପ୍ରୟାଗେ ଯଥା ଗଙ୍ଗା ଭାନୁ ନନ୍ଦିନୀ । (କୀଚକ ବଧ)

ଏଠାରେ ଦ୍ରୌପଦୀଙ୍କ ଦ୍ୱାରା ପୁରପଲ୍ଲୀର ଶୋଭାବର୍ଦ୍ଧନ ଓ ପୁରଲକ୍ଷ୍ମୀଙ୍କ ଦ୍ୱାରା ଦ୍ରୌପଦୀଙ୍କ ଶୋଭା ବର୍ଦ୍ଧନ ସମ୍ପାଦିତ ହୋଇଛି ।

**ଅନୁକରଣ** – ଅନୁକରଣକୁ ରୁଚିବିଜ୍ଞାନର ଏକ ଅଙ୍ଗ ଭାବରେ ଗ୍ରହଣ କରାଯାଇପାରେ । କାରଣ କଳା, ସାହିତ୍ୟ, ସଂଗୀତରେ କେଉଁଟି ମୌଳିକ ଓ କେଉଁଟି ଅନୁକୃତି ତାହା ବିଚାରସାପେକ୍ଷ । ଅନୁକରଣର ଅର୍ଥ ଅନ୍ୟପରି କରିବା । ଅନୁକୃତ ବସ୍ତୁ ମୂଳବସ୍ତୁର ଅନୁରୂପ କିମ୍ବା ନକଲ କିମ୍ବା ପୁନରୁତ୍ପାଦନ ହୋଇଥାଏ, କିନ୍ତୁ ପ୍ରତୀକ ହୋଇପାରେ ନାହିଁ । ତେଣୁ ରୁଚିବିଜ୍ଞାନ ଦୃଷ୍ଟିରୁ ମୌଳିକ ବସ୍ତୁର ସୂକ୍ଷ୍ମଭାବକୁ ଅନୁକରଣ ଠିକ୍ ଭାବେ ପରିପ୍ରକାଶ କରିପାରେ ନାହିଁ, ମାତ୍ର ବାହ୍ୟପ୍ରକୃତିକୁ ଅନୁକରଣ କରେ । ତଥାପି ଅନୁକରଣରେ ମୌଳିକ ସୃଷ୍ଟିର ସମ୍ଭାବନା ଥାଏ । ଅନୁକରଣ ନିକୃଷ୍ଟ କଳା ନୁହେଁ। କାରଣ ଅନୁକରଣ କଳା ବହୁ ପ୍ରତିଭାର ଅପେକ୍ଷା ରଖେ ।

**ଅନୁକୂଳ** – ପ୍ରତିକୂଳ ବିଷୟ ଅବସ୍ଥା ବିଶେଷରେ ଅନୁକୂଳ ଭାବେ ଗୃହୀତ ହେଲେ ଅନୁକୂଳ ଅଳଙ୍କାର ହୁଏ । ଉଦାହରଣ –

ଦୋଷ ଦେଖି ଦଣ୍ଡରେ ଚନ୍ଦ୍ରାନନା
 ମଣ୍ଡନାକର ଗଣ୍ଡରେ
ବାହୁପାଶେ ନିତାନ୍ତେ ବାନ୍ଧିବା ବସନାନ୍ତେ
 ଓଷ୍ଠବିଦାରି ଦନ୍ତେ, ଭୂଷ କରଜ କୁନ୍ତେ । (ସଙ୍ଗୀତ କଳ୍ପଲତା)

ବନ୍ଧନ, ବିଦାରଣ, ଛେଦନ ଯେ କୌଣସି ବ୍ୟକ୍ତି ପକ୍ଷରେ ପ୍ରତିକୂଳ ବ୍ୟାପାର ଭାବରେ ଗୃହୀତ ହୁଏ । କିନ୍ତୁ ପ୍ରେମିକ ପକ୍ଷରେ ପ୍ରେମିକଦ୍ୱାରା ସମ୍ପାଦିତ ବାହୁ ବନ୍ଧନ, ଓଷ୍ଠ ବିଦାରଣ ଓ ନଖଛେଦନ ଇତ୍ୟାଦି ଅନୁକୂଳ ବ୍ୟାପାର ହୋଇଥିବାରୁ ଏଠାରେ ଅନୁକୂଳ ଅଳଙ୍କାର ହୋଇଛି ।

**ଅନୁଚ୍ଛେଦ** – ଗବେଷଣାରେ ତିନି ପ୍ରକାର ଟିପା ଦିଆଯାଇଥାଏ ଯଥା ସାରାଂଶ, ଅନୁଚ୍ଛେଦ ଓ ଉଦ୍ଧୃତି । ଯେତେବେଳେ କୌଣସି ବଡ଼ ବା ବିସ୍ତୃତ ଉପାଦାନରୁ ଆବଶ୍ୟକୀୟ ସାଧାରଣ ଅଂଶଟିକୁ ସଂକ୍ଷେପରେ ଗ୍ରହଣ କରାଯାଏ, ତାହାକୁ ସାରାଂଶ କୁହାଯାଏ । ଗୋଟିଏ ନିର୍ଦ୍ଦିଷ୍ଟ ବାକ୍ୟ ବା ଅନୁଚ୍ଛେଦ (Paragraph) ର ପୁଙ୍ଖାନୁପୁଙ୍ଖ ବିବରଣୀ ଦିଆଯାଇଥାଏ, ସେତେବେଳେ ତାକୁ ଅନୁଚ୍ଛେଦ କୁହାଯାଏ ।

**ଅନୁନାସିକ ବର୍ଣ୍ଣ** – ଙ, ଞ, ଣ, ନ, ମ ଏହି ବ୍ୟଞ୍ଜନ ବର୍ଣ୍ଣକୁ ଅନୁନାସିକ ବର୍ଣ୍ଣ କୁହାଯାଏ । ଯେଉଁ ବ୍ୟଞ୍ଜନ ବର୍ଣ୍ଣ ଉଚ୍ଚାରଣ କରିବାବେଳେ ଶ୍ୱାସନଳୀରୁ ଉତ୍‌ଥିତ ବାୟୁ ଜିହ୍ୱାର ଉଲ୍ଲିଖିତ ବିଭିନ୍ନ ସ୍ଥାନର ସ୍ପର୍ଶଜନିତ ବାଧାପାଇ ଆଂଶିକଭାବରେ ନାସିକା ମଧ୍ୟ ଦେଇ ବାହାରି ଯାଉଥିବାରୁ, ଏଗୁଡ଼ିକ ଅନୁନାସିକ କୁହାଯାଏ ।

**ଅନୁପ୍ରାସ ଅଳଙ୍କାର** – ଅନେକ ବ୍ୟଞ୍ଜନ ବର୍ଣ୍ଣର ସାମ୍ୟ ରହି ଆବୃତ୍ତି ହେଲେ ଅନୁପ୍ରାସ ଅଳଙ୍କାର ହୁଏ । ବିଭିନ୍ନ ପ୍ରକାରରେ ଶବ୍ଦର ଚାରୁତା ସଂପାଦନା କରୁଥିବାରୁ ଏହା ନାନାବିଧ; ଯଥା – ଛେକାନୁପ୍ରାସ, ବୃତ୍ୟାନୁପ୍ରାସ, ଶ୍ରୁତ୍ୟାନୁପ୍ରାସ, ଲାଟାନୁପ୍ରାସ, ଅନ୍ତ୍ୟାନୁପ୍ରାସ ଇତ୍ୟାଦି ।

ଛେକାନୁପ୍ରାସ - ଅନେକ ବ୍ୟଞ୍ଜନ ବର୍ଣ୍ଣର ସାମ୍ୟରହି କ୍ରମ ଅନୁସାରେ ଥରେ ମାତ୍ର ଆବୃତ୍ତି ହେଲେ ଛେକାନୁପ୍ରାସ ଅଳଙ୍କାର ହୁଏ ।

ଉଦାହରଣ–

କାନ୍ତ ରହିତ କାନ୍ତାପ୍ରାୟ ହୋଇ / କଳାପୀ କଳାପ ଅଙ୍ଗୁ ପକାଇ / କେକା ଛାଡ଼ି ହେଲେ ମଉନବ୍ରତ / ଙ୍କଲେ ହଂସ ମାନସରେ ବ୍ୟକତ । (ରସକଲ୍ଲୋଳ)

ବୃତ୍ତ୍ୟାନୁପ୍ରାସ - ଗୋଟିଏ ବ୍ୟଞ୍ଜନ ବର୍ଣ୍ଣର ଥରେ ଏବଂ ବହୁ ବ୍ୟଞ୍ଜନ ବର୍ଣ୍ଣର ପର୍ଯ୍ୟାୟକ୍ରମରେ ଏବଂ କ୍ରମ ନ ରହି ମଧ୍ୟ ବାରମ୍ୱାର ଆବୃତ୍ତି ହୋଇଥିଲେ ବୃତ୍ତ୍ୟାନୁପ୍ରାସ ହୁଏ । ଉଦାହରଣ -

''ଆସ ବାଣୀ ! ବୀଣାପାଣି ଖିଳ ବାଣୀ ବିଶ୍ୱରାଣୀ
କାବ୍ୟକଳା ଠାକୁରାଣୀ
କବି ଜନନୀ
ତବ ନିରଜନା ପାଇ ଆଶାବୋଳା ନେତ୍ରେ ଚାହିଁ
ଅଛନ୍ତି ବାସନ୍ତୀ ଲକ୍ଷ୍ମୀ, ଫୁଲ ବରଣୀ
ହର୍ଷେ ଉଭା ବନସୁନ୍ଦରୀ
ଚାରୁ ଫୁଲ ସିଂହାସନ ବକ୍ଷରେ ଧରି ।

ଶ୍ରୁତ୍ୟାନୁପ୍ରାସ - ଯେଉଁଠି ତାଲବ୍ୟ, ଔଷ୍ୟ, ମୁର୍ଦ୍ଧା ଓ ଦନ୍ତ୍ୟାଦି ବର୍ଣ୍ଣମାନଙ୍କର ଉଚ୍ଚାରଣ ସ୍ଥାନରେ ଏକତ୍ର ଉଚ୍ଚାର୍ଯ୍ୟ ହେତୁକ ବ୍ୟଞ୍ଜକ (ଶ୍ରୁତିଗ୍ରାହ୍ୟ ପୁନରାବୃତ୍ତି)ର ସାଦୃଶ୍ୟ ଘଟେ ବା ପରିଲକ୍ଷିତ ହୁଏ ତାହାକୁ ଶ୍ରୁତ୍ୟାନୁପ୍ରାସ କୁହାଯାଏ ।

ଉଦାହରଣ –

ପୁଷ୍ପପବି ପ୍ରଭା ପ୍ରଭ ଭ୍ରମୁଭାବେ ଭୁବି
ଭୀମ ବାଷ୍ପଭବ ଭବେ ଭାବ ଭବି ଭାବି । (ପ୍ରେମ ସୁଧାନିଧି)

ଲାଟାନୁପ୍ରାସ - ଏହା ପଦଗତ ଅନୁପ୍ରାସ ଅଟେ । ଯେଉଁଠାରେ ବାରମ୍ବାର ବ୍ୟବହୃତ ଶବ୍ଦ ଗୁଡ଼ିକ ଅର୍ଥଗତ ସମତା ରକ୍ଷାକରି ଭିନ୍ନ ଭିନ୍ନ ଅଭିପ୍ରାୟ ପ୍ରକାଶର ବା ଦ୍ୟୋତକ ହୁଅନ୍ତି, ସେଠାରେ ଲାଟାନୁପ୍ରାସ ହୁଏ ।

ଉଦାହରଣ –

''ପୁଅ ଯଦି ଯୋଗ୍ୟ ହୁଏ ଧନ କାହିଁ ପାଇଁ ସଞ୍ଚୁ
ପୁଅ ଯଦି ଅଯୋଗ୍ୟ ହୁଏ ଧନ କାହିଁ ପାଇଁ ସଞ୍ଚୁ''

(ଏଠାରେ 'ଧନ କାହିଁ ପାଇଁ ସଞ୍ଚୁ' ଶବ୍ଦ ଗୁଡ଼ିକ ଅର୍ଥ ସାମ୍ୟ ଥାଇ ତାତ୍ପର୍ଯ୍ୟଗତ ପ୍ରଭେଦ ଦର୍ଶାଉଥିବାରୁ ଏହା ଲାଟାନୁପ୍ରାସ )

ଅନ୍ତ୍ୟାନୁପ୍ରାସ - ପଦର ବିଭିନ୍ନ ଚରଣ ଅନ୍ତ୍ୟବର୍ଣ୍ଣ ଏବଂ ଉପାନ୍ତ୍ୟବର୍ଣ୍ଣର ସମତା ରହି ଆବୃତ୍ତି ହେଲେ ଅନ୍ତ୍ୟାନୁପ୍ରାସ ହୁଏ ।

ଉଦାହରଣ -

'ଉତ୍କଳ - କମଳା - ବିଳାସ - ଦୀର୍ଘିକା
ମରାଳ ମାଳିନୀ ନୀଳମ୍ବୁ ଚିଲିକା''

ଏହି ପଦର ପ୍ରଥମ ଓ ଦ୍ୱିତ୍ତୀୟ ଚରଣ ଶେଷରେ ବ୍ୟଞ୍ଜନବର୍ଣ୍ଣ 'କା' ଏବଂ ଉପାନ୍ତ୍ୟ ସ୍ୱରବର୍ଣ୍ଣ 'ଇ' ର ସାମ୍ୟ.ଅଛି ।

**ଅନୁମାନ** – ଯେ କୌଣସି କାରଣ ଦ୍ୱାରା କାର୍ଯ୍ୟ ଅନୁମିତ ହେଲେ ଏବଂ ତାହା ଅନ୍ୟ ଅଳଙ୍କାର ଦ୍ୱାରା ସୌନ୍ଦର୍ଯ୍ୟାଧାୟକ ହେଲେ, ସେଠାରେ ଅନୁମାନ ଅଳଙ୍କାର ହୁଏ । ଉଦାହରଣ -

ପୁଣ୍ୟ ଭୂମି ନୋହି ଥିଲେ କି ଏ ବାଳା
ଜନମିଥାନ୍ତା ଉତ୍କଳେ
ତ୍ରିଦିବ ସୁନ୍ଦରୀ ସୌଦାମିନୀ କେବେ
ସ୍ଥିରେ କି ସୁବିଧା ତଳେ ! (ଯଯାତି)

ଏଠାରେ 'ଏ ବାଳା'ର ଜନ୍ମ ଦ୍ୱାରା ଉତ୍କଳ ଯେ ପୂଣ୍ୟଭୂମି, ଏହା ଅନୁମିତ ହେଉଛି ଏବଂ ସେହି ବାଳାର ଅସାଧାରଣ ସୌନ୍ଦର୍ଯ୍ୟ ଓ ସ୍ୱର୍ଗୀୟତ୍ୱ ଅନୁମାନ ହେଉଛି ।

**ଅନୁମିତିବାଦ** – ଶ୍ରୀଶଙ୍କୁକ ମତରେ ସଂଯୋଗ ଶବ୍ଦର ଅର୍ଥ ଅନୁମାପ୍ୟ ଅନୁମାପକ ଭାବ ସମ୍ବନ୍ଧ । 'ନିଷ୍ପତି' ଶବ୍ଦର ଅର୍ଥ ଅନୁମିତି । ବିଭାବାଦି ଅନୁମାପକ ଓ ରସ ଅନୁମାପ୍ୟ । ରସ ଓ ବିଭାବାଦି ମଧ୍ୟରେ ଅନୁମାପ୍ୟ ଅନୁମାପକ ଭାବ ସମ୍ବନ୍ଧ ପ୍ରତିଷ୍ଠିତ । ଦର୍ଶକ, ଅଭିନେତା ଦ୍ୱାରା ବିଭିନ୍ନ ଭାବର କଳାତ୍ମକ ପରିପ୍ରକାଶ ଦେଖେ ଏବଂ ଅନୁମାନ କରିନିଏ ଯେ, ଅଭିନେତାର ହୃଦୟରେ ଏହି ସବୁ ଭାବ ରସ ରୂପରେ ପରିଣତ ହେଉଅଛି । ଦର୍ଶକର ଏହି ଅନୁମାନ, ନୈୟାୟିକମାନଙ୍କର ସାଧାରଣ ଅନୁମାନ ନୁହେଁ । ଏହାର ଅସାଧାରଣ ବିଲକ୍ଷଣତା ରହିଛି, ଯାହା ବଳରେ ଦର୍ଶକ ନଟଠାରେ ରସର ଅନୁମାନ କରିବା ସଙ୍ଗେ ସଙ୍ଗେ ନିଜେ ମଧ୍ୟ ଅନୁଭବ କରିପାରେ ।

ଭାରତୀୟ ପ୍ରାଚୀନ ସାହିତ୍ୟତତ୍ତ୍ୱରେ ରସ ନିଷ୍ପତ୍ତି ବିଷୟକ ମତବାଦ ମଧ୍ୟରେ ଶ୍ରୀଶଙ୍କୁକ ଅନୁମିତିବାଦ ଅନ୍ୟତମ । ଏହା ନ୍ୟାୟ ସିଦ୍ଧାନ୍ତ ଉପରେ ଆଧାରିତ ।

**ଅନ୍ତଃକରଣ** – ବେଦାନ୍ତିକମାନଙ୍କ ମତରେ ଅନ୍ତଃକରଣ ହେଉଛି ମନ, ବୁଦ୍ଧି, ଚିତ୍ତ ଓ ଅହଂକାରକୁ ନେଇ ଗଠିତ । ଅନ୍ତଃ ଅର୍ଥାତ୍ ଭିତର କରଣ । ଇନ୍ଦ୍ରିୟମାନେ ଯେପରି ଶରୀର ବାହ୍ୟକରଣକୁ ବୁଝାଏ, ଏହା ଅନ୍ତଃଶୁଦ୍ଧି ବୁଝାଏ ।

**ଅନ୍ତଃପ୍ରତିରୋଧ** – ମନସ୍ତାତ୍ତ୍ୱିକ ରଚନାର ଏହା ଏକ ବିଶିଷ୍ଟ ତତ୍ତ୍ୱ । ଅଚେତନକୁ ଚେତନସ୍ତରରେ ଯାହାସବୁ ବାଧାଦିଏ, ସେଗୁଡ଼ିକ ଅନ୍ତଃପ୍ରତିରୋଧର ଅନ୍ତର୍ଗତ । ସମସ୍ତ ମାନସିକ ଓ ସ୍ନାୟବିକ ରୋଗର ଏହା ଲକ୍ଷଣ । ଇଡ୍ ବା ଇଦମ୍‌ର ସମସ୍ତ ବାସନା ଜୀବନରେ ପୂରଣ ହୁଏନାହିଁ । ତେଣୁ ଏହି ଅପୂର୍ଣ୍ଣ ବାସନା ବିଭିନ୍ନ ଦିଗରେ ଆତ୍ମପ୍ରକାଶ ପାଏ । ଏହି ଲକ୍ଷଣ ହିଁ ଅନ୍ତଃପ୍ରତିରୋଧ । ମନୋବିଜ୍ଞାନରେ ରିପ୍ରେସନ୍ repression ଏହି ଅର୍ଥ ବହନକରେ ।

**ଅନ୍ତର୍ବୋଧ**– ଇଂରାଜୀ କନ୍‌ସାଇନ୍‌ସ (Conscience)ର ପ୍ରତିଶବ୍ଦ ଭାବେ ଧରିବାକୁ ହୁଏ । ଧର୍ମମତରେ ଏହା ଦିବ୍ୟ ଈଶ୍ୱରୀୟ ପ୍ରେରଣା । ନୀତିଶାସ୍ତ୍ରରେ ଏହା ଷଷ୍ଠ ଇନ୍ଦ୍ରିୟ । ମନୋବିଜ୍ଞାନରେ ସୁପରଇଗୋ ଓ ଅରବିନ୍ଦ ଦର୍ଶନରେ ଏହା ଚୈତ୍ୟପୁରୁଷ । ଏହି ଅନ୍ତର୍ବୋଧ ମଣିଷକୁ ଆତ୍ମସଚେତନ କରାଏ ।

**ଅନ୍ତର୍ଭାବନା** – ବ୍ୟକ୍ତିର ପ୍ରବୃତ୍ତି ସମ୍ବନ୍ଧୀୟ ଭାବକୁ ଅନ୍ତର୍ଭାବନା କୁହାଯାଏ । ଅନ୍ୟ ଭାଷାରେ ବସ୍ତୁର ଗୁଣକୁ ନିଜ ଭିତରେ ଅନୁଭବ କରିବାକୁ ଅନ୍ତର୍ଭାବନା ବୁଝାଯାଏ । ବସ୍ତୁ-ସତ୍ୟ ଆଧାରିତ ସାହିତ୍ୟ ସୃଷ୍ଟିର ମୌଳିକ ତତ୍ତ୍ୱ ଏହି ଅନ୍ତର୍ଭାବନା ଉପରେ ଆଧାରିତ । କଳାକାର ବା ସାହିତ୍ୟିକର ସୌନ୍ଦର୍ଯ୍ୟ ଚେତନାର ମଧ୍ୟ ଏହା ମୂଳଉତ୍ସ ରୂପେ ସ୍ୱୀକୃତ ।

**ଅନ୍ତ୍ୟସ୍ଥ ବର୍ଣ୍ଣ** – ସ୍ୱରବର୍ଣ୍ଣ ଉଚ୍ଚାରଣରେ ଶ୍ୱାସନଳୀରୁ ଉତ୍‌ଥିତ ମୁଖସ୍ଥ ବାୟୁ କୌଣସିଠାରେ ବାଧାପ୍ରାପ୍ତ ହୁଏନାହିଁ । ଯ, ର, ଲ, ବ ଏହି ଚାରୋଟି ଅନ୍ତ୍ୟସ୍ଥ ବର୍ଣ୍ଣ । ଏହା ଅବର୍ଗ୍ୟ ବର୍ଣ୍ଣର ଅନ୍ତର୍ଗତ ।

**ଅନାହତ** – କୁଣ୍ଡଳିନୀ ଶକ୍ତି ଜାଗ୍ରତ କରାଇ ସାଧକ ଯେଉଁ ଅବ୍ୟକ୍ତ ନାଦ ଶୁଣିଥାଏ ସେହି ନାଦ ହତ ନ ହେବାରୁ, ତାହାର ନାମ ଅନାହତ । ପ୍ରାଚୀନ ଓଡ଼ିଶାରେ ଅନାହତକୁ ଅନାହକ ନାମରେ କଥିତ ଅଛି –

> ''ଚେତା ଚଇତନ ସମସ୍ତ ହଜିଲା, ନାସାଦ୍ୱାରେ ବାୟୁନାହିଁ
> ପଞ୍ଚଭୂତ ଆତ୍ମା ବ୍ରହ୍ମରେ ମିଶିଲା ଅନାହତ ଘରେ ନାହିଁ
> ହତ ନୋହିବାରୁ ତେଣୁ କରି ନାମ ଅଟେ ଅନାହତ
> ଅନାହତ ପୁର ଜ୍ୟୋତିର ଭୂବନ ଅବନା ଅକ୍ଷର ଖ୍ୟାତ'' । (ସୁଧାସାର ଗୀତା)

**ଅନୁବାଦ** – ଗୋଟିଏ ଭାଷାରେ ପ୍ରକାଶିତ ରଚନାକୁ ଅନ୍ୟ ଭାଷାରେ ପ୍ରକାଶ କରିବାକୁ ଅନୁବାଦ କହନ୍ତି । ଅନୁବାଦ ଅନୁକରଣ ଭଳି ରୁଚି ବିଜ୍ଞାନର ଏକ ଅଂଶବିଶେଷ । ସଂପ୍ରତି ଅନୁବାଦ ଭିନ୍ନ ଭିନ୍ନ ରୂପ ଗ୍ରହଣ କରିଛି, ଯଥା– ଛାୟାନୁବାଦ, ମର୍ମାନୁବାଦ, ଆକ୍ଷରିକ ଅନୁବାଦ ଇତ୍ୟାଦି । ସଫଳ ଅନୁବାଦର ଭାଷାନ୍ତର ଶୈଳୀ ପାଠକଙ୍କ ହୃଦୟସ୍ପର୍ଶ କଲେ ଅନୁବାଦ ସଫଳତା ଲାଭ କରେ । ସଂପ୍ରତି ଅନୁବାଦ ସାହିତ୍ୟ ଜାତୀୟ ସଂହତି ତଥା ଭାଷାଗତ ସଂହତି କ୍ଷେତ୍ରରେ ପ୍ରମୁଖ ଭୂମିକା ଗ୍ରହଣ କରୁଛି ।

**ଅନୁବୋଧ** – ବଦ୍ଧମୂଳ ଧାରଣାକୁ ବୁଝାଏ । ଏକ ନିର୍ଦ୍ଦିଷ୍ଟ ଭାବମୂର୍ତ୍ତି ନେଇ କୌଣସି ଘଟଣା ବା ଚରିତ୍ର ଯେଉଁ ବିଶ୍ୱାସବୋଧରେ ରହିଥାଏ, ତାହା ବ୍ୟକ୍ତିର ଅନୁବୋଧ ସଂଜ୍ଞାତ । ଏହା ଏକପ୍ରକାର ଅନୁଭବ, କିନ୍ତୁ କଳ୍ପନା ନୁହେଁ । ଧ୍ୱନି, ସଂକେତ, ଚିତ୍ରକଳ୍ପ, ପ୍ରତୀକ ଇତ୍ୟାଦି ଏହି ଅନୁବୋଧ ନେଇ ସଂଗଠିତ । ଏହା ଇଂରାଜୀ କନସେପଟ୍ Conceptର ପ୍ରତିଶବ୍ଦ ।

**ଅନୁଭବ** – ଉପଲବ୍ଧି ଭାବ ହେଉଛି ଅନୁଭବ । ଏହି ଅନୁଭବ ବାରମ୍ବାର ପରୀକ୍ଷିତ ହେଲେ ତାହା ଅନୁଭୂତିରେ ପରିଣତ ହୁଏ । କବି ଓ କଳାକାରର ସୃଷ୍ଟି ସମ୍ଭାର ପାଇଁ ଏହା ଏକ ମୌଳିକ ଆବଶ୍ୟକତା । ଭାବନା ଓ ଆବେଗ ଯେତେବେଳେ ପରିଶୁଦ୍ଧ ହୋଇ ସାହିତ୍ୟର ବିଷୟବସ୍ତୁ ହୁଏ, ସେତେବେଳେ ତାହା ଜଣ ଜୀବନର କାହାଣୀ ନ ହୋଇ ଗଣଜୀବନର ମହାଭାଷ୍ୟ ପାଲଟେ । ତାହା ହିଁ ଅନୁଭବର ବିସ୍ମୟକର ପ୍ରଭାବ ।

**ଅନୁଭାବ** – ଅଳଙ୍କାର ଶାସ୍ତ୍ରରେ ଭାବବ୍ୟଞ୍ଜକ ରସ ନିଷ୍ପତ୍ତିକୁ ବୁଝାଏ । ଆଲମ୍ବନ, ଉଦ୍ଦୀପନ ଆଦି କାରଣରୁ ଉତ୍ପନ୍ନ ଭାବ ବାହାରେ ପ୍ରକାଶ ପାଇଲେ ଅନୁଭାବ ହୁଏ । ବିଭିନ୍ନ ରସର ଅନୁଭାବ ମଧ୍ୟ ବିଭିନ୍ନ । ଅନୁଭାବ ପାଞ୍ଚଟି ପର୍ଯ୍ୟାୟର ଯଥା– କାୟିକ, ମାନସିକ, ଆହାର୍ଯ୍ୟ, ବାଚିକ ଓ ସାତ୍ତ୍ୱିକ । ଅନୁଭାବର କାର୍ଯ୍ୟ ହେଉଛି ଅନୁଭବ କରାଇବା । ତେଣୁ ଭାବମାନଙ୍କର ଜ୍ଞାପକ ହେଉଛି ଅନୁଭାବ । ଏମାନେ ରସର ସ୍ଥାୟୀଭାବକୁ ଅନୁଭବ କରାନ୍ତି ।

**ଅନୁମାନ** – ଏହା ନ୍ୟାୟ ଦର୍ଶନର ଅଂଶ ବିଶେଷ । ଯେଉଁ ବସ୍ତୁକୁ ପ୍ରମାଣ କରିବାକୁ ଯାଇ ସାମାନ୍ୟ ଭାବରେ ଦେଖି ଅନୁମାନରେ ସିଦ୍ଧାନ୍ତ ନିଆଯାଏ, ତାହାକୁ ଅନୁମାନ କୁହାଯାଏ । ଏହା ତିନି ଭାଗରେ ବିଭକ୍ତ ଯଥା - ପୂର୍ବବତ୍, ଶେଷବତ୍ ଓ ସାମାନ୍ୟ ବା ଦୃଷ୍ଟ ।

**ଅନୁରାଗ** – ନିତ୍ୟନୂତନ ରୂପରେ ଅନୁଭୂତ ଭାବକୁ ଅନୁରାଗ କହନ୍ତି । ଅନୁରାଗର ଚରମ ଅବସ୍ଥା ହେଉଛି ଭାବ । ବୈଷ୍ଣବ ଆଳଙ୍କାରିକ ମତରେ ପ୍ରେମର କ୍ରମପରିଣତି ହେଉଛି ସ୍ନେହ, ମାନ, ପ୍ରଣୟ, ରାଗ, ଅନୁରାଗ, ଭାବ ଓ ମହାଭାବ । ଅଳଙ୍କାର ଶାସ୍ତ୍ରର ପ୍ରକରଣ ଅନୁସାରେ ଅନୁରାଗ ଦେଖାଦିଏ ନାୟିକାଠାରେ, ପରେ ନାୟକଠାରେ ।

**ଅନ୍ୟୋକ୍ତି ମୂଳକ କବିତା** – ଇଂରାଜୀ ସାହିତ୍ୟରେ ଏହାର ପ୍ରଚଳନ ଅଧିକ ଦେଖାଯାଏ । ଏହା ଏକପ୍ରକାର ରଚନା, ଯେଉଁଥିରେ ବାହ୍ୟ ବା ପୃଷ୍ଠ ଦେଶର ଅର୍ଥ, ଆଭ୍ୟନ୍ତରୀଣ ବା ଅନ୍ତର୍ଦେଶର ଅର୍ଥଠାରୁ ଭିନ୍ନ । କବି ବା ଲେଖକ ବାହ୍ୟ ଅର୍ଥର ଆଶ୍ରୟ ନେଇ ଏକ ଭିନ୍ନ ଅଭିପ୍ରାୟ ବା ଘଟଣାର ଅବତାରଣା କରିଥାଏ । ଏହାକୁ ଏକ ପରିବର୍ଦ୍ଧିତ ରୂପକାଳଙ୍କାର ମଧ୍ୟ କୁହାଯାଇପାରେ । ଏଥିରେ ବର୍ଣ୍ଣିତ ଚରିତ୍ର, ଘଟଣାର ପ୍ରବାହ ଓ ଚିନ୍ତାଧାରା ଅନ୍ୟ ଏକ ସମାନ୍ତରାଳ ପରିବେଶ ବା ଘଟଣାର ପ୍ରତିନିଧିତ୍ୱ ମାତ୍ର କରିଥାଏ । ଏ ଦୃଷ୍ଟିରୁ ଆଲିଗରି ଏକ ଚିନ୍ତାଧାରା ବା ଘଟଣାକୁ ସଂକେତ ଦ୍ୱାରା କୁହାଯାଇଥାଏ । ଆଲିଗରି ଅମୂର୍ତ୍ତ ଭାବନାକୁ ମୂର୍ତ୍ତ ଚିନ୍ତା ମାଧ୍ୟମରେ ପରିପ୍ରକାଶ କରାଇଥାଏ ଓ ଏତଦ୍ୱାରା ଅମୂର୍ତ୍ତତାରେ ବ୍ୟକ୍ତିତ୍ୱ ଆରୋପ ହୁଏ । ଏହା ଦୁଇପ୍ରକାର - ( ୧ ) ଐତିହାସିକ ଓ ରାଜନୈତିକ ( ୨ ) ଚିନ୍ତା ସମ୍ପନ୍ନ । ଭାରତୀୟ ସାହିତ୍ୟରେ ''ନୀଳବର୍ଣ୍ଣ ଶୃଗାଳ କଥା'' ''ବିଲୁଆ ଓ ଅଙ୍ଗୁର

କୋଳି''କଥା ଏହି ଶ୍ରେଣୀର । କବି ବା ଲେଖକ ଏହାଦ୍ୱାରା ସମାଲୋଚନା କରିବା, ନୀତିପୂର୍ଣ୍ଣ ଉପଦେଶ ଦେବା ଇତ୍ୟାଦି ସମ୍ଭବପର ହୋଇଥାଏ । ଇଂରାଜୀ ଆଲେଗରି Allegory ର ଓଡ଼ିଆ ପ୍ରତିଶବ୍ଦ ।

**ଅପ୍ରସ୍ତୁତ ପ୍ରଶଂସା** – ଅପ୍ରସ୍ତୁତ (ଅପ୍ରାସଙ୍ଗିକ) ବୃତ୍ତାନ୍ତ ବର୍ଣ୍ଣନାଦ୍ୱାରା ପ୍ରସ୍ତୁତ ବା ପ୍ରାସଙ୍ଗିକ ଅର୍ଥର ଅବଗତି ହେଲେ ଅପ୍ରସ୍ତୁତ ପ୍ରଶଂସା ଅଳଙ୍କାର ହୁଏ । ଏହା ସାଧାରଣତଃ ପାଞ୍ଚ ପ୍ରକାର ଦେଖାଯାଏ । ଏସବୁ ସାମାନ୍ୟ ଅପ୍ରସ୍ତୁତ ଅର୍ଥରୁ ବିଶେଷ ପ୍ରସ୍ତୁତ ଅର୍ଥର ପ୍ରତୀତି । ବିଶେଷ ଅପ୍ରସ୍ତୁତ ଅର୍ଥରୁ ସାମାନ୍ୟ ପ୍ରସ୍ତୁତ ଅର୍ଥର ଅବଗତି, କାରଣରୁ କାର୍ଯ୍ୟର ପ୍ରତୀତି । ଅପସ୍ତୁତ ବୃତ୍ତାନ୍ତ ସାଦୃଶ୍ୟରୁ ପ୍ରସ୍ତୁତି ବୃତ୍ତାନ୍ତର ପ୍ରତୀତି ।

**ଅପାରଙ୍ଗ ବ୍ୟଙ୍ଗ୍ୟ** – – ଗୋଟିଏ ରସ, ଭାବ ଓ ଭାବାଭାସ ଇତ୍ୟାଦି ଅନ୍ୟ ଗୋଟିଏ ରସ, ଭାବ ଓ ଭାବାଭାସ ଇତ୍ୟାଦିର ଅଙ୍ଗ ଭାବରେ ବର୍ଣ୍ଣିତ ହେଲେ ଅପରାଙ୍ଗ ବ୍ୟଙ୍ଗ ହୁଏ । ଉଦାହରଣ -

ମୋର ନ ଚାହିଁଲାବେଳେ ଅନାଇଁ
ଚାହିଁଦେଲେ ମହୀ ଦୃଷ୍ଟି କରଇ
ମୋତେ ଚାହିଁବାକୁ ବଡ଼ ଶରଧା
ଲାଜ କୃପଣ କରୁଥାଇ ବାଧା । (ସୁବର୍ଣ୍ଣରେଖା - ଭଞ୍ଜ)

ଏଠାରେ ସ୍ଥାୟୀ ଭାବ ରତି, ସଂଚାରୀ ଭାବ ଲଜ୍ଜା ର ଅଙ୍ଗ ଭାବରେ ବର୍ଣ୍ଣିତ ହୋଇଥିବାରୁ ଅପାରଙ୍ଗ ବ୍ୟଙ୍ଗ୍ୟ ହୋଇଛି ।

**ଅପାଦାନ କାରକ** – କ୍ରିୟା ଦ୍ୱାରା ଗୋଟିଏ ବସ୍ତୁ ଅନ୍ୟ ବସ୍ତୁଠାରୁ ବିଚ୍ଛିନ୍ନ ହେବା ଜଣାଗଲେ ଯେଉଁ ବସ୍ତୁଠାରୁ ବିଚ୍ଛିନ୍ନ ହୁଏ, ତାହାର ଅପାଦାନ କାରକ ହୁଏ । ଯଥା -

<u>ବୃକ୍ଷରୁ</u> ପତ୍ର ପଡ଼ିଲା ।

ଉଦାହରଣ– ପଡିଲା - ଅମିଶ୍ରକ୍ରିୟା, ଗଠିତହେଲା- ମିଶ୍ରକ୍ରିୟା

**ଅପେରା** – ଇଂରାଜୀ 'ଅପେରା' ଶବ୍ଦ ଯାତ୍ରାଭିନୟ ଓ ରଙ୍ଗମଞ୍ଚକଳାକୁ ବୁଝାଇଥାଏ, ମାତ୍ର ଓଡ଼ିଆ ସାହିତ୍ୟରେ ଏହା ଯାତ୍ରାକୁ ବୁଝାଏ । ଅପେରା ଶବ୍ଦ ଇଟାଲୀ ଭାଷାରୁ ଗୃହୀତ । ଇଟାଲୀରେ ଅପେରା ଶବ୍ଦ ନୃତ୍ୟ ଗୀତ ସମ୍ବଳିତ ଗୀତାଭିନୟକୁ ବୁଝାଏ ।

**ଅବକାଶ** – ପ୍ରାଚୀନ ଓଡ଼ିଆ ଗୀତି କବିତାରେ ବହୁ ଅବକାଶ ରହିଛି । ଓଡ଼ିଶାର ପଞ୍ଚସଖା ତଥା ଅନ୍ୟାନ୍ୟ ବହୁ ବୈଷ୍ଣବ କବି ସରଳ ସୁମଧୁର ଭାଷାରେ 'ଅବକାଶ' ବା 'ପାହାନ୍ତି

ଅବକାଶ' ଲେଖିଯାଇ ଅଛନ୍ତି । ଏହା ଏକପ୍ରକାର ପ୍ରାତଃକାଳୀନ ହରିନାମ ସ୍ମରଣ । ଏହି ଗୀତିକା ଗୁଡ଼ିକ ବିଭିନ୍ନ ଛନ୍ଦରେ ଲିଖିତ । ବିଶେଷ ଭାବରେ ଏହା ଭକ୍ତି ଓ ଶାନ୍ତ ରସାଶ୍ରିତ । ବିଭିନ୍ନ ଦେବ ମନ୍ଦିରରେ ବିଶେଷତଃ ବିଷ୍ଣୁ ମନ୍ଦିରରେ ପାହାନ୍ତାରେ ଅବକାଶ ଗୀତ ବୋଲାଯିବାର ବିଧି ରହିଛି । ଅଧିକାଂଶ ଅବକାଶ ଗୀତିକା ଭକ୍ତିମୂଳକ ଅଟେ । ଅଚ୍ୟୁତ, ଦୀନକୃଷ୍ଣ, ଯଶୋବନ୍ତ ଇତ୍ୟାଦି ବହୁ କବିଙ୍କର ଅବକାଶ ରଚନା ରହିଛି ।

**ଅବର୍ଗ୍ୟ ବର୍ଣ୍ଣ** – ଓଡ଼ିଆ ଭାଷାରେ ୧୧ଟି ବ୍ୟଞ୍ଜନ ବର୍ଣ୍ଣକୁ ଅବର୍ଗ୍ୟ ବର୍ଣ୍ଣ କୁହାଯାଏ । ଅବର୍ଗ୍ୟ ବର୍ଣ୍ଣ ତିନି ଭାଗରେ ବିଭକ୍ତ । ଯଥା - ୪ଟି ଅନ୍ତ୍ୟସ୍ଥ ବର୍ଣ୍ଣ - ଯ, ର, ଳ, ବ, ୪ଟି ଉଷ୍ମବର୍ଣ୍ଣ ଶ, ଷ, ସ, ହ ଏବଂ ତିନୋଟି ଅଯୋଗବାହ ବର୍ଣ୍ଣ ଯଥା ଂ, ଃ, ଁ ଏବଂ 'କ' ଠାରୁ 'ମ' ପର୍ଯ୍ୟନ୍ତ ୨୫ଟି ବ୍ୟଞ୍ଜନ ବର୍ଣ୍ଣକୁ ବର୍ଗ୍ୟ ବର୍ଣ୍ଣ କୁହାଯାଏ । କାରଣ ସ୍ପର୍ଶ ବର୍ଣ୍ଣମାନେ ଭିନ୍ନ ଭିନ୍ନ ବା ଶ୍ରେଣୀରେ ବର୍ଗୀକରଣ ହୋଇଥିବାରୁ ସେଗୁଡ଼ିକୁ ବର୍ଗ୍ୟ ବର୍ଣ୍ଣ କୁହାଯାଏ ।

**ଅବଚେତନ** – ଇଂରାଜୀ ସବ୍‌କନ୍‌ସିୟସନେସ୍ *(subconsciousness)* ର ଓଡ଼ିଆ ପ୍ରତିଶବ୍ଦ । ଫ୍ରଏଡ଼ୀୟ ତତ୍ତ୍ୱ ଅନୁଯାୟୀ ମଣିଷମନର ତିନୋଟି ସ୍ତର । ଯାହା ଅନ୍ତର୍ଦୃଷ୍ଟିରେ ଭାସମାନ, ତାହା ଅବଚେତନ ବା ଅର୍ଦ୍ଧଚେତନ । ଚେତନାର ତଳେ ଅବଚେତନର ସ୍ଥାନ । ଅବଚେତନକୁ ଯଥାର୍ଥରେ ଚେତନ ଓ ଅବଚେତନର ମଧ୍ୟବର୍ତ୍ତୀ ଅବସ୍ଥା ବୋଲି ଧରାଯାଏ । ଅବଚେତନ ସ୍ତରରେ ଯାହା ଅବଦମିତ ହୋଇ ରହିଥାଏ, ତାହା ଚେତନାସ୍ତରରେ ସ୍ୱପ୍ନ, ପାଗଳାମି, ଭାବପ୍ରବଣତା ରୂପରେ ପ୍ରକାଶିତ ହୁଏ । ମଣିଷ ଜୀବନର ଆଦିମ ପ୍ରକୃତି ଓ କାମନାର ଗନ୍ତାଘର ଏ ଅବଚେତନ ମନ ।

**ଅବ୍‌ଜେକ୍ଟିଭ କୋରିଲେଟିଭ୍** – ପାଶ୍ଚାତ୍ୟ କବି ଟି.ଏସ. ଏଲିଅଟ୍‌ଙ୍କର ଦ୍ୱାରା ବ୍ୟବହୃତ ଏ ତତ୍ତ୍ୱଟି ପୃଥିବୀର ଅଧିକାଂଶ ଆଧୁନିକ ସମାଲୋଚକ ଓ ଲେଖକର ଦୃଷ୍ଟି ଆକର୍ଷଣ କରିଥାଏ । ଏଲିୟଟଙ୍କ ମତରେ ଜଣେ ଲେଖକର ବା କବିର ଆବେଗ ପ୍ରକାଶ କରିବା ନିମନ୍ତେ ଏକମାତ୍ର ଶ୍ରେଷ୍ଠ ପନ୍ଥା ହେଉଛି ଗୋଟିଏ ଅବ୍‌ଜେକ୍ଟିଭି କୋରିଲେଟିଭ୍ ଖୋଜି ବାହାର କରିବା । ଅନ୍ୟଭାବରେ କହିବାକୁ ଗଲେ କେତେଗୁଡ଼ିଏ ବସ୍ତୁ, ଗୋଟିଏ ପରିସ୍ଥିତି ବା ଘଟଣାମାନ ହେଉଛନ୍ତି ଆବେଗର ବାହକ, ମାଧ୍ୟମ ବା ସୂତ୍ର । ବସ୍ତୁ ଘଟଣା ବା ପରିସ୍ଥିତ ମାଧମରେ ପ୍ରକାଶିତ ଆବେଗ ପାଠକମନରେ ସମପ୍ରକାର ଆବେଗର ଉଦ୍ରେକ କରିବା ପାଇଁ କ୍ଷମ ହୁଏ । ଏହି ଆବେଗ ପ୍ରକାଶ ବା ଉଦ୍ରେକ ପାଇଁ ଯେଉଁ ଘଟଣା, ପରିସ୍ଥିତି ବା ବ୍ୟକ୍ତିର ସାହାଯ୍ୟ ନିଆଯାଏ - ସେଗୁଡ଼ିକ ବାହ୍ୟ ବସ୍ତୁ ବିଶେଷ ବା ଅବଜେକ୍‌ଟିଭ୍ କୋରିଲେଟିଭ୍ ।

**ଅବଧି** – ଏହା ଜୈନ ସାହିତ୍ୟରେ ଦେଖାଯାଇଥାଏ । ଜୈନ ଦାର୍ଶନିକମାନଙ୍କ ମତରେ ମନର ଜ୍ଞାନ ପାଞ୍ଚ ପ୍ରକାର ଯଥା - ମତି, ଶ୍ରୁତି, ଅବଧି, ମନପର୍ଯ୍ୟାୟ ଓ କେବଳ । ଦୂରଦେଶ ଓ କାଳର ଘଟଣା ସଂପର୍କରେ ଯେଉଁ ପ୍ରତ୍ୟକ୍ଷ ଜ୍ଞାନ ହୁଏ, ତ'ର ନାମ 'ଅବଧି' ।

**ଅବଧୂତ** – ଶୈବ ସଂପ୍ରଦାୟ ବିଶେଷ । ଅବଧୂତ ନାମକ ଜଣେ ସନ୍ନ୍ୟାସୀ ଯଦୁ ରାଜାଙ୍କୁ ବହୁ ଉପଦେଶ ଦେବା ଭାଗବତରେ ଅଛି । ଏହି ଅବଧୂତ ୨୪ ଗୁରୁ । ଅବଧୂତମାନେ ସଂସାର ତ୍ୟାଗୀ । ଏମାନଙ୍କର କୌଣସି ଆଚାର ନାହିଁ । ତନ୍ତ୍ର ମତେ ଏମାନଙ୍କର ୪ଟି ଶାଖା - ବ୍ରହ୍ମାବଧୂତ, ଶୈବବଧୂତ, ଭକ୍ତାବଧୂତ ଓ ହଂସାବଧୂତ ।

**ଅବନା** – ରୀତିଯୁଗ ସାହିତ୍ୟରେ କବିର ଶବ୍ଦଜ୍ଞାନ ସମ୍ବଳିତ ରଚନାବିଶେଷ । ଅବନା ଅର୍ଥ ବନାନ କରିବା ଅନାବଶ୍ୟକ । ଉପେନ୍ଦ୍ରଭଞ୍ଜଙ୍କ ''ଅବନା·ରସ ତରଙ୍ଗ'' ଏହିପରି ଏକ ବିଶିଷ୍ଟ କାବ୍ୟ ।

**ଅବ୍ୟୟ** – ଯେଉଁ ପଦମାନଙ୍କରେ ଲିଙ୍ଗ, ବଚନ, ବିଭକ୍ତି ଭେଦରେ କୌଣସି ବ୍ୟୟ ଅର୍ଥାତ୍ ପରିବର୍ତ୍ତନ ହୁଏ ନାହିଁ, ତାହାକୁ ଅବ୍ୟୟ କହନ୍ତି । ଯଥା 'ଓ' ଏବଂ 'ଏ' ।

**ଅବ୍ୟୟୀଭାବ ସମାସ** – ଯେଉଁ ସମାସରେ ପୂର୍ବପଦ ଅବ୍ୟୟ ହୋଇଥାଏ ଏବଂ ସେହି ଅବ୍ୟୟର ଅର୍ଥ ପ୍ରଧାନ ରୂପେ ଅବସ୍ଥିତ ଥାଏ, ତାହାକୁ ଅବ୍ୟୟୀଭାବ ସମାସ କହନ୍ତି । ସାଧାରଣତଃ କାରକ, ବୀପସା, ବ୍ୟାପ୍ତି, ଅଭାବ, ଯୋଗ୍ୟତା ପ୍ରଭୃତି ଅର୍ଥରେ ଅବ୍ୟୟୀଭାବ ସମାସ ହୁଏ ।

**ଅବିଦ୍ୟା** – ଏହା ଏକ ଦାର୍ଶନିକ ଶବ୍ଦ ଯାହାର ଅର୍ଥ ହେଉଛି ଅଜ୍ଞାନ ଓ ମାୟା । ଦର୍ଶନ ଶାସ୍ତ୍ରରେ ଅବିଦ୍ୟା ଶବ୍ଦ ଭୌତିକ ଜଗତର ସତ୍ୟ ଓ ଅସତ୍ୟକୁ ବୁଝାଏ । ପାତଞ୍ଜଳି ଦର୍ଶନରେ ଅବିଦ୍ୟା ଅର୍ଥ ବିଦ୍ୟାର ଅଭାବ । ବୌଦ୍ଧ ଦର୍ଶନରେ ଅବିଦ୍ୟା ଦୁଃଖର କାରଣ । ଶଙ୍କର ଦର୍ଶନରେ ଭୋକ୍ତା (ଜୀବ) ଓ ଭାଗ୍ୟ(ଜଗତ) ସବୁ ଅବିଦ୍ୟାରେ ପରିଚାଳିତ । ଓଡ଼ିଆ ସନ୍ଥ ସାହିତ୍ୟରେ ଏହା ସାଂସାରିକ ମୋହ, ମାୟା, ମମତା, ଲୋଭ ଅର୍ଥରେ ବ୍ୟବହୃତ ତାମିସ୍ର ଓ ଅନ୍ଧତାମିସ୍ର । ରାମାନୁଜ ଦର୍ଶନରେ ଚିତ୍ ଓ ଅଚିତ୍ ଈଶ୍ୱରଙ୍କ ରୂପ ବିଶେଷ ହେଲାବେଳେ ଅବିଦ୍ୟା ଅର୍ଥ ଭ୍ରମକୁ ବୁଝାଏ ।

**ଅଭାବ**– ସାହିତ୍ୟରେ ଅଭାବ ଶବ୍ଦ ଅସଦ୍‌ଭାବ, ମୃତ୍ୟୁ ଦୁଃଖ ଓ ସ୍ନେହହୀନତା ଅର୍ଥରେ ବ୍ୟବହୃତ ହୋଇଥାଏ । କଣାଦଙ୍କ ମତରେ ଭାବାତିରିକ୍ତ ଅଭାବ ନାମକ କୌଣସି ପଦାର୍ଥ ନାହିଁ । ଅଭାବ ହେଉଛି ଭାବର ଭିନ୍ନ ନାମବିଶେଷ । ଅଭାବ ଅସତ୍ ପଦାର୍ଥର ଅଭିବ୍ୟକ୍ତି ମାତ୍ର । ଭାବହୀନତା ହିଁ ଅଭାବ ।

**ଅଭିଧା** – ଶବ୍ଦରୁ ନିର୍ଦ୍ଦିଷ୍ଟ ଅର୍ଥ ପ୍ରକାଶନ ପାଇଁ ତିନୋଟି ଶକ୍ତି ବା ପ୍ରକ୍ରିୟାର ପରିକଳ୍ପନା କରାଯାଇଛି । ସେଗୁଡ଼ିକ ହେଲେ ଅଭିଧା, ଲକ୍ଷଣା ଓ ବ୍ୟଞ୍ଜନା । ଅଭିଧା ଦ୍ୱାରା ଯେଉଁ ଅଭିବ୍ୟକ୍ତି ହୁଏ ତାହାର ନାମ ବାଚ୍ୟ ଅର୍ଥାତ୍ ଅଭିଧା ଶକ୍ତି ଦ୍ୱାରା ବାଚକ ଶବ୍ଦ ବାଚ୍ୟ ଅର୍ଥକୁ ବ୍ୟକ୍ତକରେ । ଏହି ଶବ୍ଦଶକ୍ତି ବା ଶବ୍ଦ ବ୍ୟାପାର ବା ଶବ୍ଦବୃତ୍ତି ଯାହାଦ୍ୱାରା ସାକ୍ଷାତ୍ ସଂକେତ ଅଥବା ମୁଖ୍ୟ ଅର୍ଥର ଅବବୋଧ ହୁଏ । ଶବ୍ଦର ମୁଖ୍ୟ ବା ପ୍ରଥମ ଅର୍ଥକୁ ବୁଝାଉଥିବାରୁ ଏହି ଅଭିଧା ଶକ୍ତିକୁ ମୁଖ୍ୟଶକ୍ତି କୁହାଯାଏ । ଆମେ ଦୈନନ୍ଦିନ ଜୀବନରେ ପ୍ରତିଦିନ ଯେତେ ଶବ୍ଦ ବ୍ୟବହାର କରୁ ସେଗୁଡ଼ିକର ସ୍ୱାଭାବିକ ମୌଳିକ ଅର୍ଥ ଅଛି । ସେହି ମୌଳିକ ଅର୍ଥର ନାମ ବାଚାର୍ଥ ।

**ଅଭିଧାନ** – ଅଭିଧାନ ଶବ୍ଦର ଧାତୁଗତ ଅର୍ଥ ହେଉଛି ଶବ୍ଦକୋଷ । ଅଭିଧାନରେ ଶବ୍ଦର ବ୍ୟୁତ୍ପତ୍ତି, ଅର୍ଥ ଓ ପ୍ରୟୋଗ ଇତ୍ୟାଦି ଦର୍ଶାଯାଇଥାଏ ।

**ଅଭିନୟ** – ନାଟ୍ୟ ବିଷୟବସ୍ତୁର ପ୍ରଦର୍ଶନ କଳାକୁ ଅଭିନୟ କୁହାଯାଏ । ପ୍ରାଚୀନ ଭାରତୀୟ ଅଭିନୟକଳାକୁ ଭରତ ୪ଟି ଶ୍ରେଣୀରେ ବିଭକ୍ତ କରିଛନ୍ତି; ଯଥା - ଆଙ୍ଗିକ, ବାଚିକ, ଆହାର୍ଯ୍ୟ ଓ ସାତ୍ତ୍ୱିକ । ଅଙ୍ଗଭଙ୍ଗୀଦ୍ୱାରା ନିଷ୍ପନ୍ନ ଅଭିନୟକୁ ଆଙ୍ଗିକ, ବଚନଦ୍ୱାରା ନିଷ୍ପନ୍ନ ଅଭିନୟକୁ ବାଚିକ, ବେଶ ରଚନା ବିଧାନକୁ ଆହାର୍ଯ୍ୟ ଓ ସାତ୍ତ୍ୱିକ ଭାବ ଉଦ୍ରେକ କରୁଥିବା ଅଭିନୟକୁ ସାତ୍ତ୍ୱିକ ଅଭିନୟ କୁହାଯାଏ ।

**ଅଭିବ୍ୟକ୍ତି** – ବ୍ୟକ୍ତ ବା ପ୍ରକାଶ କରିବାର ପ୍ରକ୍ରିୟାହିଁ ଅଭିବ୍ୟକ୍ତି । ଲେଖକର ମନୋଭାବ ତା'ର ରଚନାରେ ପ୍ରକାଶିତ ହେଲେ ତାହା ସାହିତ୍ୟ ପଦବାଚ୍ୟ ହୁଏ । ଏହି ଅଭିବ୍ୟକ୍ତିର ଧାରାରେ ସତ୍ୟ, ଶିବ, ସୁନ୍ଦରକୁ ଧାରଣା କରିହୁଏ । କ୍ରୋଚେଙ୍କ ମତରେ ଲେଖାରେ ଅନ୍ତର୍ବୋଧ ବା ସହଜଜ୍ଞାନ ପ୍ରକାଶ ପାଇବା ସ୍ୱାଭାବିକ, ଯାହା ସମସ୍ତ କଳାକାରଠାରେ ଦେଖାଯାଏ । କୌଣସି ଭାବ ହୃଦୟରେ ଜନ୍ମ ନେଲେ ତାହା ପ୍ରକାଶିତ ହେବା ଅବଶ୍ୟମ୍ଭାବୀ, ଯାହାକୁ ଅଭିବ୍ୟକ୍ତି କୁହାଯାଏ ।

**ଅଭିବ୍ୟକ୍ତିବାଦ** – ଅଭିବ୍ୟକ୍ତିବାଦ ବାସ୍ତବବାଦ ବିରୋଧୀ ଏକ ବିପ୍ଳବ ଭାବରେ ସ୍ଥାନ ପାଇଥିଲା । ଏହା ବିଶେଷତଃ ଅଭିବ୍ୟକ୍ତି ଉପରେ ଗୁରୁତ୍ୱ ଆରୋପ କରିଥାଏ । ଏହା ବସ୍ତୁଜଗତର ସତ୍ୟକୁ ପରିପ୍ରକାଶ କରିବା ପରିବର୍ତ୍ତେ ମାନସିକ ଅଭିବ୍ୟକ୍ତି ପ୍ରତି ବିଶେଷ ଗୁରୁତ୍ୱ ଆରୋପ ଦେଇଥାଏ । ତେଣୁ ବସ୍ତୁ ଜଗତରେ ସତ୍ୟ ଅପେକ୍ଷା ଏଥିରେ ମନୋଜଗତର ଭାବାଭିବ୍ୟକ୍ତି ଅଧିକତରଭାବେ ପ୍ରକାଶିତ ହୋଇଥାଏ । ଅଭିବ୍ୟକ୍ତିବାଦ ଅନୁକରଣ ଓ ପୁନାରାବୃତ୍ତି ଇତ୍ୟାଦିକୁ ଅଗ୍ରାହ୍ୟ କରିଥାଏ । ଏଥିରେ ଅଭିବ୍ୟଞ୍ଜନା ମୁଖ୍ୟତଃ ପ୍ରାଧାନ୍ୟ ଲାଭ କରିଥାଏ । ଅଭିବ୍ୟକ୍ତିବାଦୀମାନେ ପ୍ରାରମ୍ଭିକ କାଳରେ ମାନବବାଦୀ ଥିଲେ ମଧ୍ୟ ପରବର୍ତ୍ତୀକାଳରେ ସମାଜବାଦରେ ବିଶ୍ୱାସ କରିଥିଲେ । ଆବେଗ ପ୍ରକାଶର

ତୀବ୍ରତା ହେଉଛି ଅଭିବ୍ୟକ୍ତିବାଦର ଅନ୍ୟତମ ବିଶେଷତ୍ୱ । ଭାବକୁ ସଙ୍କେତ ମାଧ୍ୟମରେ ପ୍ରକାଶ କରିବା ଏହି ବାଦର ଅନ୍ୟତମ ବିଶେଷତ୍ୱ ।

**ଅଭିବ୍ୟକ୍ତିବାଦ** – ଭାରତୀୟ ସାହିତ୍ୟ ତତ୍ତ୍ୱରେ ରସୋତ୍ପତ୍ତି ବିଷୟକ ଚାରିଗୋଟି ବାଦ ଗ୍ରହଣ କରାଯାଇଛି । ଯଥା– (୧) ଲୋଲ୍ଲଟଙ୍କ ଉତ୍ପତ୍ତିବାଦ, (୨) ଶଙ୍କୁକଙ୍କ ଅନୁମତିବାଦ, (୩) ଭଟ୍ଟନାୟକଙ୍କ ଭୁକ୍ତିବାଦ ଓ (୪) ଅଭିନବଗୁପ୍ତଙ୍କ ଅଭିବ୍ୟକ୍ତିବାଦ । ଏହାଙ୍କ ମତରେ ରସ ଅଭିଧା ଶକ୍ତି ଦ୍ୱାରା ବାଚ୍ୟ ନୁହେଁ କି ଲକ୍ଷଣା ଶକ୍ତି ଦ୍ୱାରା ଲକ୍ଷିତ ହୁଏ ନାହିଁ । କିନ୍ତୁ ବ୍ୟଞ୍ଜନା ଶକ୍ତିଦ୍ୱାରା ବ୍ୟଞ୍ଜିତ ହୁଏ । ତେଣୁ ଏହା ବାଚ୍ୟ ନୁହେଁ, ଲକ୍ଷ୍ୟ ନୁହେଁ କିନ୍ତୁ ବ୍ୟଙ୍ଗ । ଅଭିନବ ଗୁପ୍ତଙ୍କ ମତରେ 'ସଂଯୋଗ' ର ଅର୍ଥ ବ୍ୟଙ୍ଗ ବ୍ୟଞ୍ଜକ ଭାବ ସମ୍ବନ୍ଧ ଏବଂ 'ନିଷ୍ପତ୍ତି' ଅର୍ଥ ଅଭିବ୍ୟକ୍ତି । ଏହିପରି ରସ ଓ ବିଭାବାଦିମାନଙ୍କ ମଧ୍ୟରେ ବ୍ୟଙ୍ଗ ବ୍ୟଞ୍ଜକ ଭବ ସମ୍ବନ୍ଧ ପ୍ରତିଷ୍ଠିତ । ବିଭାବାଦିମାନେ ହେଉଛନ୍ତି ବ୍ୟଞ୍ଜକ ଓ ରସ ହେଉଛି ବ୍ୟଙ୍ଗ । ଏହି ଅଭିବ୍ୟକ୍ତିବାଦ ମନୋବୈଜ୍ଞାନିକ ବିଚାର ସମ୍ମତ ହୋଇଥିବାରୁ ତାହ ଅତ୍ୟନ୍ତ ଲୋକପ୍ରିୟ ଓ ସର୍ବବାଦ ସମ୍ମତ ସିଦ୍ଧାନ୍ତ ଭାବରେ ଗୃହୀତ ହୋଇଥାଏ ।

**ଅଭିଲେଖ** – ଅଭିଲେଖ କହିଲେ ସାଧାରଣତଃ ଶିଳାଲେଖ, ତାମ୍ରଲେଖ ଇତ୍ୟାଦିକୁ ବୁଝାଏ । ପ୍ରାଚୀନ କାଳରେ ରାଜାମାନେ ସେମାନଙ୍କ ରାଜକୀୟ ଘୋଷଣା, ବିଜୟ ଘୋଷଣା, ଦାନପତ୍ର ଇତ୍ୟାଦିକୁ ଜନସାଧାରଣଙ୍କ ଗୋଚରାର୍ଥେ ଶିଳାରେ ଖୋଦନ କରାଉଥିଲେ ବା ତାମ୍ରଫଳକରେ ଲିଖନ କରାଉଥିଲେ ।

ଓଡ଼ିଆ ସାହିତ୍ୟର ପ୍ରାରମ୍ଭିକ ଯୁଗ ଯଥାର୍ଥରେ ଏହି ଅଭିଲେଖ ସାହିତ୍ୟରୁ ହିଁ ବିକାଶ ଲାଭ କରିଥିଲା ।

**ଅମରକୋଷ ଗୀତା** – ନାଥ ଧର୍ମତତ୍ତ୍ୱରେ ପରିପୁଷ୍ଟ ଆଦିନାଥଙ୍କ ଦ୍ୱାରା ରଚିତ ଏହା ପ୍ରାମାଣିକ ଗ୍ରନ୍ଥ । ଗୁରୁ ଆଦିନାଥ ଓ ଶିଷ୍ୟ ଲୋଇଙ୍କ କଥୋପକଥନ ଢଙ୍ଗରେ ଏଇଟି ରଚିତ । ଆଦିନାଥ ଓ ଶିବଙ୍କୁ ଏହି ଗ୍ରନ୍ଥରେ ଏକ ଓ ଅଭିନ୍ନ ଭାବରେ ଗ୍ରହଣ କରାଯାଇଛି । କେତେକ ଆଲୋଚକ ଏହାକୁ ୧୩ଶ ଶତାବ୍ଦୀ ଭାବରେ ନିର୍ଣ୍ଣିତ କରିଛନ୍ତି ।

**ଅମରବାରୁଣୀ ଅମୃତ** – ଏହା ସନ୍ଥ ସାହିତ୍ୟରେ ଦେଖାଯାଏ । ଖେଚରୀ ମୁଦ୍ରାରେ ଯୋଗୀ ଜିଭକୁ ଲେଇଟାଇ ତାହାକୁ କପାଳ ଗୁହରରେ ପ୍ରବେଶ କରାଇଥାଏ । ସେ ସହସ୍ରାର ପଦ୍ମମୂଳସ୍ଥ ଯୋନି ନାମକ ତ୍ରିକୋଣାକାର ଶକ୍ତିକେନ୍ଦ୍ର ବା ଚନ୍ଦ୍ରସ୍ଥାନରୁ ସବୁବେଳେ ଝରିପଡୁଥିବା ଅମୃତ ମହାରସ ବା ଅମରବାରୁଣୀ ପାନ କରି ଅମର ହୋଇଥାଏ । ଯେତେ ମୁଦ୍ରା ଅଛି ତନ୍ମଧ୍ୟରେ ଖେଚରୀ ମୁଦ୍ରା ପ୍ରଧାନ ବୋଲି ହଠଯୋଗ ପ୍ରଦୀପିକା ଗ୍ରନ୍ଥରେ କୁହାଯାଇଛି ।

**ଅମିତ୍ରାକ୍ଷର** – ଅମିତ୍ରାକ୍ଷର ଛନ୍ଦ ଏକ ଯତିହୀନ କବିତା ଯାହାକୁ ଇଂରାଜୀରେ ବ୍ଲାଙ୍କଭର୍ସ Blank Verse କୁହାଯାଏ । ଇଂରାଜୀ ଅମିତ୍ରାକ୍ଷର ଛନ୍ଦରେ ପ୍ରତିଟି ପଂକ୍ତିରେ ଦଶଟି

ମାତ୍ରା, ପାଞ୍ଚଟି ସ୍ତବକ ଓ ପ୍ରତି ସ୍ତବକରେ ପ୍ରତିଘାତହୀନ ମାତ୍ରା ପରି ଏକଘାତ ମାତ୍ରା ରହେ । ଏହିପରି ମାତ୍ରାକୁ ପଶ୍ଚାତଘାତ (iambic) କୁହାଯାଏ ଏବଂ ପାଞ୍ଚଟି ପଦଥିବାରୁ ତାହାକୁ ୟାମ୍ବିକ୍ ପେଣ୍ଟାମିଟର iambic pentametre କୁହାଯାଏ । ଏହା ଯତିହୀନ ହେଲେ ଅମିତ୍ରାକ୍ଷର ହୁଏ । ଅମିତ୍ରାକ୍ଷର ଛନ୍ଦର ଅନ୍ୟ ଏକ ଲକ୍ଷଣ ହେଉଛି ଭାବ ଛନ୍ଦକୁ ଅନୁସରଣ କରେ ନାହିଁ ବରଂ ଛନ୍ଦ ଭାବକୁ ଅନୁସରଣ କରେ । ଭାବ ଏକାଧିକ ଚରଣର ଶେଷରେ କିମ୍ବା କୌଣସି ଏକ ଚରଣର ମଝିରେ ଶେଷ ହୋଇପାରେ ଏବଂ ସେହିଠାରେ ପୂର୍ଣ୍ଣ ଯତି ପଡ଼େ ।

**ଅମିଶ୍ର କ୍ରିୟା** – କୌଣସି କ୍ରିୟା ଏକାଧିକ ପଦର ମିଳନରେ ଗଠିତ ନ ହେଲେ ତାହା ଅମିଶ୍ର କ୍ରିୟା କୁହାଯାଏ ।

**ଅଯୋଗବାହ ବର୍ଣ୍ଣ** – ଅନୁସ୍ୱାର (ଂ), ବିସର୍ଗ (ଃ), ଚନ୍ଦ୍ରବିନ୍ଦୁ ( ଁ) ଏହି ତିନୋଟି ଅଯୋଗବାହ ବର୍ଣ୍ଣ ଅନ୍ତର୍ଗତ ।

**ଅଳଙ୍କାର** – ଅଳଂକ୍ରିୟତେ ଅନେନ ଇତି ଅଳଙ୍କାରଃ ଯାହାଦ୍ୱାରା ସାହିତ୍ୟର ଆତ୍ମତତ୍ତ୍ୱ ସୌନ୍ଦର୍ଯ୍ୟାନୁଭବକୁ ଅଳଙ୍କୃତ ଅଥବା ପରିପୁଷ୍ଟ କରାଯାଏ । ବ୍ୟାପକ ଅର୍ଥରେ ଅଳଂକ୍ରିୟତେ ଇତି ଅଙ୍କଂକାର । ଅର୍ଥାତ୍ ଅଳଙ୍କାର କାବ୍ୟର ଆତ୍ମାସ୍ଥାନୀୟ ସୌନ୍ଦର୍ଯ୍ୟତତ୍ତ୍ୱ, ଯାହାକୁ ବହୁ ଭାବରେ ବହୁ କାବ୍ୟିକ ଉପାଦାନ ଦ୍ୱାରା ଅଳଂକୃତ କରାଯାଏ । ସର୍ବପ୍ରଥମେ ଆଚାର୍ଯ୍ୟ ବାମନ ଏହି ବ୍ୟାପକ ଅର୍ଥର ପ୍ରବର୍ତ୍ତକ, ତାଙ୍କର ପ୍ରସିଦ୍ଧ ସୂତ୍ର 'ସୌନ୍ଦର୍ଯ୍ୟମଳଂକାରଃ' ଏହି ତଥ୍ୟ ପରିବେଷଣ କଲେ । ଅର୍ଥାତ୍ ସୌନ୍ଦର୍ଯ୍ୟ ହିଁ ଅଳଙ୍କାର ଓ ଅଳଙ୍କାର ହିଁ ସୌନ୍ଦର୍ଯ୍ୟ ।

କାବ୍ୟକଳାକୁ ଯାହା ଦ୍ୱାରା ଅଳଂକୃତ କରାଯାଏ, ତାହା ଅଳଙ୍କାର । ଭାମହଙ୍କଠାରୁ ଏହା କାବ୍ୟକଳାର ଏକ ବିଶିଷ୍ଟ ତତ୍ତ୍ୱ ଭାବରେ ଗୃହୀତ ହେଲା । କାବ୍ୟ ବା ପଦ୍ୟ ସାହିତ୍ୟର ଶୋଭାବର୍ଦ୍ଧନ କରୁଥିବା ଉପାଦାନଗୁଡ଼ିକ କାବ୍ୟାଳଙ୍କାର ବା ଅଳଙ୍କାର କୁହାଯାଏ । ଅନ୍ୟ ଭାଷାରେ କାବ୍ୟରେ ବ୍ୟବହୃତ ଶବ୍ଦ, ଧ୍ୱନି ଏବଂ ଅର୍ଥ ଏବଂ ଭାବର ଶୋଭାବର୍ଦ୍ଧନ ଓ ଚମତ୍କାରିତା ସମ୍ପାଦନ କରୁଥିବା କବିକର୍ମ ହିଁ ଅଳଙ୍କାର ପଦବାଚ୍ୟ ।

**ଅଲୁକ ସମାସ** – ସାଧାରଣତଃ ସମାସ ହେଲେ ସମସ୍ତପଦର ସମସ୍ୟମାନ ପଦମାନଙ୍କର ବିଭକ୍ତି ଚିହ୍ନ ଲୋପହୁଏ । ଏହାକୁ ଲୁକ ସମାସ କହନ୍ତି । ମାତ୍ର ତତ୍ପୁରୁଷ ସମାସରେ ସ୍ଥଳ ବିଶେଷରେ ପୂର୍ବ ପଦସ୍ଥିତ ବିଭକ୍ତିର ଲୋପ ହୋଇ ନଥାଏ । ଏ ପ୍ରକାର ସମାସର ନାମ ଅଲୁକ ସମାସ । ଯଥା - ଯୁଧି (ଯୁଦ୍ଧରେ)ସ୍ଥିର - ଯୁଧିଷ୍ଠିର

**ଅଷ୍ଟମୂର୍ତ୍ତି** – ସନ୍ଥ ସାହିତ୍ୟରେ ପଞ୍ଚ ଆତ୍ମା, ନାଦ, ବିନ୍ଦୁ ଓ ବୀଜ - ଏହି ଆଠ ତତ୍ତ୍ୱକୁ ଅଷ୍ଟମୂର୍ତ୍ତି ଭାବେ କଥିତ ।

**ଅଷ୍ଟାଙ୍ଗ** – ସନ୍ଥ ସାହିତ୍ୟରେ ଚନ୍ଦ୍ରର ଚାରିକଳା ଓ ସୂର୍ଯ୍ୟର ଚାରକଳା ଅଷ୍ଟାଙ୍ଗ ଭାବରେ କଥିତ । ପୁଣି କୁହାଯାଇଛି ଯେ ଚନ୍ଦ୍ରର ୧୬ କଳା ସୂର୍ଯ୍ୟଙ୍କର ୧୬ କଳା, ଏହିପରି ୩୨ କଳାରୁ ପଞ୍ଚ ମହାଭୂତଙ୍କର ଜନ୍ମ । ଚନ୍ଦ୍ର ସୂର୍ଯ୍ୟ ନେଇ ଶରୀର ସୃଷ୍ଟି ।

**ଅଷ୍ଟାଦଶ ପର୍ବ** – ମହାଭାରତ ୧୮ଟି ଅଧ୍ୟାୟକୁ ୧୮ଟି ପର୍ବ କୁହାଯାଏ । ଏମାନଙ୍କର ନାମ ଯଥା- ଆଦି, ସଭା, ବନ, ବିରାଟ, ଉଦ୍‌ଯୋଗ, ଭୀଷ୍ମ, ଗୁରୁ ବା ଦ୍ରୋଣ, ରବିଜ ବା କର୍ଣ୍ଣ, ଆଦ୍ରବ ବା ଶଲ୍ୟ, ସୌପ୍ତିକ, ସ୍ତ୍ରୀ, ଶାନ୍ତି, ଅନୁଶାସନ, ଅଶ୍ୱମେଧ, ବ୍ୟାସାଶ୍ରମ, ମୁଷଳ, ମହାପ୍ରସ୍ଥାନ, ସ୍ୱର୍ଗାରୋହଣ ।

**ଅଷ୍ଟାଦଶପୁରାଣ** – ୧- ବ୍ରହ୍ମ, ୨- ପଦ୍ମ, ୩- ବିଷ୍ଣୁ, ୪-ଶିବ, ୫-ଭଗବତ, ୬- ନାରଦୀୟ, ୭- ମାର୍କେଣ୍ଡୟ, ୮- ଅଜ, ୯- ଭବିଷ୍ୟ, ୧୦- ବ୍ରହ୍ମକୈବର୍ତ୍ତ, ୧୧- ଲିଙ୍ଗ, ୧୨- ବରାହ, ୧୩-ସ୍କନ୍ଦ, ୧୪- ବାମନ, ୧୫- କୂର୍ମ, ୧୬- ମତ୍ସ୍ୟ, ୧୭- ଗରୁଡ଼, ୧୮- ବ୍ରହ୍ମାଣ୍ଡ ପୁରାଣ ।

**ଅସ୍ତିତ୍ୱବାଦ** – ଅସ୍ତିତ୍ୱବାଦ ଆଧୁନିକ ଦର୍ଶନ ଓ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଉପରେ ନିର୍ଭର କରି ପ୍ରଥମେ ଏକ ଦାର୍ଶନିକ ଚିନ୍ତାଧାରାରେ ପରିଣତ ହୋଇ କ୍ରମେ ସାହିତ୍ୟ କ୍ଷେତ୍ରକୁ ପ୍ରବେଶ କରିଥିଲା । ଏହା ମଣିଷର ସ୍ଥିତି ଉପରେ ଅଧିକ ଗୁରୁତ୍ୱ ଆରୋପ କରିଥାଏ । ମଣିଷ ଜୀବନର ସାମଗ୍ରିକତାର ବାସ୍ତବ ଭିତ୍ତି ଉପରେ ଅସ୍ତିତ୍ୱବାଦ ସାହିତ୍ୟ ପ୍ରକାଶ ପାଏ । ମଣିଷର ସତ୍ତା ଓ ମଣିଷର ସ୍ୱାଧୀନ ଇଚ୍ଛା ଏଥିରେ ଅଭିବ୍ୟକ୍ତି ଲାଭ କରିଥାଏ । ମଣିଷର ବିଚ୍ଛିନ୍ନତାବୋଧ ଓ ଅସହାୟତାରୁ ଅସ୍ତିତ୍ୱବାଦର ଜନ୍ମ । ପରମ୍ପରାର ବିରୋଧ ଓ ବ୍ୟକ୍ତିସତ୍ତାର ଜୟଜୟକାର ଅସ୍ତିତ୍ୱବାଦର ଅନ୍ୟତମ ଲକ୍ଷଣ । ଧର୍ମଧାରଣା ଓ ଅଧ୍ୟାତ୍ମିକ ଜୀବନବୋଧ ନୁହେଁ, ବ୍ୟକ୍ତିବାଦର ସ୍ଥିତି ପ୍ରତି ସଚେତନ ପ୍ରକାଶ ଅସ୍ତିତ୍ୱବାଦର-ବିଶେଷତ୍ୱ । ମଣିଷର ନିର୍ଯ୍ୟାସ ନୁହେଁ ମଣିଷର ଅସ୍ତିତ୍ୱ ହିଁ ପ୍ରାଧାନ୍ୟ ଲାଭ କରେ । ଆଧୁନିକ ଓଡ଼ିଆ ସାହିତ୍ୟରେ ଅସ୍ତିତ୍ୱବାଦୀ ଚେତନା ବେଶ୍ ଲକ୍ଷ୍ୟଣୀୟ ।

**ଅଶ୍ଳୀଳ** – ସାହିତ୍ୟରେ ଅଶ୍ଳୀଳତା ଏକ ଆପେକ୍ଷିକ ଶବ୍ଦ । ସଂପ୍ରତି ଯୌନ ବର୍ଣ୍ଣନା ବଳରେ ଯଦି କାମ ପ୍ରବୃତ୍ତିକୁ ଉତ୍ତେଜିତ କରିବା ହିଁ ସାର ହୁଏ, ତାହା ଅଶ୍ଳୀଳ ପଦବାଚ୍ୟ । କିନ୍ତୁ ଯୌନ ଚେତନା ଅଶ୍ଳୀଳ ନୁହେଁ । କାମସୂତ୍ର କୁ କେହି ଅଶ୍ଳୀଳ କହିପାରିବେ ନାହିଁ । କାରଣ 'କାମସୂତ୍ର' ଏକ ନିର୍ଦ୍ଦିଷ୍ଟ ଲକ୍ଷ୍ୟ ନେଇ ରଚିତ । ନର-ନାରୀର ଯୌନ ମିଳନର ବର୍ଣ୍ଣନାରେ ବିଭତ୍ସତା, ବିଷମତା, ବିକୃତି, ପାଶବିକତା ର ଆଟୋପ ରହିଲେ ତାହା ଅଶ୍ଳୀଳ ବୋଲି ବିବେଚିତ ହୁଏ । ଆଚାର୍ଯ୍ୟ ମମ୍ମଟ ଅଶ୍ଳୀଳକୁ ପଦ ଦୋଷ ଭାବରେ ଗ୍ରହଣ କରି ତାହାକୁ ତିନୋଟି ଶ୍ରେଣୀରେ ବିଭକ୍ତ କରିଥିଲେ । ଯଥା (କ) ଘୃଣା ବ୍ୟଞ୍ଜକ ଅଶ୍ଳୀଳ (ଖ) ଲଜ୍ଜା ଜନକ ଅଶ୍ଳୀଳ (ଗ) ଅଶୁଭଜନକ । କିନ୍ତୁ ଫ୍ରଏଡ଼ଙ୍କ ସମଗ୍ର ବିଶ୍ୱ ସାହିତ୍ୟକୁ ମଣିଷର କାର୍ଯ୍ୟକଳାପ ମୂଳରେ ସୁପ୍ତ ଯୌନ ଚେତନାର ଘୋଷଣା ପରବର୍ତ୍ତି

ସମୟରେ ମନୋବୈଜ୍ଞାନିକ ବିଶ୍ଳେଷଣକୁ ପଛରେ ପକାଇ ଅଶ୍ଳୀଳ ସାହିତ୍ୟ ରଚନା ପାଇଁ ସ୍ୱାଧୀନତା ଦେଇଥିଲେ ।

**ଅସମାପିକା କ୍ରିୟା** – ଯେଉଁ କ୍ରିୟାର ବ୍ୟବହାର ଦ୍ୱାରା ବାକ୍ୟର ଅର୍ଥ ସଂପୂର୍ଣ୍ଣ ରୂପେ ପ୍ରକାଶ ପାଏନାହିଁ ଏବଂ ଅନ୍ୟ କ୍ରିୟାର ଅପେକ୍ଷା ରହେ, ତାହାକୁ ଅସମାପିକା କ୍ରିୟା କହନ୍ତି । ଯଥା - ଶିଶୁଟି ଶୋଇଅଛି ।

**ଅସୁନ୍ଦର ବ୍ୟଙ୍ଗ୍ୟ** – ବାଚ୍ୟାର୍ଥରୁ ନିର୍ଗତ ବ୍ୟଙ୍ଗାର୍ଥରେ ବିଶେଷ କିଛି ଚମତ୍କାରିତା ନଥିଲେ ଅସୁନ୍ଦର ବ୍ୟଙ୍ଗ ହୁଏ । ଉଦାହରଣ -

''ଏଡ଼େ ମାୟା ପ୍ରାଣେ ଯେ, ତେଜି ରଣଭୂମି
ଶଙ୍ଖଳି ସ୍ୱରୂପ ତୁମ୍ଭ ରଙ୍କ ପ୍ରାଣ ନେଇ,
ବାନ୍ଧି ରଖ ଗୃହେ ଯାଇ ନାରୀ ବସ୍ତ୍ରାଞ୍ଚଳେ
ହେ ନାରୀଏ, ଘୃଣାକ୍ଷରେ ନର ଦେହଧାରୀ ।'' (ମହାଯାତ୍ରା)

**ଅସ୍ଫୁଟ ବ୍ୟଙ୍ଗ୍ୟ** – ଉଦ୍ଧୃତାଂଶରେ ବିନ୍ୟସ୍ତ ଶବ୍ଦ ସମ୍ଭାର ବ୍ୟାଚ୍ୟାର୍ଥ ଦ୍ୱାରା ଅଭିବ୍ୟଞ୍ଜିତ ଅର୍ଥ ସ୍ପଷ୍ଟ ଭାବରେ ଅଭିବ୍ୟକ୍ତ ହୋଇପାରି ନଥିଲେ ବ୍ୟଙ୍ଗାର୍ଥ ଅସ୍ଫୁଟ ବ୍ୟଙ୍ଗ୍ୟ ହୋଇଥାଏ । ଉଦାହରଣ -

ବିମଳ ଆଦରଣ ପରା ସେ ହୃଦ
ମୋ ବାଛିବା ବିମ୍ବ ଥିବ
ବରୁଣ ଦିଗ ତରଣୀ ତରୁଲତା
ଅନାଇଁ ଅନାଇଁ ଧବ । (ବୈଦେହୀଶବିଳାସ)

**ଅକ୍ଷର** – ଗୋଟିଏ ଭାଷାର ଲିଖିତ ପାଇଁ ବ୍ୟବହୃତ ତଥା ସର୍ବସ୍ୱୀକୃତ ସାଙ୍କେତିକ ଚିହ୍ନକୁ ବର୍ଣ୍ଣ ବା ଅକ୍ଷର କୁହାଯାଏ । କେତେଗୁଡ଼ିଏ ଅକ୍ଷର ମିଶି ଶବ୍ଦ ସୃଷ୍ଟି ହୁଏ । ବିଭିନ୍ନ ଭାଷାରେ ବିଭିନ୍ନ ସଂଖ୍ୟକ ଅକ୍ଷର ଥାଏ । ଅକ୍ଷରଗୁଡ଼ିକର ଆକାର ଓ ଉଚ୍ଚାରଣ ମଧ୍ୟ ବିଭିନ୍ନ । ଓଡ଼ିଆରେ ୪୯ଟି ଅକ୍ଷର ଅଛି ।

## ଆ

**ଆ** – ଓଡ଼ିଆ ସ୍ୱରବର୍ଣ୍ଣର ଦ୍ୱିତୀୟ ଅକ୍ଷର । ଏହା ସମ୍ୟକ୍ ବ୍ୟାପ୍ତିବୋଧକ ଉପସର୍ଗ ଭାବରେ ପରିଚିତ । ଏହା ଉପ, ଇସତ୍ ପ୍ରଭୃତି ଅର୍ଥରେ ମଧ୍ୟ ପ୍ରଯୁକ୍ତ ।

**ଆକାଂକ୍ଷା** – ଆଗ୍ରହ ବା ଇଚ୍ଛା । ଶ୍ରୋତା ଗୋଟିଏ ପଦ ଶୁଣିଲେ ବି ସେଥିରେ ସେ ତୃପ୍ତି ହୁଏ ନାହିଁ । ଆହୁରି କିଛି ଶୁଣିବାକୁ ତାହାର ଆଗ୍ରହ ଜାତ ହୁଏ । ଶ୍ରୋତାର ମନରେ ଏହି ଆଗ୍ରହ ଯେଉଁ ପଦ ସୃଷ୍ଟି କରେ, ତାହାକୁ ଆକାଂକ୍ଷାପଦ କୁହାଯାଏ । ଏହା ସାହିତ୍ୟରେ ଶବ୍ଦଶକ୍ତିର ଅନ୍ତର୍ଭୁକ୍ତ ।

**ଆର୍କେଟାଇପ୍** – ଆଦିମ କଥାର ତତ୍ତ୍ୱ ନେଇ ନୂତନ ଚେତନାରେ ଆରୋପଣ କରିବାର ଉପାଦାନ, ସ୍ଥାପତ୍ୟ, କଳାକୁ ଆର୍କେଟାଇପ୍ କୁହାଯାଏ । ଆଧୁନିକ କବିତାରେ ଏହାର ପ୍ରୟୋଗ ଅଧିକ । ଯେତେବେଳେ କଳାକାରର ଶୁଦ୍ଧଭାବବସ୍ତୁ ସତ୍ୟ ସହିତ ସଂପୃକ୍ତ ଏବଂ ବସ୍ତୁସତ୍ୟ ପ୍ରତୀକ ମାଧ୍ୟମରେ ରୂପାୟିତ କରିଥାଏ, ସେତେବେଳେ ତାହା ଆର୍କେଟାଇପ୍ ବ୍ୟବହାର କରିଥାଏ । ଫଳତଃ ଆର୍କେଟାଇପ୍ ପାଠକର ଅବରୁଦ୍ଧ ହୋଇ ରହିଥିବା କଥାକୁ ସ୍ମରଣ କରାଇବା ସହିତ କବିତା ମାଧ୍ୟମରେ ଚିହ୍ନିବାରେ ସୁଯୋଗ ପାଇଥାଏ । ସାହିତ୍ୟରେ ଏହି ଆଦର୍ଶର ଉପଯୋଗୀତା ସମ୍ବନ୍ଧରେ ପ୍ରାୟ ଅଷ୍ଟାଦଶ ଶତାବ୍ଦୀରେ ପାଶ୍ଚାତ୍ୟ ସାହିତ୍ୟିକ ଭିକୋ ପ୍ରଥମେ ଚିନ୍ତା କରିଥିଲେ । ଯାହାକୁ ପରବର୍ତ୍ତୀ ସମୟରେ ଡବ୍ଲୁ.ବି. ଇୟେଟ୍ସ ସଫଳତାର ସହ ପ୍ରୟୋଗ କରିଥିଲେ ।

**ଆଖ୍ୟାୟିକା** – ଅମରକୋଷରେ ଆଖ୍ୟାୟିକା ସତ୍ୟ ଓ ଜ୍ଞାନ ବିଷୟକ ତଥା କଳ୍ପନା ପ୍ରସୂତ କାହଣୀ ବୋଲି କୁହାଯାଇଛି । ପ୍ରଥମେ ପୁରାଣ, କିମ୍ବଦନ୍ତୀରୁ କଥା ଗ୍ରହଣ କରି ଆଖ୍ୟାୟିକା ରଚିତ ହେଉଥିଲା । ପରବର୍ତ୍ତୀ ସମୟରେ ମନଗଢ଼ା ବିଷୟବସ୍ତୁ ଓ ମଣିଷ ସମାଜରୁ ଚରିତ୍ର ସଂଗ୍ରହ କରି ଆଖ୍ୟାୟିକା ସୃଷ୍ଟିହେଲା ।

**ଆଗମ** – ତନ୍ତ୍ରକୁ ଆଗମ ଓ ବେଦକୁ ନିଗମ କୁହାଯାଏ । ବୈଶେଷିକ ଦର୍ଶନରେ ଈଶ୍ୱରଙ୍କ ଅସ୍ତିତ୍ୱ ସ୍ୱୀକାର କରିବାପାଇଁ ଶ୍ରବଣ, ମନନ ଓ ଭାବନା - ଏହି ତିନି ଉପାୟ ନିର୍ଣ୍ଣୟ କରାଯାଇଛି । ଏଥିରେ ଶ୍ରବଣ ଅର୍ଥ ଆପ୍ତବାକ୍ୟ ବା ଆଗମ । ମୋଟ ୨୮ଟି ଆଗମ ମଧ୍ୟରୁ ଦଶଟି ଆଗମ ଯଥା - କାମିକ, ଯୋଗଜ, ଚିନ୍ତ୍ୟ, କାରଣ, ଅଦିତ, ଦୀପ୍ତ, ସୂକ୍ଷ୍ମ, ସହସ୍ର, ଅଂଶୁମତ ଓ ସୁପ୍ରଭେଦ ପ୍ରଧାନ । ପ୍ରତ୍ୟେକ ଶୈବାଗମ ଚାରି ଭାଗରେ ବିଭକ୍ତ ଯଥା - ଚର୍ଯ୍ୟାପାଦ, କ୍ରିୟାପାଦ, ଯୋଗପାଦ, ଜ୍ଞାନପାଦ । କାମିତ, କାରଣ, ପ୍ରପଞ୍ଚ ଆଦି ଆଗମରେ ଯେଉଁସବୁ ମନ୍ତ୍ର ରହିଛି ସେଗୁଡ଼ିକ ତନ୍ତ୍ର । ଏହି ଆଗମ ପାଇଁ ୬ଟି କର୍ମ ହେଲା- ଶାନ୍ତି କର୍ମ, ବଶ୍ୟକର୍ମ, ସ୍ତମ୍ଭନ, ବିଦ୍ୱେଷ, ଉଚ୍ଚାଟନ ଓ ମାରଣ । ଏହାର

ସଫଳତା ପାଇଁ ଦଶଟି ସଂସ୍କାର ପ୍ରକ୍ରିୟା ମଧ୍ୟ କଥିତ ହୋଇଛି । ଯଥା- ଜନନ, ଜୀବନ, ପୀଡ଼ନ, ବୋଧନ, ଅଭିଷେକ, ବିମଳୀକରଣ, ଅପ୍ୟାୟତ, ତର୍ପଣ, ଦୀପନ ଓ ଗୋପନ ।

**ଆଙ୍ଗିକ** – ପ୍ରାଚୀନ ସାହିତ୍ୟ ତତ୍ତ୍ୱରେ ଅଭିନୟକୁ ଚାରି ଭାଗରେ ବିଭକ୍ତ କରାଯାଇ ନାଟକୀୟ କଥାବସ୍ତୁର ରମଣୀୟ ଉପସ୍ଥାପନାର ପରିକଳ୍ପନା କରାଯାଇଛି । ଯଥା - ଆଙ୍ଗିକ, ବାଚିକ, ଆହାର୍ଯ୍ୟ । ଆଙ୍ଗିକ ଅଭିନୟର ସମସ୍ତ ବିଭବ ଶରୀରର ବିଭିନ୍ନ ଅଙ୍ଗ ପ୍ରତ୍ୟଙ୍ଗର ଭାବାନୁସାରୀ ସଂଚାଳନ ଦ୍ୱାରା ପରିକଳ୍ପିତ ହୋଇଅଛି । ମୁଖ, ନେତ୍ର, ହସ୍ତ ଓ ପଦ ଚାଳନା ଏହାର ମୁଖ୍ୟ ସ୍ଥାନ ଗ୍ରହଣ କରିଥାଏ ।

**ଆଞ୍ଚଳିକତା** – ସାହିତ୍ୟରେ ଏକ ନିର୍ଦ୍ଦିଷ୍ଟ ଅଞ୍ଚଳର ଲୋକ ଚରିତ୍ର, ରୁଚି, ଜଳବାୟୁ, ଦୃଶ୍ୟ, ପ୍ରକୃତି, ଲୋକକଥା, ଭାଷା ଇତ୍ୟାଦିକୁ ରୂପାୟନ କଲେ, ତାହାଁ ଆଞ୍ଚଳିକତା ଉପରେ ପର୍ଯ୍ୟବସିତ ବୋଲି ଧରାଯାଏ । ଏହାଦ୍ୱାରା ସେହି ଅଞ୍ଚଳର ବୈଶିଷ୍ଟ୍ୟ ତଥା ତୁଳନାତ୍ମକ ଚିତ୍ର ମିଳିଥାଏ । ଏହା ଅନେକ ସମୟରେ ସୀମିତ ପରିସରର କଥା କହୁଥିଲେ ବି, ଏକ ସାମୂହିକ ସଂସ୍କୃତିକୁ ଦିଗଦର୍ଶନ ଦେବାରେ ସମର୍ଥ ହୋଇଥାଏ ।

**ଆତ୍ମଚରିତ** – ନିଜ ଦ୍ୱାରା ଲିଖିତ ଜୀବନୀ ଗ୍ରନ୍ଥ ହିଁ ଆତ୍ମଚରିତ ଭାବେ କଥିତ । ଏହା ଏକ ବର୍ଣ୍ଣନାତ୍ମକ ରଚନା । ଜୀବନୀ ଦୁଇ ପ୍ରକାର - ଆତ୍ମଜୀବନୀ ଓ ଜୀବନ ଚରିତ । ଆତ୍ମ ଜୀବନୀ କୁ ଲେଖକ ନିଜ କଥା ଭାବରେ ନିଜେ ଲେଖେ ଏବଂ ଜୀବନ ଚରିତ ରଚନାବେଳେ ଲେଖକ ଅନ୍ୟ ଗୋଟିଏ ଚରିତ୍ରର ଜୀବନୀ ରଚନା କରେ । ବିଶ୍ୱ ସାହିତ୍ୟ ତଥା ଓଡ଼ିଆ ସାହିତ୍ୟରେ ଆତ୍ମ ଚରିତ ରଚନା ସ୍ୱଳ୍ପ ହେଲେ ବି ଅତ୍ୟନ୍ତ ବଳିଷ୍ଠ ରଚନା ଭାବେ ପ୍ରତିଭାତ ।

**ଆତ୍ମନିବେଦନ** – ନବଧା ଭକ୍ତି ମଧ୍ୟରୁ ଅନ୍ତିମ ପର୍ଯ୍ୟାୟଟି ଆତ୍ମନିବେଦନ । ଯେତେବେଳେ ଭକ୍ତ ଭଗବାନଙ୍କର ରୂପ, ଗୁଣ ଓ ଲୀଳା ବିଳାସରେ ତନ୍ମୟ ହୋଇ ଦେହ, ମନ ପ୍ରଭୃତି ସହିତ ପ୍ରେମପୂର୍ଣ୍ଣ ଭାବରେ ଭଗବାନଙ୍କଠାରେ ସମର୍ପଣ କରିଦିଏ, ସେଠାରେ ଏ ଭକ୍ତି ପରିଲକ୍ଷିତ ହୁଏ । ଏହା ଏକ ଉତ୍ତରଣ ମାନସିକ ଅବସ୍ଥା । ଏ ସ୍ତରକୁ ଉଠିଲେ ମଣିଷର କ୍ଷୁଦ୍ର ବ୍ୟକ୍ତିଗତ ଓ ବୈଷୟିକ ଭାବନା ରହେନାହିଁ । ସବୁ ଭଗବାନଙ୍କ ଇଚ୍ଛା ସମ୍ଭୂତ ବୋଲି ଦୃଢ଼ ଧାରଣା ଜନ୍ମିଗଲେ ସୁଖ, ଦୁଃଖ ସମାନ ଲାଗେ । ଯାହାକି ଆତ୍ମନିବେଦନର ମୌଳିକ ଲକ୍ଷଣ ।

**ଆତ୍ମନିଷ୍ଠ କାବ୍ୟ** – କାବ୍ୟ ବସ୍ତୁତଃ ଦୁଇ ପ୍ରକାର । ଆତ୍ମନିଷ୍ଠ କାବ୍ୟ ଓ ନୈର୍ବ୍ୟକ୍ତିକ । କବିର ବ୍ୟକ୍ତିଗତ ଭାବକୁ ନେଇ ରଚିତ କାବ୍ୟକୁ ବ୍ୟକ୍ତିନିଷ୍ଠ କାବ୍ୟ କୁହାଯାଏ । ଏଥିରେ କବିର ଆତ୍ମ ସଚେତନତା ଅଧିକ ଲକ୍ଷଣୀୟ । ଆତ୍ମନିଷ୍ଠ କାବ୍ୟରୁ କବିର ବ୍ୟକ୍ତିତ୍ୱ ଓ

ତାର ପ୍ରଜ୍ଞାର ସୂଚନାମିଳେ । ଏଥିରେ ବସ୍ତୁର ବାସ୍ତବ ଚିତ୍ରଣ ନଥାଏ ଯଦି ବି ଥାଏ ତାହା କେବଳ ଆଧାର ହୋଇ ରହେ ।

**ଆତ୍ମପ୍ରକ୍ଷେପଣ** – ଆତ୍ମ ପ୍ରକ୍ଷେପଣ ଏକ ମାନସିକ କ୍ରିୟା । ମନୋବିଜ୍ଞାନ ଅନୁସାରେ ଯାହା ନିଜ ଜୀବନରେ ହୋଇପାରେ ନାହିଁ ତାହାକୁ ଅନ୍ୟଠାରେ ଅରୋପଣକରିବା । କଳାକାରମାନଙ୍କଠାରେ ଏହି ଆତ୍ମପ୍ରକ୍ଷେପଣ ଲକ୍ଷଣ ଅଧିକ ଦେଖାଯାଏ । ଏହାକୁ ଅଚେତନ ମାନସର ଆତ୍ମରକ୍ଷାର୍ଥକ କ୍ରିୟା ଭାବରେ ଗ୍ରହଣ କରାଯାଇପାରେ । ଏପରିକି ସେ ଚେତନମାନସରେ ସାମାଜିକ ଶୃଙ୍ଖଳା ଯୋଗୁଁ ଯାହାକୁ ଅସ୍ୱୀକାର କରେ ତାକୁ ଅନ୍ୟଠାରେ ଦେଖିବାକୁ ଭଲପାଏ । ବ୍ୟକ୍ତିର ଆଦର୍ଶ, ବିଚାର ଯାହାସବୁ ନିଜେ ଆଚରଣ କରିପାରେନାହିଁ ସେ ସବୁକୁ ଆଚରଣ କରିବାପାଇଁ ପରାମର୍ଶ ଦେଇଥାଏ ।

**ଆରଭଟୀ ବୃତ୍ତି** – ନାଟକର ଚାରିଗୋଟି ବୃତ୍ତି ମଧ୍ୟରୁ ଅନ୍ୟତମ । ଏହା ଆଙ୍ଗିକ ଅଭିନୟର ଅନ୍ତର୍ଗତ । ଯେତେବେଳେ ନଟକୁ କ୍ରୋଧ, ରୌଦ୍ର ଆଦି ଉଗ୍ର ଭାବମାନଙ୍କୁ ବ୍ୟକ୍ତ କରିବାକୁ ପଡ଼େ, ସେତେବେଳେ ସ୍ୱଭାବତଃ ତାଙ୍କର ଆଙ୍ଗିକ ଚେଷ୍ଟା ଉଗ୍ର ହୋଇଥାଏ । ଏହି ଉଗ୍ର ଆଙ୍ଗିକ ଚେଷ୍ଟା ବା ଅଭିନୟକୁ ଆରଭଟୀ ବୃତ୍ତି କୁହାଯାଏ ।

**ଆତ୍ମା** – ଆତ୍ମବାଦୀ ଦର୍ଶନର ଏହା ଏକ ସିଦ୍ଧାନ୍ତ । ଆତ୍ମ ପଦ ଅତ୍ ଧାତୁ (ସଦା ଚଳନଶୀଳ), ଅପ୍ ଧାତୁ(ବ୍ୟାପ୍ତହେବା) ରୁ ନିଷ୍ପନ୍ନ ଅର୍ଥାତ୍ ଯାହା ଜୀବରେ ଚଳନଶୀଳ ଓ ବ୍ୟାପ୍ତ ରହେ ତାହା 'ଆତ୍ମା'। ଭଗବତ୍ ଗୀତାରେ ଆତ୍ମା ଅବିନଶ୍ୱର, ଚିରନ୍ତନ ସତ୍ୟ । ଅଲଂଘ୍ୟ, ଅକାଟ୍ୟ, ଅପରିବର୍ତ୍ତନୀୟ ଏବଂ ଅପୂରଣୀୟ । ଭାରତୀୟ ଉପନିଷେଦରେ ଆତ୍ମା ଓ ବ୍ରହ୍ମ ଏକ ଓ ଅଭିନ୍ନ ବୋଲି କୁହାଯାଇଛି । ଶଙ୍କର ଦର୍ଶନରେ ଆତ୍ମା ଦେହଠାରୁ ଭିନ୍ନ ଓ ବ୍ରହ୍ମଠାରୁ ଅଭିନ୍ନ । ବୁଦ୍ଧଦେବ ଓ ଚାର୍ବାକ୍ ଥିଲେ ଅନାତ୍ମାବାଦୀ । ଜୈନ ଦର୍ଶନରେ ଆତ୍ମା ଜୀବଠାରୁ ଭିନ୍ନ । ଭାରତୀୟ ଆତ୍ମାତତ୍ତ୍ୱ ନବ ପାଶ୍ଚାତ୍ୟ ଦର୍ଶନ ଓ ବିଜ୍ଞାନରେ ସ୍ୱୀକୃତ ନହେଲେ ବି ଭାରତୀୟ ବିଚାର ଧାରାରେ ଆତ୍ମାତତ୍ତ୍ୱ ସମସ୍ତ ଆଧାତ୍ମିକ ଦର୍ଶନର ମୂଳହେତୁ ରୂପେ ପ୍ରମାଣିତ ହୋଇଛି । ସାହିତ୍ୟ କ୍ଷେତ୍ରରେ ଏହାର ଉପଲବ୍ଧିର କ୍ଷେତ୍ର ଅତ୍ୟନ୍ତ ପ୍ରଶସ୍ତ ।

**ଆର୍ଥୀ ବ୍ୟଞ୍ଜନା** – ଶବ୍ଦ ଓ ଅର୍ଥର ବ୍ୟାପାର ବ୍ୟଞ୍ଜନାରେ ନିହିତ ଥାଏ । ଏଣୁ ବିଚାରର ସୁବିଧା ଦୃଷ୍ଟିରୁ ବ୍ୟଞ୍ଜନାକୁ ଶାବ୍ଦୀ ଓ ଆର୍ଥୀ ଭେଦରେ ଦୁଇ ପ୍ରକାର ଭାବରେ କଳ୍ପନା କରାଯାଇଛି । ଏହି ବ୍ୟଞ୍ଜନା ସ୍ଥଳରେ ଅର୍ଥର ପ୍ରାଧାନ୍ୟ ସ୍ୱୀକୃତ ହୋଇଥିବାରୁ ନିର୍ଦ୍ଦିଷ୍ଟ ବ୍ୟଞ୍ଜକ ଶବ୍ଦ ପ୍ରୟୋଗ କଲେ ମଧ୍ୟ, ବ୍ୟଙ୍ଗାର୍ଥର ଅବଗତିରେ କୌଣସି ଅସୁବିଧା ହୁଏନାହିଁ । ତେଣୁ ଯେଉଁ ଶବ୍ଦ ଶକ୍ତି ବକ୍ତା, ବୋଦ୍ଧବ୍ୟ, ବାକ୍ୟ, ବାଚ୍ୟ, ଦେଶ, କାଳ ଓ ଚେଷ୍ଟା ଆଦିର ବୈଶିଷ୍ଟ୍ୟ ଯୋଗୁଁ ବ୍ୟାଙ୍ଗାର୍ଥ ପ୍ରତୀତ କରାଏ, ତାହାକୁ ଆର୍ଥୀ ବ୍ୟଞ୍ଜନା କୁହାଯାଏ ।

**ଆଦର୍ଶ** – ଆଦର୍ଶର ଅର୍ଥ ଅନୁକରଣୀୟ ଦୃଷ୍ଟାନ୍ତ । କୌଣସି ବସ୍ତୁକୁ ଦେଖିବା ଓ ତା'ବିଷୟରେ ଧାରଣା ଆଣିବାରେ ଆଦର୍ଶର ତତ୍ତ୍ୱ ନିହିତ । ପ୍ରତିଟି ସୃଜନାତ୍ମକ କଳା, କବି ଚେତନାର ଆଦର୍ଶକୁ ନେଇ ରୂପାୟିତ ହୋଇଥାଏ । ସାହିତ୍ୟର ଆବଶ୍ୟକତା ଦୃଷ୍ଟିରୁ ତାର ଆଦର୍ଶ ହିଁ ପ୍ରଭାବିତ କରିଥାଏ । ବିଭିନ୍ନ ଯୁଗରେ ବିଭିନ୍ନ କାବ୍ୟାଦର୍ଶ ପରିଲକ୍ଷିତ ହୋଇଥାଏ । ଯୁଗୀୟ ପ୍ରଜ୍ଞା, ଯନ୍ତ୍ରଣା ତଥା ଚେତନା ନେଇ ସେହି ଯୁଗର କାବ୍ୟାଦର୍ଶ ପ୍ରତିଷ୍ଠା ଲାଭ କରିଥାଏ ।

**ଆଦର୍ଶ ବାଦ** – ଆଦର୍ଶ ବାଦ ଏକ ଦାର୍ଶନିକ ଚିନ୍ତାଧାରା ନୁହେଁ ବା ସାହିତ୍ୟିକ ଆନ୍ଦୋଳନ ନୁହେଁ । ଆଦର୍ଶ ଶବ୍ଦର ଆଭିଧାନିକ ଅର୍ଥ ହେଉଛି ''ଦର୍ପଣ, ମୁକୁର, ଦୃଷ୍ଟାନ୍ତ, ନମୁନା''। ଆଦର୍ଶ ଶବ୍ଦର ପ୍ରବକ୍ତାମାନେ କହନ୍ତି ଯେ ହିତ ସାଧନ କରିବା ଅର୍ଥାତ୍ ନୀତି ବାଦ ଓ ଆଦର୍ଶ ବାଦର ଉପସ୍ଥାପନ କରି ଜଗତ ଓ ଜୀବନର କଲ୍ୟାଣ ସାଧନ କରିବା ହେଉଛି ସାହିତ୍ୟର ମୌଳିକ ଗୁଣ । ସବୁ କାଳର ସାହିତ୍ୟରେ ଓ ସବୁ ଦେଶର ସାହିତ୍ୟରେ ଆଦର୍ଶ ବାଦ ରହିଛି ଓ ରହିବା ଆବଶ୍ୟକ। ସାହିତ୍ୟର ଆଦର୍ଶବାଦର ସଂଯୋଗ ଓ ସହଯୋଗ ଦ୍ୱାରା ସାମୂହିକ କଲ୍ୟାଣ ସାଧିତ ହୋଇଥାଏ ।

**ଆଦର୍ଶୀକରଣ** – ଯାହା ଅଛି ତାହା ଯଦି ବାସ୍ତବ, ତେବେ ଯାହା ହେବ ତାହାହିଁ ଆଦର୍ଶ । ପ୍ରଗତି ପାଇଁ ଏହି ଆଦର୍ଶ ହିଁ ଆତ୍ମୀକରଣ ହୋଇଥାଏ । ଯାହାହେବ ତାହା ତା'ର କଳ୍ପଲୋକ ଏବଂ କଳ୍ପନାକରିବା ତା'ର ସ୍ୱାଭାବିକ ପ୍ରବୃତ୍ତି । ସେହି ପ୍ରବୃତ୍ତିର ନାମ ଆଦର୍ଶୀକରଣ । ଜଣେ ସ୍ୱଭାବସିଦ୍ଧ କଳାକାରଠାରୁ ଜଣେ ପ୍ରଚେଷ୍ଟୋଗତ କଳାକାର ନ୍ୟୁନ ହୋଇପାରେନା । ସାହିତ୍ୟିକର ଆଦର୍ଶୀକରଣ ତା'ର ଶୈଳୀର ରୂପାନ୍ତର ମାତ୍ର ।

**ଆଦିକବି** – ପ୍ରଥମ କବି । ଶୁଦ୍ରମୁନି ସାରଳା ଦାସଙ୍କୁ ଓଡ଼ିଶାର ଆଦିକବି କୁହାଯାଏ । ଓଡ଼ିଆ ଲିଖିତ ସାହିତ୍ୟର ଏକ ପରିପୂର୍ଣ୍ଣ ରୂପ ଆରମ୍ଭ ଘଟିଛି ପଞ୍ଚଦଶ ଶତାବ୍ଦୀର ଯେଉଁ ସମୟସୀମା ମଧ୍ୟରେ ସାରଳା ଦାସ ଏକମାତ୍ର ଜ୍ଞାତ ଓ ପ୍ରତିଭାବାନ କବି । ଭାରତର ବିଶିଷ୍ଟ ପ୍ରତିଭାବାନ୍ ପ୍ରାଚୀନ କବିମାନଙ୍କ ମଧ୍ୟରେ ସେ ଅନ୍ୟତମ ଥିଲେ । ସେ ସଂସ୍କୃତ ସାହିତ୍ୟର ଆଦିକବି ବ୍ୟାସଙ୍କ ଅନୁସରଣରେ ଓଡ଼ିଆ ଭାଷାରେ ମହାଭାରତ ଅପୂର୍ବ ମୌଳିକତାର ସହିତ ରଚନା କରିଥିବାରୁ ସେ ଉତ୍କଳର ଆଦିକବି ଭାବେ ପରିଚିତ । ତାଙ୍କର ରଚନାବଳୀ ପାଞ୍ଚ ଶତ ବର୍ଷରୁ ଅଧିକ କାଳ ଧରି ସବୁ ଶ୍ରେଣୀର ଓଡ଼ିଆ ସାହିତ୍ୟ-ଶିଳ୍ପୀମାନଙ୍କୁ ପ୍ରଭାବିତ କରିଆସୁଥିବାରୁ ସେ ଯଥାର୍ଥରେ ଓଡ଼ିଆ କବିକୂଳର ଆଦିଗୁରୁ ।

**ଆଦିବାସୀ** – ନୃତତ୍ତ୍ୱ ବିଜ୍ଞାନ ଭାଷାକୋଷ ଅନୁସାରେ ''ଆଦିବାସୀ'' ଶବ୍ଦର ଅର୍ଥ ହେଲା ''ଏକାଦିକ୍ରମେ ଏକ ଭାଷା, ଏକ ସଂସ୍କୃତି ଓ ଏକ ସାମାଜିକ ଜୀବନର ମୂଳଦୁଆ

ଉପରେ ପ୍ରତିଷ୍ଠିତ ଏକ ସାମାଜିକ ଗୋଷ୍ଠୀ''। ଆର୍ଯ୍ୟ ଓ ଦ୍ରାବିଡ଼ ମାନଙ୍କ ପୂର୍ବରୁ ଏମାନଙ୍କର ସ୍ଥିତି ରହିଥିବାର ଜଣାପଡ଼େ । ବଣ ଜଙ୍ଗଲରେ ବାସ କରୁଥିବା ଆଦିମ ଅଧିବାସୀମାନଙ୍କୁ 'ଆଦିବାସୀ' କୁହାଯାଏ । ଓଡ଼ିଶାରେ ୬୨ ପ୍ରକାର ଆଦିବାସୀ ବଣରେ ବାସ କରୁଥିଲେ ହେଁ ଏମାନଙ୍କ ଭାଷା ବର୍ତ୍ତମାନ କଥିତ ରୂପରେ ରହିଛି । ସଂପ୍ରତି ଆଞ୍ଚଳିକ ଲିପିର ଉଦ୍ଭାବନ ଆଦିବାସୀ ଭାଷାର ଲିପି ଭାବରେ କଥିତ ହେଉଥିଲେ ବି ସବୁ ଆଦିବାସୀଙ୍କ ଦ୍ୱାରା ସ୍ୱୀକୃତ ବୋଲି କୁହାଯାଇ ନପାରେ । ଆଦିବାସୀ ସଂସ୍କୃତି, ସଂଗୀତ, ନୃତ୍ୟ ସେମାନଙ୍କ ଆବେଗ ଓ ଦୃଷ୍ଟିକୋଣ ଆଦିବାସୀ ସାହିତ୍ୟର ଅନ୍ତର୍ଭୁକ୍ତ ।

ଆଦିରସ – ଶୃଙ୍ଗାର ରସକୁ ଆଦିରସ କୁହାଯାଏ । ଶୃଙ୍ଗରୁ ପ୍ରାପ୍ତି ଶୃଙ୍ଗାର । ଆଦିରସ ମୁଖ୍ୟ ଭାବର ଉଦ୍ରେକ ହେତୁ ନାୟକ ଓ ନାୟିକାଙ୍କ ହୃଦୟରେ ପରସ୍ପର ପ୍ରତି ଯେଉଁ ଏକ ଅପୂର୍ବ ଅନୁରାଗ ଜନ୍ମି ସ୍ଥାୟୀ ହୁଏ ତାହାକୁ ଆଦିରସ କହନ୍ତି । ଏଥିରେ ନାୟକ ନାୟିକା ଆଲମ୍ବନ ବିଭାବ, ରମଣୀୟ ଦୃଶ୍ୟ, ପୁଲକିତ ଗୀତ, ବାଦ୍ୟ ଆଦି ଏହାର ଭାବ ଉଦ୍ଦୀପକ । ସମୁଧୁର ଭାବଭଙ୍ଗୀ ଏବଂ ଭ୍ରୂଲତା ଆଦିର ସୁଲଳିତ କୁଟିଳତା ଓ ଘୃଣା ଏହି ଚାରୋଟି ଛଡ଼ା ଅନ୍ୟାନ୍ୟ ସଂଚାରୀ ଭାବ ଏଥିରେ ଥାଏ । ଆଦିରସ ପୁଣି ଦୁଇ ଭାଗରେ ବିଭକ୍ତି । ଯଥା - ବିପ୍ରଲମ୍ଭ ଶୃଙ୍ଗାର ଓ ସମ୍ଭୋଗ ଶୃଙ୍ଗାର । ବିପ୍ରଲମ୍ଭ ଶୃଙ୍ଗାର ଚାରିଭାଗରେ ବିଭକ୍ତ । ଯଥା - ବିରାଗ, ମାନ, ପ୍ରବାସ, କରୁଣ । ସ୍ତ୍ରୀ ଓ ପୁରୁଷର ମିଳନର ପ୍ରଧାନ କାରଣ ହିଁ ଆଦିରସ । ଦୁହିଁଙ୍କର ମିଳନରେ ମନୁଷ୍ୟର ଶକ୍ତି ସଂଚାର ହୋଇଥାଏ । ମିଳନ ବିନା ଜୀବନ ନିଷ୍ଫଳ ପ୍ରତୀତ ହୁଏ । ତେଣୁ ଆଦିରସ ସର୍ବପ୍ରଧାନ ରସ ରୂପେ କୁହାଯାଏ ।

ଆଦିମଅନୁଭାବ – ଏହା ଅଳଙ୍କାର ଶାସ୍ତ୍ରରେ ଭାବବ୍ୟଞ୍ଜକ ରସ ନିଷ୍ପତ୍ତିକୁ ବୁଝାଏ । ଆଲମ୍ବନ, ଉଦ୍ଦୀପନ ଆଦି କାରଣରୁ ଉତ୍ପନ୍ନ ଭାବ ବାହାରେ ପ୍ରକାଶ ପାଇଲେ ଅନୁଭାବ ହୁଏ । ବିଭିନ୍ନ ରସର ଅନୁଭାବ ମଧ୍ୟ ବିଭିନ୍ନ । ଅନୁଭାବ ପାଞ୍ଚଟି ପର୍ଯ୍ୟାୟର ଯଥା– କାୟିକ, ମାନସିକ, ଆହାର୍ଯ୍ୟ, ବାଚିକ ଓ ସାତ୍ତ୍ୱିକ । ଅନୁଭାବର କାର୍ଯ୍ୟ ହେଉଛି ଅନୁଭବ କରାଇବା । ତେଣୁ ଭାବମାନଙ୍କର ଜ୍ଞାପକ ହେଉଛି ଅନୁଭାବ । ଏମାନେ ରସର ସ୍ଥାୟୀଭାବକୁ ଅନୁଭବ କରନ୍ତି ।

ଆଦିମ ପ୍ରବୃତ୍ତି – ମଣିଷର ମୌଳିକ ସ୍ୱଭାବକୁ ଆଦିମ ପ୍ରବୃତ୍ତି କୁହାଯାଏ । ମନୋବିଜ୍ଞାନ ଅନୁଯାୟୀ ମଣିଷର ସମସ୍ତ କାର୍ଯ୍ୟକଳାପ ଓ ପରିଣତିର ମୂଳ ଉତ୍ସ । କଳାକାର ହେବା, ଚୋରହେବା, ରାଜନୀତିକ ନେତା ହେବା, ବୈଜ୍ଞାନିକ ହେବା ଆଦିମ ପ୍ରବୃତ୍ତିର ପରିଣାମ । ପାଶବିକତା ପ୍ରଭୃତି କେତେକ ପ୍ରବୃତ୍ତି ମଣିଷ ଓ ମଣିଷେତର ପ୍ରାଣୀଠାରେ ସମାନ । ମନୋବିଜ୍ଞାନରେ ଏହା Anima & Animus, ଯେଉଁଥିରୁ Animal ଶବ୍ଦର ନିଗୂଢ଼

ସଂପର୍କ ରହିଛି ଓ ଏହାର ଏହି Animal ରୁ Anima & Animus ତତ୍ତ୍ୱ ଗୃହୀତ ହୋଇଛି । ସାହିତ୍ୟିକ ସବୁବେଳେ ମଣିଷର ଏହି ଆଦିମ ପ୍ରବୃତ୍ତିର ଅନ୍ୱେଷକ ସାଜିଥାଏ । ମନୋବୈଜ୍ଞାନିକ ଫ୍ରଏଡ଼ଙ୍କ ମତରେ ଆଦିମ ପ୍ରବୃତ୍ତିର ସଂଖ୍ୟା ୧, ୟୁଙ୍ଗଙ୍କ ମତରେ ୩୨, ମାକ୍‌ଡ଼ଗୁଲ ରଖିଲେ ୧୪ । ଏହିପରି ଆଦିମ ପ୍ରବୃତ୍ତିର ସଂଖ୍ୟା ୧୦୦ ପର୍ଯ୍ୟନ୍ତ ହୋଇଛି । ମନୋବୈଜ୍ଞାନିକ ମାକଡ୍ରଗଲଙ୍କ ଆବିଷ୍କାର ଗ୍ରହଣୀୟ । ତାଙ୍କଦ୍ୱାରା ପ୍ରଦତ୍ତ ଆଦିମ ପ୍ରବୃତ୍ତି ଓ ସଂବେଗ ୧୪ ପ୍ରକାର ଯଥା - ୧- ଯୁସୁତସା - କ୍ରୋଧ, ୨- ପ୍ରତିକୂଳତା - ଯୁଗୁପ୍‌ସା, ୩ - ଜିଜ୍ଞାସା - ଆଶ୍ଚର୍ଯ୍ୟ, ୪ - ଦୈନ୍ୟ - ଆତ୍ମହୀନତା, ୫ - ଆହାର - କ୍ଷୁଧା, ୬ - ଯୌନତା - କାମୁକତା, ୭ - ବଂଶବୃଦ୍ଧି - ବାତ୍ସଲ୍ୟ, ୮ - ସଂଘ - ଏକାଠିହେବା, ୯ - ପଳାୟନ - ଭୟ, ୧୦ - ଶରଣ - କାତରତା, ୧୧ - ଆତ୍ମ ପ୍ରଦର୍ଶନ - ଗୌରବ, ୧୨ - ସର୍ଜନା - ରଚନାତ୍ମକ ଆନନ୍ଦ ୧୩ - ପରିଗ୍ରହ - ପ୍ରଭୁତ୍ୱ, ୧୪ - ହାସ୍ୟ - ଆମୋଦ ।

**ଆନନ୍ଦ ବାଦ** – ଆନନ୍ଦ ପରମବ୍ରହ୍ମ ସ୍ୱରୂପ । ଏହା ରସମୟ ଯାହାକୁ ଆସ୍ୱାଦନ କରି ଜୀବ ଆନନ୍ଦ ପାଇଥାଏ । ବୃହଦାରଣ୍ୟକରେ କୁହାଯାଇଚି ଯେ ଏହି ଆନନ୍ଦର ଅଂଶମାତ୍ରକ ଆଶ୍ରୟରେ ସବୁପ୍ରାଣୀ ଜୀବିତ ରହନ୍ତି । ତୈତରୀୟ ଉପନିଷଦରେ ଆନନ୍ଦକୁ ଜଗତର ସ୍ଥିତି ର କାରଣ, ଆଧାର ଓ ଲୟ ବୋଲି କୁହାଯାଇଛି । ଶୈବବାଦରେ ଆନନ୍ଦବାଦର ବ୍ୟାଖ୍ୟା ରହିଛି । ଏଥିରେ ସତ୍, ଚିତ୍ କୁ ଗୌଣ ତଥା ଅନନ୍ଦକୁ ମୂଳ ପଦାର୍ଥ ବୋଲି ଗ୍ରହଣ କରାଯାଇଛି । ସାହିତ୍ୟରେ ଆନନ୍ଦକୁ ପ୍ରାପ୍ତ କରିବାର ଦୁଇଟି ଇଚ୍ଛାରୁ ଏହି ମତବାଦ ଜନ୍ମ ଲାଭ କରିଛି । କାବ୍ୟାନନ୍ଦ ଏବଂ ବ୍ରହ୍ମାନନ୍ଦର ଅଭେଦ କଳ୍ପନା କରାଯାଇଛି । ସନ୍ଥ ସାହିତ୍ୟ, ଭକ୍ତି ସାହିତ୍ୟ ଏହି ଆନନ୍ଦ ବାଦର ଅନ୍ତର୍ଭୁକ୍ତ ।

**ଆଧିଦୈବିକ** – ଦୈବ ଜାତ ବଜ୍ରପାତାଦି ଦୁଃଖ ଆଦି ଆଧିଦୈବିକ ର ଅନ୍ତର୍ଭୁକ୍ତ । ପୁରାଣ ସାହିତ୍ୟ କିମ୍ବା ଧର୍ମ ଶାସ୍ତ୍ରରେ ଦେବତାମାନଙ୍କ ବରପ୍ରଦାନ, ଅଭିଶାପ, ଆଶୀର୍ବାଦ, ତଥା ଅଲୌକିକ କାର୍ଯ୍ୟକଳାପ ଆଧିଦୈବିକ ଘଟଣା ସମୂହ ବୋଲି କଥିତ ।

**ଆଧିଭୌତିକ** – ଅଧିଭୂତ ର ଇକ ପ୍ରତ୍ୟୟ । ପ୍ରାଣୀଠାରୁ ଜାତ ଅଥଚ ଏକ ଉତ୍ତରଚେତନା ନେଇ ଆରୋପିତ ତତ୍ତ୍ୱ ହିଁ ସାହିତ୍ୟରେ ଆଧିଭୌତିକ ଚେତନାକୁ ସୂଚାଇଥାଏ । ଜଡ଼ ଦେହରେ ଜଡ଼ୋତ୍ତର ସତ୍ତା, ଧୂଳିରେ ଧରିତ୍ରୀର ରୂପ ଦର୍ଶନ ଇତ୍ୟାଦି ଆଧିଭୌତିକ ଚିନ୍ତାଧାରାର ନିଦର୍ଶନ ।

**ଆଧ୍ୟାତ୍ମିକ** – ଯେଉଁ ଭାବ ଓ ଦର୍ଶନ ମଣିଷକୁ କାରଣମୁଖୀ କରାଏ, ତାହା ଆଧ୍ୟାତ୍ମିକତା । ସାହିତ୍ୟରେ ଈଶ୍ୱରପରାୟଣତା, ବ୍ରହ୍ମଦର୍ଶନ, ଶୂନ୍ୟଦର୍ଶନ, ବିଭୁଚେତନା ଇତ୍ୟାଦି ଆଧ୍ୟାତ୍ମିକତାର ଅନ୍ତର୍ଭୁକ୍ତ ।

**ଆଧୁନିକତା** – ପ୍ରଚଳିତ ସମୟ ଅର୍ଥରେ ଆଧୁନିକର ଅର୍ଥ ହୁଏ ଆଜିକାଲି । ଆଧୁନିକ ଶବ୍ଦଟି 'ଅଧୁନା' ଶବ୍ଦର 'ଇକ' ପ୍ରତ୍ୟୟ । ଆଭିଧାନିକ ଅର୍ଥରେ ନୂତନ, ନବ୍ୟ । ସମୟବୋଧକ ପ୍ରତିଟି ବର୍ତ୍ତମାନ ହିଁ ଅଧୁନା ଏବଂ ଏହାର ବର୍ତ୍ତମାନତା ହିଁ ଆଧୁନିକତା । ଏହା କାଳବାଚକ ଅପେକ୍ଷା ଚେତନାଗତ ସ୍ୱତନ୍ତ୍ରତା କୁ ସୂଚାଇଥାଏ । ଏହା ନୂତନର ନୂତନତ୍ୱ । ଶାଶ୍ୱତ ଓ ସୃଜନଶୀଳ ଅବବୋଧ ନେଇ ମନୁଷ୍ୟ ଯେଉଁ ଭାବଗତ ଅସ୍ତିତ୍ୱ ରେ ପ୍ରଗତିଶୀଳ ଏବଂ ନବୀନ, ଆଧୁନିକତା ତା'ର ନିର୍ଯ୍ୟାସ ମାତ୍ର ।

**ଆଧୁନିକ ଯୁଗ** - ଓଡ଼ିଆ ସାହିତ୍ୟରେ ଯୁଗ ବିଭାଗ ଦୃଷ୍ଟିରୁ ଅଷ୍ଟାଦଶ ଶତାବ୍ଦୀର ପ୍ରଥମ ଦଶକରୁ ଏପର୍ଯ୍ୟନ୍ତ କୁ ଆଧୁନିକ ଯୁଗ କୁହାଯାଇଛି । ପାଶ୍ଚାତ୍ୟଶିକ୍ଷା ଓ ସଭ୍ୟତା ସଂପର୍କରୁ ଓଡିଆ ସାହିତ୍ୟରେ ଆଧୁନିକତାର ଅଭ୍ୟୁଦୟ ଘଟିଥିଲା । ଖ୍ରୀ. ୧୮୦୩ରେ ଓଡ଼ିଶା ଇଂରେଜ ଅଧୀନକୁ ଆସିଲା ଏବଂ ୧୮୦୩ ରୁ ପ୍ରାୟ ୧୮୭୦ ପର୍ଯ୍ୟନ୍ତ ସମାଜ ଧାରଣା, ସଭ୍ୟତା ଓ ସଂସ୍କୃତି, ଭାଷାଗତ ଚେତନାର ସଂଘର୍ଷ ଜାରିରହି ଆଧୁନିକତାର ଉନ୍ମେଷ ଘଟାଇଥିଲା । କବିବର ରାଧାନାଥ ଓଡ଼ିଆ ସାହିତ୍ୟରେ ଆଧୁନିକ ଯୁଗର ପ୍ରବର୍ତ୍ତନ କରିଥିଲେ । ସାହିତ୍ୟର ଗତି, ପ୍ରକୃତି ଓ ବିଶେଷତା ଦିଗରୁ ବିଚାର କଲେ ଓଡ଼ିଆ ସାହିତ୍ୟର ଆଧୁନିକ ଯୁଗକୁ କେତୋଟି ଉପବିଭାଗରେ ଭାଗ କରାଯାଏ ଯଥା: (କ) ରାଧାନାଥ ଯୁଗ (ଖ) ସତ୍ୟବାଦୀ ଯୁଗ (ଗ) ସବୁଜ ଯୁଗ (ଘ) ପ୍ରଗତି ଯୁଗ (ଙ) ଅତ୍ୟାଧୁନିକ ଯୁଗ ।

ରାଧାନାଥ ଯୁଗ - କବିବର ରାଧାନାଥ, ଭକ୍ତକବି ମଧୁସୂଦନ, ସ୍ୱଭାବକବି ଗଙ୍ଗାଧର, ପଲ୍ଲୀକବି ନନ୍ଦକିଶୋର, ନାଟ୍ୟକାର ରାମଶଙ୍କର ରାୟ, ବ୍ୟାସକବି ଫକୀରମୋହନ ଇତ୍ୟାଦି ପ୍ରଧାନ ।

ସତ୍ୟବାଦୀ ଯୁଗ - ଉତ୍କଳଗୌରବ ମଧୁସୂଦନ ଦାସ, ଗୋପବନ୍ଧୁ , ପଣ୍ଡିତ ନିଳକଣ୍ଠ, ଆଚାର୍ଯ୍ୟ ହରିହର, ପଣ୍ଡିତ ଗୋଦାବରୀଶ ମିଶ୍ର, ମଧୁସୂଦନ ଦାସଙ୍କ କାବ୍ୟ ପ୍ରବୃତ୍ତିକୁ ନେଇ ନିରୂପିତ କରାଯାଇଛି । ଏମାନଙ୍କ ବ୍ୟତୀତ ଗୋଦାବରୀଶ ମହାପାତ୍ର ଇତ୍ୟାଦି ପ୍ରଧାନ ଥିଲେ ।

ସବୁଜ ଯୁଗ – ସବୁଜ ଗୋଷ୍ଠୀ ଅନ୍ନଦାଶଙ୍କର ରାୟ, ବୈକୁଣ୍ଠ ନାଥ ପଟ୍ଟନାୟକ, ଶରତଚନ୍ଦ୍ର ମୁଖାର୍ଜୀ ଏବଂ ପରେ ଯୋଗ ଦେଇଥିଲେ ହରିହର ମହାପାତ୍ର । ଏମାନଙ୍କ କାବ୍ୟ ପ୍ରବୃତ୍ତିକୁ ନେଇ ସବୁଜଯୁଗ ନିରୂପିତ । ନାଟ୍ୟକାର ବୈଷ୍ଣବ ପାଣି ମଧ୍ୟ ପ୍ରଧାନ ଥିଲେ ।

ପ୍ରଗତି ଯୁଗ - ସଚ୍ଚି ରାଉତରାୟ, ଅନନ୍ତ ପଟ୍ଟନାୟକ, ରାଧାମୋହନ ଗଡ଼ନାୟକ ଓ ମନମୋହନ ମିଶ୍ର ଇତ୍ୟାଦିଙ୍କ ବାମମାର୍ଗୀ କାବ୍ୟ ଦର୍ଶନକୁ ନେଇ ଏ ଯୁଗ ନିରୁପିତ ।

ଅତ୍ୟାଧୁନିକ ଯୁଗ - ସଚ୍ଚି ରାଉତରାୟ, ଗୁରୁ ମହାନ୍ତି, ଭାନୁଜି ରାଓ, ରମାକାନ୍ତ, ସୀତାକାନ୍ତ, ରାଜେନ୍ଦ୍ର, କମଳାକାନ୍ତ ଠାରୁ ଏପର୍ଯ୍ୟନ୍ତ ଏହା ପ୍ରଲମ୍ବିତ ।

**ଆବେଗ** – ଭାରତୀୟ ଅଳଙ୍କାର ଶାସ୍ତ୍ର ଅନୁସାରେ ଆବେଗ ବ୍ୟଭିଚାର ଭାବର ଅନ୍ତର୍ଗତ । 'ସାହିତ୍ୟ ଦର୍ପଣ'ରେ ଆନନ୍ଦ ଓ ଭୟର ବ୍ୟାକୁଳତା ହେଉଛି ଆବେଗ । ଇଂରାଜୀରେ ଏହାକୁ ଇମୋସନ୍ (Emotion) କୁହାଯାଏ । ସାହିତ୍ୟ ସୃଷ୍ଟିରେ ଆବେଗର ଭୂମିକା ଗୁରତ୍ୱପୂର୍ଣ୍ଣ । ଏହା feeling ଫିଲିଙ୍ଗର ପରବର୍ତ୍ତୀ ଅବସ୍ଥା । ଆବେଗର ଅର୍ଥ ଭାବର ପ୍ରାବଲ୍ୟ । କବି ୱାର୍ଡ୍‌ସ୍‌ୱର୍ଥଙ୍କ ମତରେ କବିତା ହେଉଛି ଭାବାବେଗର ସ୍ୱତଃସ୍ଫୁର୍ତ୍ତ ସ୍ଫୁରଣ ।

**ଆବେଶିକ କବି** – ମନ୍ତ୍ର ଓ ତନ୍ତ୍ର ସାଧନ ଦ୍ୱାରା ଯାହାଙ୍କର କବିତ୍ୱ ଶକ୍ତିର ସ୍ଫୁରଣ ହୋଇଥାଏ ସେମାନଙ୍କୁ ଆବେଶିକ କବି କୁହାଯାଏ ।

**ଆଭାସ** – ଇଂରାଜୀ ଇମ୍ପ୍ରେସନ୍ impression ଶବ୍ଦର ପ୍ରତିଶବ୍ଦ ଭାବେ ଓଡ଼ିଆ ଆଲୋଚନାରେ ଗୃହୀତ । ଏହାର ଅର୍ଥ ସୂଚନା, ସାଦୃଶ୍ୟ ଓ ଦୀପ୍ତ । ସାହିତ୍ୟରେ ଆଭାସ ପ୍ରତିବିମ୍ବ ଭଳି । ଅଭିନବ ଗୁପ୍ତଙ୍କ ମତରେ ଏହାର ଅର୍ଥ ଈଶ୍ୱର ନିଜର ଆତ୍ମା ଦର୍ପଣର ପ୍ରତିବିମ୍ବ ଭଳି ବସ୍ତୁଜଗତକୁ ପ୍ରକାଶିତ କରନ୍ତି । ବସ୍ତୁଜଗତ ଈଶ୍ୱରଙ୍କ ଆଭାସ । ସାହିତ୍ୟରେ 'ଆଭାସ' ମତବାଦ ସମାଲୋଚନାର ଏକ ଦୃଷ୍ଟିଭଙ୍ଗୀ ଭାବରେ ଆତ୍ମପ୍ରକାଶ କରିଥିଲା । ଏହି ମତବାଦରେ ସାହତ୍ୟିକମାନେ ସ୍ୱର ଉଠାଇଲେ ନୈତିକଭାବ ଓ ନାନ୍ଦନିକ ଭାବ ସଂପର୍କ ନିକଟତମ । ପ୍ରତ୍ୟେକ ସୁନ୍ଦର କଳାତ୍ମକ ସୃଷ୍ଟିରେ କଳାକାରର ମନର ଭାବ ମୁଦ୍ରାଙ୍କିତ ହୁଏ ଆଭାସ ଝରିଆରେ ।

**ଆଲୱାର** – ଦକ୍ଷିଣ ଭାରତର ପ୍ରାଚୀନ ବୈଷ୍ଣବ ସଂପ୍ରଦାୟ । ଭାରତରେ ବୈଷ୍ଣବ ଧର୍ମର ପ୍ରଚାରକଗଣ ମୁଖ୍ୟତଃ ଦକ୍ଷିଣ ଭାରତୀୟ । ସେମାନଙ୍କ ମୌଳିକ ପ୍ରେରଣାଦାୟକ ଦଳ ହିଁ ଆଲୱାର ସଂପ୍ରଦାୟ । ଏହି ସଂପ୍ରଦାୟ ଷଷ୍ଠ ସଂପ୍ରଦାୟରୁ ନବମ ଶତାବ୍ଦୀ ପର୍ଯ୍ୟନ୍ତ ବିକାଶ ଲାଭ କରିଥିଲା । ଆଲୱାରଙ୍କ ମଧ୍ୟରେ ପ୍ରମୁଖ ଆଚାର୍ଯ୍ୟ ଥିଲେ ନାଥମୁନି । ଏମାନଙ୍କ ଛଡ଼ା ଆଉ ୧୨ ଜଣ ପ୍ରସିଦ୍ଧ ଭକ୍ତକବି ଥିଲେ ଯଥା- ସରୋଯୋଗୀ, ଭୂତଯୋଗୀ, ଭ୍ରାନ୍ତଯୋଗୀ, ଭକ୍ତିସାର, ଶଠକୋପ, ମଧୁରକବି, କୁଳଶେଖର, ବିଷ୍ଣୁଚିର, ପୋତା, ଭକ୍ତାଘ୍ରି, ଯୋଗୀ ବାହନ ଓ ପରକାଳ । ଏମାନେ ଚାରି ହଜାର ଭକ୍ତି ସଂଗୀତ ରଚନା କରିଥିଲେ ।

**ଆଲୋଚକ** – କାବ୍ୟ କବିତାର ଦ୍ରଷ୍ଟା ଭାବରେ କାବ୍ୟଗତ ଗୁଣ, ଦୋଷ, ଉତ୍କର୍ଷ, ଅପକର୍ଷ ଇତ୍ୟାଦିକୁ ଆଲୋଚନା କରି ବିଶେଷତ୍ୱ ପ୍ରତିପାଦନ କରି କାବ୍ୟକୁ ଲୋକଲୋଚନକୁ ଯେ ଆକର୍ଷିତ କରିପାରେ, ସେ ଆଲୋଚକ । ଫଳତଃ ସାହିତ୍ୟର

ସୃଷ୍ଟି ବୈଶିଷ୍ଟ୍ୟ ଓ ପ୍ରାଣ ପ୍ରାଚୁର୍ଯ୍ୟର ସଂଯତ, ନିରପେକ୍ଷ ତଥା ନିର୍ଭିକ ସମୀକ୍ଷକ ହିଁ ଶ୍ରେଷ୍ଠ ସମାଲୋଚକ । ଅତଏବ ନିରୀକ୍ଷାରେ ନିରପେକ୍ଷତା, ଚିନ୍ତାରେ ଉଦାର, ସମାଲୋଚନାରେ ସହାନୁଭୂତିଶୀଳ ହିଁ ଆଲୋଚକର ପ୍ରଧାନ ଗୁଣ ।

**ଆରଣ୍ୟକ** – ପ୍ରାଚୀନ ଭାରତରେ ଯେଉଁମାନେ ବାନପ୍ରସ୍ଥରେ ରହୁଥିଲେ ସେମାନଙ୍କ ପାଇଁ ଉଦ୍ଦିଷ୍ଟ ଆଶ୍ରମର ନୀତିର ଆଧ୍ୟାତ୍ମିକ ସମ୍ବଳିତ ଗ୍ରନ୍ଥକୁ ଆରଣ୍ୟକ କୁହାଯାଏ । ବିଭିନ୍ନ ବେଦାଶ୍ରୟୀମାନଙ୍କ ପାଇଁ ବିଭିନ୍ନ ଆରଣ୍ୟକ ଅଛି । ଯଜ୍ଞ, ମହାବ୍ରତ, ହୋତ୍ରାଦିର ତତ୍ତ୍ୱ ଆରଣ୍ୟକରେ ମିଳେ । ତେଣୁ ଆରଣ୍ୟକକୁ ଯଜ୍ଞ ରହସ୍ୟ ଗ୍ରନ୍ଥ ମଧ କୁହାଯାଏ । ପ୍ରାଣ ବିଷୟକ ଆଲୋଚନା ଆରଣ୍ୟକର ଅନ୍ୟ ଏକ ଦିଗ । ବିଭିନ୍ନ ଆରଣ୍ୟକ ଭିତରୁ ଐତିରେୟ ଆରଣ୍ୟକ, ବୃହଦାରଣ୍ୟକ, ଶାଙ୍ଖାୟନ ଆରଣ୍ୟକ, ତୈତ୍ତିରୀୟ ଆରଣ୍ୟକର ପରବର୍ତ୍ତୀ ଉପନିଷଦ ଗୁଡ଼ିକ ସାହିତ୍ୟର ଅନ୍ତର୍ଭୁକ୍ତ ହୋଇଛି ।

**ଆୟାମ** – ଇଂରାଜୀ ଡାଇମେନ୍‌ସନ dimension ର ପ୍ରତିଶବ୍ଦ । ବସ୍ତୁର ଆୟମ ଥିଲା ଦୀର୍ଘ, ପ୍ରସ୍ଥ, ବେଧ । ବସ୍ତୁର ଆୟାମ ସମ୍ବନ୍ଧୀୟ ପାରଂପରିକ ଧାରଣା ଆଇନ୍‌ଷ୍ଟାଇନ୍‌ ଚତୁର୍ଥ ଆୟାମ ଆବିଷ୍କାରଠାରୁ ବଦଳିଗଲା । ସେ ଆବିଷ୍କାର କଲେ ସ୍ଥାନ-କାଳ (space-time continuum) ସୂତ୍ର । ସ୍ଥାନ-କାଳ ଉପରେ ବସ୍ତୁର ସ୍ୱରୂପ ନିର୍ଭରକରେ । ଆଇନଷ୍ଟାଇନଙ୍କ photoelectric law ପ୍ରକାଶିତ ହେବାପରେ ଚଳଚିତ୍ର, କାବ୍ୟକଳା ଆଦିର ପାରଂପରିକ ରୀତିରେ ପରିବର୍ତ୍ତନ ଆସିଯାଇଛି । କାବ୍ୟ କବିତାରେ ଭାବପ୍ରବଣତା ପ୍ରଥମ ଆୟମ, ବିଚାର ଦ୍ୱିତୀୟ ଆୟମ ଓ ବସ୍ତୁ ନିର୍ମାଣ କ୍ଷମତା ତୃତୀୟ ଆୟମ ବୋଲି ବିଚାର କରାଯାଏ ।

**ଆୟୁର୍ବେଦ** – ଏହା ବୈଦିକ ସାହିତ୍ୟର ଅନ୍ତର୍ଭୁକ୍ତ । ଚରଣ ବ୍ୟୁହଙ୍କ ଅନୁସାରେ ଏହା ଋଗ୍‌ ବେଦର ଉପବେଦ ଅଟେ । ଶୁଶ୍ରୁତଙ୍କ ଆୟୁର୍ବେଦ ଗ୍ରନ୍ଥ ଅନୁସାରେ ଏହା ଅର୍ଥବ ବେଦର ଉପବେଦ । ମହର୍ଷି ଶୁଶ୍ରୁତଙ୍କ ମତରେ ଯହିଁରେ ବା ଯାହାଦ୍ୱାରା ଆୟୁମିଳେ, ତାହାକୁ ଆୟୁର୍ବେଦ କହନ୍ତି । ଆୟୁର୍ବେଦ ଆଠ ଭାଗରେ ବିଭକ୍ତ । ପ୍ରତ୍ୟେକ ତନ୍ତ୍ର ନାମରେ ପରିଚିତ । ଯଥା - ଶଲ୍ୟ ତନ୍ତ୍ର, ୨- ଶାଲ୍ୟକ୍ୟ ତନ୍ତ୍ର, ୩- କାୟଚିକି ତନ୍ତ୍ର, ୪- ଭୂତବିଦ୍ୟା ତନ୍ତ୍ର, ୫- କୌମାର ଭୃତ୍ୟ ତନ୍ତ୍ର, ୬- ଅଂଗ ତନ୍ତ୍ର, ୭- ବାଜୀକରଣ ତନ୍ତ୍ର ।

**ଆହାର୍ଯ୍ୟ** – ଅଭିନୟର ସ୍ୱାଭାବିକତା ଆନୟନ ପାଇଁ ବାହ୍ୟ ଉପକରଣ ମାନଙ୍କ ଅବଦାନରେ ଯେଉଁ ଅଭିନୟ ସମ୍ପାଦିତ ହୁଏ । ତାହାର ନାମ ଆହାର୍ଯ୍ୟ ବା ଆହାର୍ଯ୍ୟ ଅଭିନୟ । ବାଚିକ ଓ ଆଙ୍ଗିକ ଅଭିନୟକୁ ମହିମାମଣ୍ଡିତ କରିବାରେ ଆହାର୍ଯ୍ୟ ଅଭିନୟ ଅନ୍ତର୍ଗତ ବେଶଭୂଷାର ଅବଦାନ ଅତ୍ୟନ୍ତ ଗୁରୁତ୍ୱ ପୂର୍ଣ୍ଣ ।

**ଆସତ୍ତି** – ଏହା ଶବ୍ଦ, ପଦ ଓ ବାକ୍ୟର ସୀମିତ ରୂପ । ଆକାଂକ୍ଷା, ଯୋଗ୍ୟତା, ଆସତ୍ତିଯୁକ୍ତ ହେଲେ ଏହିପରି ପଦ ସମୂହକୁ ବାକ୍ୟ କୁହାଯାଏ । ବାକ୍ୟରେ ବ୍ୟବହୃତ ପଦମାନଙ୍କର ପରସ୍ପର ଅର୍ଥଗତ ସମ୍ବନ୍ଧ ସ୍ଥାପିତ ହୋଇ ନପାରିଲେ ତାହା ବାକ୍ୟ ହୋଇ ପାରିବ ନାହିଁ ଏବଂ ସେହିପରି ବ୍ୟବଧାନ ଅଧିକ ରଖି ଉଚ୍ଚାରିତ ହେଲେ ସେ ବାକ୍ୟ ହୋଇ ପାରେ ନାହିଁ ।

**ଆଷାଢ଼ଶୁକ୍ଳ** – ଏହା ଏକ ବୃତ୍ତ । ଏହି ବୃତ୍ତରେ ପ୍ରତ୍ୟେକ ପାଦରେ ଛଅଟି ପାଦ ଥାଏ । ସେମାନଙ୍କ ମଧ୍ୟରୁ କେବଳ ପଞ୍ଚମ ପାଦଟି ଛଅ ଅକ୍ଷର ବିଶିଷ୍ଟ ଓ ଅନ୍ୟଗୁଡ଼ିକ ଏଗାର ଅକ୍ଷର ବିଶିଷ୍ଟ । ପଞ୍ଚମ ପାଦର ତୃତୀୟ ଓ ଷଷ୍ଠ ଅକ୍ଷର ଉପରେ ଯତିପାତ ହୁଏ । ଅନ୍ୟ ପଦମାନଙ୍କରେ ପଞ୍ଚମ ଓ ଶେଷାକ୍ଷର ଉପରେ ଯତିପାଦ ହୁଏ । ଏହାର ପ୍ରଥମ ଦୁଇପାଦର ଶେଷାକ୍ଷର, ଦ୍ୱିତୀୟ ଦୁଇପାଦର ଶେଷାକ୍ଷରର ପରସ୍ପର ମେଳଥାଏ ।

କାହାରି ବଦ'ନେ ନାହିଁ ପ୍ରସନ୍ନ'
        କାହାରି ନାହିଁ' ବିଷୟ ଦର୍ଶନ'
କହିବାକୁ ଶକ୍ୟ'ନାହିଁ କାହାର'
        କାହିଁକି ଥିବ' ଆହାର ବିହାର'
        କେବଳ' ବିରସ'
କରିଛି ସବୁ ହୃଦୟରେ ବାସ'।

**ଆକ୍ଷେପ** – ବକ୍ତବ୍ୟ ପ୍ରକାଶକରିସାରି ନିଷେଧାର୍ଥକ ଶବ୍ଦ ପ୍ରୟୋଗ ଦ୍ୱାରା ଯେଉଁଠି ବକ୍ତବ୍ୟକୁ ଆହୁରି ତୀବ୍ର ଭାବରେ ପ୍ରକାଶ କରିବାପାଇଁ କୌଶଳ ଅବଲମ୍ବନ କରାଯାଏ, ସେଠାରେ ଆକ୍ଷେପ ଅଳଙ୍କାର ହୁଏ । ଉଦାହରଣ –

''ତୁମ ବିରହରେ ବେଦନା ଜ୍ୱାଳାରେ
        ଜଳିବାକୁ ହେବ ମତେ
ଭାବନି ସେ କଥା, ଯାଅ ପ୍ରିୟତମ
        ଯାଅ ତୁମ୍ଭ ନିଜପଥେ'' ।

## ଇ

**ଇଡ଼ାପିଙ୍ଗଳା** – ଓଡ଼ିଆ ସନ୍ଥ ସାହିତ୍ୟରେ ଇଅଁଳା ପିଅଁଳା ନାଡ଼ି ଭାବରେ କଥିତ । ସୁଷୁମ୍ନା ନାଡ଼ିର ଦୁଇପାଖରେ ଅର୍ଥାତ୍ ବାମ ପାଖରେ ଇଡ଼ା ଓ ଡାହାଣ ପାଖରେ ପିଅଁଳା ନାଡ଼ି ରହିଛି । ସନ୍ଥ ସାହିତ୍ୟରେ ଏହା ଚନ୍ଦ୍ର, ସୂର୍ଯ୍ୟ, ଗଙ୍ଗା, ଯମୁନା ରୂପରେ ଗୂଢ଼ାର୍ଥବୋଧକ । ବୌଦ୍ଧଗାନ ଦୋହାରେ ଏହା 'ଅମଣି ଚମଣି', 'ଆଳିକାଳି' ଭାବରେ କଥିତ ।

**ଇତିବୃତ୍ତି** – କୌଣସି ବିଷୟ ବା ପ୍ରସଙ୍ଗ ବା ଘଟଣାବଳୀର ଅତୀତ ତଥା ସମସ୍ତ ବିଷୟବସ୍ତୁର ବ୍ୟଖ୍ୟାନ ବା ବର୍ଣ୍ଣନାକୁ ଇତିବୃତ୍ତି କୁହାଯାଏ ।

**ଇନ୍ଦ୍ରିୟବାଦ** – ପାଶ୍ଚାତ୍ୟ ହେଡାନିଜିମ୍ ତତ୍ତ୍ୱରୁ ଆସିଛି । ଏହାକୁ କେହି କେହି ଇନ୍ଦ୍ରିୟଭୋଗବାଦ କିମ୍ବା ଇନ୍ଦ୍ରିୟସୁଖବାଦ ବୋଲି କହିଥାନ୍ତି । କେବେକେବେ ଏହାର ଦାର୍ଶନିକ ଅର୍ଥରେ ଇନ୍ଦ୍ରିୟାନୁବୋଧତା ଭାବରେ ପ୍ରଯୁକ୍ତ କରାଯାଏ । ସାହିତ୍ୟରେ ଯେବେ ଯେବେ ନିରୋଳା ଭୋଗବାଦ, ଇନ୍ଦ୍ରିୟ ସୁଖ ଅପେକ୍ଷା କଳ୍ପନା ଚିତ୍ର ପ୍ରତିମା ର କାବ୍ୟ କବିତାରେ ଅଧିକ ପ୍ରୟୋଗ ହୋଇଥାଏ । ଏହି ବାଦର ସାହିତ୍ୟରେ ଭୌତିକ ସୁଖ କିମ୍ବା ଇନ୍ଦ୍ରିୟ ସମ୍ବେଦନାର କଥା ବର୍ଣ୍ଣିତ ହୁଏ ।

**ଇହାମୃଗ** – ସଂସ୍କୃତ ସାହିତ୍ୟରେ ରୂପକର ଏକ ରୂପ ବିଶେଷ । ଏଥିରେ ମିଶ୍ରିତ କଥାବସ୍ତୁ, ଚାରିଅଙ୍କ, ଗର୍ଭ ଓ ବିମର୍ଶ ବ୍ୟତୀତ ତିନି ସନ୍ଧି, ଧୀରୋଦାତ୍ତ ନାୟକ, ଶୃଙ୍ଗାର ରସ ଓ ଧୀରୋଦ୍ଧତ ପ୍ରତିନାୟକର ଚିତ୍ରଣ ହୁଏ । ଏଥିରେ ବଳବତ୍ତର କାମିନୀ ଇଚ୍ଛା ରୂପାୟିତ ହୋଇଥାଏ ।

**ଈଶ୍ୱର ତତ୍ତ୍ୱ** – ସୃଷ୍ଟି ପାଇଁ ଶିବ ଓ ଶକ୍ତିଙ୍କ ଉତ୍ପନ୍ନ ଏହି ତତ୍ତ୍ୱର ମୂଳକଥା । ପରମଶିବ ନିର୍ଗୁଣ ଏବଂ ନିରଞ୍ଜନ । କିନ୍ତୁ ଏହାଙ୍କଠାରୁ ଉଦ୍ଭବ ଶିବ ସଗୁଣ ଓ ଉପାଧିଯୁକ୍ତ । ଶକ୍ତି ସୃଷ୍ଟିର ମୂଳକାରଣ । ଶକ୍ତିଦ୍ୱାରା ଜଗତର ଅଭିବ୍ୟକ୍ତି ସମୟରେ ଶିବଙ୍କର ଦୁଇଟି ରୂପ ପ୍ରକଟିତ ହୋଇଥାଏ ଯଥା ସଦାଶିବ ଓ ଈଶ୍ୱର । ଏହା ସୃଷ୍ଟିର ପ୍ରଥମ ଚାରି ତତ୍ତ୍ୱ ଅଟେ । ଏଥିରେ ସମ୍ଭୂତ ୩୨ଟି ତତ୍ତ୍ୱ ଏଥିରୁ ଜନ୍ମଲାଭ କରି ସୃଷ୍ଟିକୁ ବିକଶିତ କରିଛନ୍ତି ।

ଅନ୍ୟ ଏକ ମତରେ ଈଶ୍ୱର ତତ୍ତ୍ୱରେ ଶିବ ନିଜକୁ ଜଗତଠାରୁ ଭିନ୍ନ ରୂପରେ ଦେଖନ୍ତି ।

**ଈର୍ଷାମାନ** – ବିପ୍ରଲମ୍ଭ ଶୃଙ୍ଗାର ମୁଖ୍ୟତଃ ଦୁଇ ପ୍ରକାର । ଯଥା - ମାନ ଓ ପ୍ରବାସ । ନାୟିକା ଈର୍ଷାବଶତଃ ମାନ ପ୍ରକାଶ କଲେ ଈର୍ଷ୍ୟାମାନ ହୁଏ ।

## ଉ

**ଉ** – ପଞ୍ଚମ ସ୍ୱରବର୍ଣ୍ଣ । ଏହା ଏକ ବିସ୍ମୟ ସୂଚକ ଶବ୍ଦ । ଶିବଙ୍କୁ ମଧ୍ୟ ବୁଝାଏ ।

**ଉଚ୍ଛେଦବାଦ** – ଏହା ଏକ ଦାର୍ଶନିକ ମତବାଦ । ଏହା ବୌଦ୍ଧଧର୍ମର ସମସାମୟିକ ମତବାଦ । ଏହାର ପ୍ରତିଷ୍ଠାତା ଅନତକେଶ କମ୍ବଳିନୀ । ଏହାଙ୍କ ମତ ବୃହସ୍ପତି ଦର୍ଶନ ସହ ସମାନ । ଏହାର ମତରେ ଚାରି ମହାଭୂତରୁ ଜଗତର ସମସ୍ତ ବସ୍ତୁ ଏବଂ ମନୁଷ୍ୟ ଆଦି ସମସ୍ତ ପ୍ରାଣୀ ଜଗତ ସୃଷ୍ଟି ହୋଇଛନ୍ତି ।

**ଉଡ୍ର ବିଭାଷା** – ଆର୍ଯ୍ୟ ଓ ଅନାର୍ଯ୍ୟ ଭାଷାର ସମନ୍ୱୟରେ ଭାଷା ସୃଷ୍ଟି ହେଲେ ହେଁ ଯେଉଁ ଭାଷାରେ ଅନାର୍ଯ୍ୟ ଭାଷାର ପ୍ରାଧାନ୍ୟ ସଂରକ୍ଷିତ, ତାହା ଆର୍ଯ୍ୟ ସଂସ୍କୃତଜ୍ଞ ମାନଙ୍କ ଦ୍ୱାରା 'ବିଭାଷା' ନାମରେ କଥିତ ହେଉଥିଲା । ତେଣୁ ପ୍ରାୟ ଖ୍ରୀଷ୍ଟପୂର୍ବ ୧-୨ୟ ଶତାବ୍ଦୀବେଳକୁ ତତ୍‌କାଳୀନ ଓଡ଼ିଆ ଭାଷା ଉଡ୍ର ବିଭାଷା ନାମରେ ପରିଚିତ ଥିଲା । ଏହି ଉଡ୍ର ବିଭାଷା ଅନ୍ତତଃ ସପ୍ତମ ଶତାବ୍ଦୀ ବେଳକୁ ଏକ ସ୍ୱତନ୍ତ୍ର ଭାଷା ରୂପରେ ଓଡ଼ିଶାରେ ପ୍ରଚଳିତ ହୋଇଥିବାର ପ୍ରମାଣ ହୁଏନ୍‌ସାଂଙ୍କ ବିବରଣୀରୁ ମିଳେ । ହଜାର ବର୍ଷର ବିବର୍ତ୍ତନ ଧାରାରେ ଏହି ଉଡ୍ର ବିଭାଷା ଆଧୁନିକ ଓଡ଼ିଆ ଭାଷାରେ ପରିଣତ ହୋଇଛି ।

**ଉତ୍‌ପତ୍ତି ବାଦ** – ଭାରତୀୟ ସାହିତ୍ୟ ଶାସ୍ତ୍ରରେ ରସୋତ୍ପତ୍ତିର ଚାରୋଟି ବାଦ ମଧ୍ୟରୁ ଅନ୍ୟତମ । ମୀମାଂସାକ ଭଟ୍ଟଲୋଲ୍ଲଟ ଏହି ମତବାଦର ଜନକ । ତାଙ୍କ ମତରେ ବିଭାବ, ଅନୁଭବ ତଥା ସଞ୍ଚାରୀ ଭାବ ଏହି ତିନୋଟିର ସମ୍ୟକଯୋଗ ଦ୍ୱାରା ରସର ନିଷ୍ପତି ହୁଏ । ରସୋତ୍ପତ୍ତି ପ୍ରତି ଏହି ତିନୋଟି ଗୋଟିଏ ସମ୍ମିଳିତ କାରଣ ନୁହଁନ୍ତି । ଆଲମ୍ବନ ଓ ଉଦ୍ଦୀପନ ବିଭାବ ଦ୍ୱାରା ରସ ଉତ୍ପନ୍ନ ହୁଏ । ରସ ଉତ୍ପାଦ୍ୟ ଓ ବିଭବ ହେଉଛି ଉତ୍ପାଦକ । ଏଣୁ ରସ ଓ ବିଭବ ମଧ୍ୟରେ ଉତ୍ପାଦ୍ୟ ଓ ଉତ୍ପାଦକ ଭାବ ସମ୍ବନ୍ଧ ରହିଛି । ଅନୁଭାବ ଗୁଡ଼ିକ (କଟାକ୍ଷ ଓ ଇଷତ୍ ହାସ୍ୟ ଇତ୍ୟାଦି) ରସକୁ ଅନୁଭବଯୋଗ୍ୟ କରାଉଥିବାରୁ ରସ ଓ ଅନୁଭବ ମଧ୍ୟରେ ଗମ୍ୟ-ଗମ୍ୟକ-ଭାବ ସମ୍ବନ୍ଧ ପ୍ରତିଷ୍ଠିତ । ଏହି ମତ ଅନୁସାରେ ଦର୍ଶକମାନଙ୍କ ମଧ୍ୟରେ ରସୋତ୍ପତ୍ତି ହୁଏ ନାହିଁ, ତାହା ହୁଏ ମୁଖ୍ୟତଃ କାଳ୍ପନିକ ନଟ ଠାରେ । ଏହିପରି ବିଭାବାଦିମାନଙ୍କ ଦ୍ୱାରା ରସର ଉତ୍ପତ୍ତି ହୁଏ । ଏହା ହିଁ ଭଟ୍ଟଲୋଲ୍ଲଟଙ୍କ ଉତ୍‌ପତ୍ତିବାଦ ଭାବରେ ସୁପରିଚିତ । ରସୋତ୍ପତ୍ତି ବିଷୟକ ଏହି ମତଟି ଆଲୋଚକମାନଙ୍କ ଦ୍ୱାରା ପ୍ରତ୍ୟାଖାତ ହୋଇଛି କାରଣ ଦର୍ଶକ ଓ ପାଠକମାନଙ୍କ ମନରେ ରସୋନ୍ମୀଳନର ସତ୍ତାକୁ ଅସ୍ୱୀକାର କରିବା ହେଉଛି ଏହି ମତବାଦର ସବୁଠାରୁ ବଡ଼ ତ୍ରୁଟି ।

**ଉତ୍‌ପ୍ରେକ୍ଷା ଅଳଙ୍କାର** – ଯେଉଁଠାରେ ପ୍ରକୃତ ପଦାର୍ଥ (ଉପମେୟ) ରେ ଅପ୍ରକୃତ ପଦାର୍ଥ (ଉପମାନ)ର ସମ୍ଭାବନା କରାଯାଏ, ସେଠାରେ ଉତ୍‌ପ୍ରେକ୍ଷାଳଙ୍କାର ହୁଏ । ଅଥବା

ଯେଉଁଠାରେ ବିନା ନିଷେଧରେ କାରଣ, ଫଳ ଏବଂ ବସ୍ତୁ ଏ ତିନୋଟିରେ ଉଚ୍ଚଶ୍ରେଣୀର ସନ୍ଦେହ କରାଯାଏ, ସେଠାରେ ଉତ୍‌ପ୍ରେକ୍ଷାଳଙ୍କାର ହୋଇଥାଏ । ଏହା ଦୁଇ ପ୍ରକାର ଯଥା - (୧) ବାଚ୍ୟୋତ୍‌ପ୍ରେକ୍ଷା (୨) ପ୍ରତୀୟମାନୋତ୍‌ପ୍ରେକ୍ଷା ।

(୧) ବାଚ୍ୟୋତ୍‌ପ୍ରେକ୍ଷାଳଙ୍କାର - ବାଚକ ଶବ୍ଦ ବ୍ୟବହୃତ ହୋଇଥିଲେ ବାଚ୍ୟୋତ୍‌ପ୍ରେକ୍ଷା ହୁଏ । ଉଦାଦହରଣ -

''ଶ୍ୱେତାଙ୍ଗ ଚଢ଼େଇ ଗୁହା ସମୁଦ୍‌ଗତ
ନୀର ଭେଦି କିବା ଉଠେ ଐରାବତ''। (ଚିଲିକା)

(୨) ପ୍ରତୀୟମାନୋତ୍‌ପ୍ରେକ୍ଷା - ବାଚକ ଶବ୍ଦ ବ୍ୟବହୃତ ହୋଇନଥିଲେ ଏହି ଅଳଙ୍କାର ହୁଏ । ଉଦାହରଣ -

ବାଳୀ ଟାଳିଲା ବେଳେ ନେତ୍ର
ଜୀବନ ହୋଇଲା ଆରତ
ଖେଳି ଆସୁଛି କାଳ ଅହି
ଏ ମୋତେ ଦଂଶିବାର ପାଇଁ । (ଲାବଣ୍ୟବତୀ)

ଉତ୍ତମ କାବ୍ୟ – ଯେଉଁ କାବ୍ୟରେ ବାଚ୍ୟାର୍ଥ ଅପେକ୍ଷା ପ୍ରତୀୟମାନ ଅର୍ଥର ଚମତ୍କାରିତା ବିଶେଷ ଭାବରେ ଅନୁଭୂତ ହୁଏ ତାହାକୁ ଧ୍ୱନୀ କାବ୍ୟ ବା ଉତ୍ତମ କାବ୍ୟ କୁହାଯାଏ । କାରଣ ଏହାର କାବ୍ୟିକ ପରିକଳ୍ପନାରେ ବ୍ୟଙ୍ଗାର୍ଥ ବା ଧ୍ୱନିର ଚମକ୍ରାରିତା ଅଭିବ୍ୟଞ୍ଜିତ ହୋଇଥାଏ ।

ଉତ୍ତର ଆଧୁନିକତା – ସାମ୍ପ୍ରତିକ ସମୟର ନୈତିକ ଓ ସାଂସ୍କୃତିକ ସଙ୍କଟ ସମ୍ପର୍କିତ ପ୍ରତିକ୍ରିୟାରୁ ଉତ୍ତର ଆଧୁନିକତା ଉଦ୍ଭବ । ଦାର୍ଶନିକ ପରିପ୍ରେକ୍ଷୀରେ ଏହା ଏକପ୍ରକାରର ଚରମ ସଂଶୟବାଦ, ଯେଉଁଠାରେ କୌଣସି ନିରପେକ୍ଷ ବିଚାର ବା ମତବାଦର ବାସ୍ତବତା ଓ ନିଶ୍ଚିତତା ସ୍ୱୀକାର୍ଯ୍ୟ ନୁହେଁ । ସାହିତ୍ୟ କ୍ଷେତ୍ରରେ ଉତ୍ତର ଆଧୁନିକତା ଦ୍ୱିତୀୟ ବିଶ୍ୱଯୁଦ୍ଧ ପରବର୍ତ୍ତୀ ସମୟର ଆଧୁନିକତା ବିରୋଧୀ ସାହିତ୍ୟର ଏକ ନାମକରଣ ।

ପାଶ୍ଚାତ୍ୟ ସାହିତ୍ୟରେ ଆଧୁନିକତାର ଉତ୍ତୁଙ୍ଗ ପର୍ଯ୍ୟାୟ ଥିଲା ୧୯୧୦ ରୁ ୧୯୩୦ କିନ୍ତୁ ଉତ୍ତର ଆଧୁନିକତାର ଉଦ୍ଭବ ହେଲା ୧୯୫୦-୧୯୬୦ ଦଶକରୁ । ଆଧୁନିକତା ଏକ ବୌଦ୍ଧିକ ଓ କୁସଂସ୍କାର ରହିତ ଏକ ଯୁକ୍ତିସିଦ୍ଧ ଜୀବନଯାପନର ଜୟଗାନ । ଏକ ସାର୍ବଜନୀନ ପ୍ରଗତି ଓ ସତ୍ୟର ଧାରଣାପାଇଁ ଏକ ସ୍ୱତନ୍ତ୍ର ଦୃଷ୍ଟିଭଙ୍ଗୀ । କିନ୍ତୁ ଉତ୍ତର ଆଧୁନିକତା ଏହି ଜ୍ଞାନୋଦୟର ପ୍ରକଳ୍ପ ଭିତରେ ସ୍ୱବିରୋଧ ଦୃଷ୍ଟିଭଙ୍ଗୀର ଏକ ଧାରା, ତଥାକଥିତ ଆଧୁନିକତା ବିରୁଦ୍ଧରେ ଏକ ପ୍ରତିକ୍ରିୟା ତଥା ଚରମ ପ୍ରତ୍ୟାଖ୍ୟାନ । ଆଧୁନିକତାରୁ ଉଦ୍ଭବ ସଂଶୟବାଦୀ ଅନୁସନ୍ଧିତ୍ସାର ଏକ ଚରମ ନଞର୍ଥକ ଉପସଂହାର ହିଁ

ଉତ୍ତର-ଆଧୁନିକତା । ଶିଳ୍ପୋତ୍ତର *(Post-Industrial)* ସମାଜ ଓ ସଂସ୍କୃତିର ପରିବର୍ତ୍ତନ ସହ ଉତ୍ତର-ଆଧୁନିକତା ଏକ ପରିବର୍ତ୍ତିତ ଅବସ୍ଥା । ତଥ୍ୟ, ବିଜ୍ଞାନ, ପ୍ରଯୁକ୍ତି ବିଦ୍ୟାର ଏହା ଏକ ଦୃତ ପରିଣତି । ଲ୍ୟୋଟାଡ଼ଙ୍କ ମତରେ ଉତ୍ତର-ଆଧୁନିକ ସମାଜ 'ସମାଜର ଏକ କମ୍ପ୍ୟୁଟରୀକରଣ ରୂପ' । ଉତ୍ତର-ଆଧୁନିକତା *(Post-modernism)* ଶବ୍ଦର 'ଉତ୍ତର' ବା *Post* କୁ ଏକ ଐତିହାସିକ କାଳର ସୂଚକ ରୂପେ ଗ୍ରହଣ ନକରି ସେ ଏକ ମାନସିକ ସ୍ଥିତି ବା ମିଜାଜ୍*(mood)* ରୂପେ ଗ୍ରହଣ କରିଛନ୍ତି । ତେବେ ''ଉତ୍ତର-ଆଧୁନିକ ବାଦ ଏକ ପାଶ୍ଚାତ୍ୟ ସାଂସ୍କୃତିକ ପ୍ରସଙ୍ଗ । ଭାରତ ଓ ଓଡ଼ିଶା ପ୍ରସଙ୍ଗରେ ଏହା ବିଶେଷ ମୂଲ୍ୟ ନାହିଁ'' । (ଡକ୍ଟର ଚିତ୍ତରଞ୍ଜନ ମିଶ୍ର - ସାମ୍ପ୍ରତିକ ସାହିତ୍ୟ ତତ୍ତ୍ୱ) ।

**ଉତ୍ତର-ଉପନିବେଶବାଦ** – ଉପନିବେଶ ଉତ୍ତର କାଳରେ ପାଶ୍ଚାତ୍ୟ ପ୍ରମୁଖତା ଓ ଆଧିପତ୍ୟର ପ୍ରତିରୋଧ ତଥା ନିଗୁଡ଼ା ପ୍ରାଚ୍ୟ ପରିଚୟ ଓ ସ୍ୱାଭିମାନର ପ୍ରତିଷ୍ଠା ଓ ନିରୂପଣ ପରିପ୍ରେକ୍ଷୀରେ ଅଭ୍ୟୁଦୟ ତତ୍ତ୍ୱ କୁ ଉତ୍ତର ଉପନିବେଶବାଦ କୁହାଯାଏ । ଉତ୍ତର-ଉପନିବେଶ ବାଦର ତତ୍ତ୍ୱ ନିର୍ଣ୍ଣୟ କରିବାରେ ମୁଖ୍ୟତଃ ଯେଉଁ ତିନିଜଣଙ୍କ ନାମ ସଂଶ୍ଳିଷ୍ଟ ସେମାନେ ହେଲେ - ଏଡ଼ୱାର୍ଡ଼ ସଇଦ *(Edward Said)*, ଗାୟତ୍ରୀ ଚକ୍ରବର୍ତ୍ତୀସ୍ପିଭାକ *(Spivak)* ଓ ହୋମି କେ ଭାବା *(Homi K. Bhaba)* । ଉତ୍ତର ଉପନିବେଶବାଦୀ ତତ୍ତ୍ୱର ସିଦ୍ଧାନ୍ତ ଭିତରେ ସଇଦ୍‌ଙ୍କ ଓରିଏଣ୍ଟାଲିଜିମ୍ *(Orientalism)*, ସ୍ପିଭାକଙ୍କ ସବାଲଟର୍‌ନିଟି *(Subalternity)* ଏବଂ ଭାବାଙ୍କ ମିମିକ୍ରି *(Mimicry)*.

ମୋଟାମୋଟିଭାବେ ଉତ୍ତର-ଉପନିବେଶବାଦ, ୟୁରୋପୀୟ ଉପନିବେଶବାଦ ଓ ତତ୍ ପରବର୍ତ୍ତୀ ପ୍ରଭାବ ବୁଝିବା ଦିଗରେ ଉପୁଜୁଥିବା କେତେକ ତାତ୍ତ୍ୱିକ ପ୍ରଶ୍ନର ସମାହାର । ସ୍ୱାଧୀନତା, ଜାତୀୟତା, ସ୍ୱତନ୍ତ୍ରରାଷ୍ଟ୍ର ଓ ସଂସ୍କୃତିର ଧାରଣା, ସ୍ୱଦେଶପ୍ରୀତି ଆଦିର ଆଲୋଚନା ଉତ୍ତର-ଉପନିବେଶବାଦୀ ଅନୁଭୂତି ଓ ଅନୁଷ୍ଠାନର ପରିଚୟ । ଏ ସମସ୍ତ ପାଶ୍ଚାତ୍ୟ ଚିନ୍ତନ ଶାସ୍ତ୍ର ତଥା ଡିସ୍‌କୋର୍ସ ସହ ଜଡ଼ିତ । ୧୯୮୦ ପରଠାରୁ ପାଶ୍ଚାତ୍ୟ ଡିସ୍‌କୋର୍ସ ଓ ଆଧୁନିକତା ବିରୋଧରେ ସାମ୍ରାଜ୍ୟ ବିରୋଧ ଗଢ଼ିଉଠିଛି । ପ୍ରାଚ୍ୟ -ପାଶ୍ଚାତ୍ୟ କ୍ରିୟା ପ୍ରତିକ୍ରିୟାରୁ ଉଦ୍ଭୁତ ସଙ୍କର *(hybrid)* ବିଷୟବସ୍ତୁ ଉତ୍ତର - ଉପନିବେଶବାଦର ଆଲୋଚନା ପରିସରଭୁକ୍ତ ହୋଇଛି । ୟୁରୋପୀୟ ଅବବୋଧ ଭିତରେ ସଂସ୍କୃତିର ସଂଜ୍ଞା ପ୍ରକରଣ ପ୍ରାଚ୍ୟର ଯେଉଁ ସ୍ୱରୂପ ଗଠନ କରିଛି, ଉତ୍ତର - ଉପନିବେଶବାଦ ତାହାର ସଠିକତାକୁ ପ୍ରଶ୍ନ କରିଛି । (ଡକ୍ଟର ଚିତ୍ତରଞ୍ଜନ ମିଶ୍ର, ସା.ସା.ତ)

**ଉତ୍ତର ସଂରଚନା ବାଦ** – ଗୋଟିଏ ସଂପୂର୍ଣ୍ଣ ଅବୟବ ଅନେକ ଅଂଶବିଶେଷର ସମନ୍ୱିତ ସଂରଚନା ବା ଗଠନଧର୍ମ ବା ଗାଠନିକତାର ଆକଳନ ଅବୟବର ସମ୍ପୂର୍ଣ୍ଣତା ଓ ଅଂଶମାନଙ୍କର ଗୁରୁତ୍ୱ ପ୍ରତିପାଦିତ କରିବାରେ ସମର୍ଥ, ଏ ଧାରଣା ସଂରଚନାବାଦର

ମୂଳପିଣ୍ଡ । ଏହି ସଂରଚନାବାଦର ଧାରଣା ଓ ପ୍ରୟୋଗରେ ଥିବା ଦୋଷ ଦୁର୍ବଳତାକୁ ସୂଚାଇ ପ୍ରତିଟି ବିଧି ବ୍ୟବସ୍ଥାର କେନ୍ଦ୍ର ବା ଭିତ୍ତିକୁ ପ୍ରଶ୍ନ କରିବା ବିଗଠନର ମୂଳମନ୍ତ୍ର । ଉତ୍ତର ସଂରଚନା କାଳର ମୁଖ୍ୟ ପ୍ରସଙ୍ଗ ହିଁ ଏହି ବିଗଠନ ବା ଡିକନଷ୍ଟ୍ରକସନ୍ । ବିଗଠନ ସଂପର୍କିତ ମୁଖ୍ୟ ଦାର୍ଶନିକ ହେଲେ ଜାକ୍ ଡେରିଡ଼ା *(Jacques Derrida)* । ଡେରିଡଙ୍କ ବିଗଠନର ଉତ୍ତର-ସଂରଚନାବାଦର *(Post-structuralism)* ମୁଖ୍ୟ ଉପାଦାନ ।

**ଉଦ୍ଧୃତ ଗ୍ରନ୍ଥସୂଚୀ** – ନିବନ୍ଧ ରଚନା ସମୟରେ ଯେଉଁ ତଥ୍ୟାବଳୀ ବିଭିନ୍ନ ଲେଖକଙ୍କ ମତ, ପୁସ୍ତକରୁ ଗ୍ରହଣ କରିଥାଏ, ତାହାର ସୂଚନା, ଟୀପ୍ପଣୀକୁ ଉଦ୍ଧୃତ ଗ୍ରନ୍ଥସୂଚୀ କୁହାଯାଏ । ଏ ଗବେଷଣା ପ୍ରସୂତ ସନ୍ଦର୍ଭ ରଚନାର ଏକ ଅପରିହାର୍ଯ୍ୟ ଅଂଶ ।

**ଉଦ୍ଧୃତି** – ଯେତେବେଳେ କୌଣସି ବାକ୍ୟକୁ ବା ଅନୁଚ୍ଛେଦ କୁ ଅବିକଳ ଉଦ୍ଧାର କରାଯାଏ କୋଲନ୍ ଇତ୍ୟାଦିକୁ ମଧ୍ଯ ବାଦ ଦିଆଯାଇ ନଥାଏ, ତାହାକୁ ଉଦ୍ଧୃତି କୁହାଯାଏ । ଗବେଷଣାରେ ଏ ଉଦ୍ଧୃତି ଗୁଡ଼ିକରେ ଲେଖକଙ୍କ ନାମ, ପୁସ୍ତକ ନାମ, ପ୍ରକାଶକଙ୍କ ନାମ ପାଦଟୀକାରେ ରହିଥାଏ ।

**ଉନ୍ମନୀ** – ଏହା ସନ୍ଥ ସାହିତ୍ୟରେ ଦେଖାଯାଏ । ଉନ୍ମନୀ ମୁଦ୍ରା ହଠଯୋଗରେ ବର୍ଣ୍ଣିତ । ପାଞ୍ଚଗୋଟି ମୁଦ୍ରା ମଧ୍ୟରୁ ଏହା ଅନ୍ୟତମ ମୁଦ୍ରା । ଏହି ମୁଦ୍ରା ସାଧନରେ ସାଧକ ନାସାଗ୍ରରେ ଦୃଷ୍ଟି ରଖି ସାଧନ କରିଥାଏ ।

**ଉପକଥା** – ଉପକଥା ବିଭିନ୍ନ ନୀତି ଓ ଉପଦେଶ ସମ୍ବଳିତ ରୂପକ କାହାଣୀ । ସାଧାରଣତଃ ଉପକଥାରେ ପଶୁପକ୍ଷୀମାନେ ଚରିତ୍ର ଭାବରେ ବ୍ୟବହୃତ ହୋଇଥାନ୍ତି । ଅନେକ ସମୟରେ ଉପଦେଶଗୁଡ଼ିକ ଢ଼ଗଢ଼ମାଳି ଛଳରେ ମଧ୍ୟ ବ୍ୟକ୍ତ ହୋଇଥାଏ । ଅନେକ ଉପକଥା ଗୁଡ଼ିକର ଶୈଳୀ ମାର୍ଜିତ, ନାଟକୀୟ ଓ ସରଳ । ପଞ୍ଚତନ୍ତ୍ର ଭାରତର ବହୁତ ଲୋକପ୍ରିୟ ଉପକଥା ।

**ଉପଦେଶାତ୍ମକ** – ଗଳ୍ପ, ନାଟକ ଇତ୍ୟାଦି ସାହିତ୍ୟ ଉପଦେଶମୂଳକ ହୋଇଥିଲେ ତାକୁ ଉପଦେଶାତ୍ମକ ସାହିତ୍ୟ କୁହାଯାଏ । ଏହା ମଣିଷର ଉତ୍ତମ ଚରିତ୍ର, ସଦ୍‌ଗୁଣ ଇତ୍ୟାଦି ନିର୍ମାଣ କରିବାରେ ପ୍ରେରଣା ଯୋଗାଇଥାଏ ।

**ଉପଧା** – ଅନ୍ତ୍ୟବର୍ଣ୍ଣର ପୂର୍ବବର୍ଣ୍ଣ । ଏହାକୁ ଦ୍ୱିମାତ୍ରିକ ମେଳ ଓ ଯୁଗ୍ମମେଳ କୁହାଯାଏ । ରୀତିଯୁଗରେ ଏକମାତ୍ରିକ ମେଳର ପ୍ରାଧାନ୍ୟ ଥିଲା । ଓଡ଼ିଶାରେ ଜୟଦେବଙ୍କ ''ଗୀତଗୋବିନ୍ଦ'' ରେ ଏହି ଉପଧାମିଳନ ର ଧାରା ପ୍ରଥମେ ପ୍ରବର୍ତ୍ତିତ ହୋଇଥିବାର ଦେଖାଯାଏ ।

**ଉପନିଷଦ** – ଉପନିଷେଦ୍ ଶବ୍ଦ ହେଉଛି ଉପ+ନି-ଷଦ ରୁ ଉତ୍ପନ୍ନ । ଏହାର ଅର୍ଥ ଗୁରୁଙ୍କ ପାଖରେ ବସି ଆତ୍ମା ଓ ବ୍ରହ୍ମଜ୍ଞାନ ଶିକ୍ଷା କରିବା । ଭାରତୀୟ ତତ୍ତ୍ୱଜ୍ଞାନର ମୌଳିକ ଗ୍ରନ୍ଥ

ହେଉଛି ଉପନିଷଦ । ବୈଦିକ ସାହିତ୍ୟର ଏହା ଅନ୍ତିମ ଭାଗ । ତେଣୁ ଏହାକୁ ବେଦାନ୍ତ କୁହାଯାଏ । ଉପନିଷେଦର ଦାର୍ଶନିକ ତତ୍ତ୍ୱ ଦୁଇ ଭାଗରେ ବିଭକ୍ତ କରାଯାଇଛି - ଆଧ୍ୟାତ୍ମବିଦ୍ୟା ଓ ନୀତିଶାସ୍ତ୍ର । ଆଧ୍ୟାତ୍ମବିଦ୍ୟାର ଅନ୍ତର୍ଗତ ବିଷୟ ହେଲା ପରମ ତତ୍ତ୍ୱ, ଜଗତର ସ୍ୱରୂପ ଓ ସୃଷ୍ଟି ସମସ୍ୟା । ନୀତିଶାସ୍ତ୍ରର ବିଷୟ ହେଲା ଜୀବନର ଅନ୍ତିମ ଲକ୍ଷ୍ୟ ।

ଉପନ୍ୟାସ – ସାହିତ୍ୟର ଏକ ଜନପ୍ରିୟ ବିଭାଗ । ଇଂରାଜୀ ନଭେଲ ଶବ୍ଦର ଓଡ଼ିଆ ପ୍ରତିଶବ୍ଦ । ଏହାର ବ୍ୟାକରଣ ଅର୍ଥ ହେଉଛି (ଉପ- ନି - ଅସ - ଅ) ଉପକଥା ବା କଥାନ୍ୟାସ । ଏହା ଆଖ୍ୟାନଭାଗ, ପରିବେଶ କଳ୍ପନା ଓ ବାଣୀଭଙ୍ଗୀର ସୁସମ୍ବନ୍ଧ ରୂପଶିଳ୍ପ । ଏହି ଦୃଷ୍ଟିରୁ ଉପନ୍ୟାସ କେତେକ ଶ୍ରେଣୀରେ ବିଭକ୍ତ । ଯଥା - ସାମାଜିକ, ଐତିହାସିକ, ସାଂସ୍କୃତିକ, ପୌରାଣିକ, ମନସ୍ତାତ୍ତ୍ୱିକ, ବୀରତ୍ୱ ବ୍ୟଞ୍ଜକ, ଭାବପ୍ରଧାନ, ଜୀବନୀମୂଳକ ଇତ୍ୟାଦି । ଓଡ଼ିଆ ଉପନ୍ୟାସରେ ଆରମ୍ଭକାଳ ହେଉଛି ଊନବିଂଶ ଶତାବ୍ଦୀର ଶେଷଭାଗ ।

ଉପପଦ – କୌଣସି କୌଣସି ପଦ ଗଢ଼ିବାପାଇଁ 'ଧାତୁର' ପୂର୍ବରେ ଅନ୍ୟ ଗୋଟିଏ ପଦ ଥାଏ, ତାହା ସେହିପଦର ଉପପଦ ।

ଉପପଦ ତତ୍ପୁରୁଷ ସମାସ – ଉପପଦ ସହିତ କ୍ରିୟା ନିଷ୍ପନ୍ନ ଅନ୍ୟ ପଦର ଯେଉଁ ସମାସ ହୁଏ, ତାହାକୁ ଉପପଦ ତତ୍ପୁରୁଷ ସମାସ କହନ୍ତି ।

ଉପବାକ୍ୟ – କୌଣସି ବାକ୍ୟ ମୂଳ ଜଟିଳ ବାକ୍ୟର ଅନ୍ତର୍ଭୁକ୍ତ ଏକ ଅଂଶ ବାକ୍ୟ ହୋଇଥିଲେ ତାକୁ ଉପବାକ୍ୟ କୁହାଯାଏ । ଉପବାକ୍ୟ ତିନି ପ୍ରକାର ଯଥା (୧) ପ୍ରଧାନ ଉପବାକ୍ୟ (୨) ସମକକ୍ଷ ଉପବାକ୍ୟ (୩) ଆଶ୍ରିତ ଉପବାକ୍ୟ

ଉପବେଦ – ବେଦ ଗୁଡ଼ିକର ୪ଟି ଉପବେଦ ଅଛି । ଋଗ୍‌ବେଦର ଆୟୁର୍ବେଦ, ଯଜୁର୍ବେଦର ଧନୁର୍ବେଦ, ସାମବେଦର ଗାନ୍ଧର୍ବବେଦ ଏବଂ ଅଥର୍ବବେଦର ଅର୍ଥଶାସ୍ତ୍ର ଉପବେଦ ଅଟେ ।

ଉପମାନ – ଯାହା ସଙ୍ଗେ ତୁଳନା କରାଯାଏ ତାହା ଉପମାନ । ଉଦାହରଣ ସ୍ୱରୂପ ପଦ୍ମିନୀଙ୍କ ମୁଖ ଚନ୍ଦ୍ର ପରି ରମଣୀୟ । ଏହାର ମୁଖ ବର୍ଣ୍ଣନୀୟ ବସ୍ତୁ । ଏହାକୁ ଚନ୍ଦ୍ର ସହିତ ତୁଳନା କରାଯାଇଛି । ତେଣୁ ଏଠାରେ ମୁଖ ଉପମାନ ।

ଉପମାନ କର୍ମଧାରୟ ସମାସ – ଯେଉଁ ସମାସରେ ଉପମାନ ଓ ଉପମେୟରେ ସାଧାରଣ କର୍ମବାଚକ ଶବ୍ଦ ସହିତ ଉପମାନବାଚକ ଶବ୍ଦର ସମାସ ହୁଏ, ତାହାକୁ ଉପମାନ କର୍ମଧାରୟ ସମାସ କୁହାଯାଏ ।

ଉପମା ଅଳଙ୍କାର – ସମଧର୍ମକ୍ରାନ୍ତ ଉପମାନ, ଉପମେୟର ସାଦୃଶ୍ୟ (ରୂପ, ଗୁଣ, କିମ୍ବା ଯେ କୌଣସି ଆଧାରର ସମତା) କଥିତ ହେଲେ ଉପମା ଅଳଙ୍କାର ହୁଏ । ଅର୍ଥାଲଙ୍କାର ମଧ୍ୟରେ ସର୍ବ ପ୍ରଥମେ ଉପମାକୁ ସ୍ଥାନ ଦିଆଯାଏ ।

ଉଦାହରଣ - ନୀଳ ନୀରଦ ମାଳେ ଖେଳେ ଚପଳା

ଖଳ ପୀରତି ପ୍ରାୟ ସଦା ଚପଳା (ତୁଳସୀ ସ୍ତବକ)

ଏହା – (୧) ପୂର୍ଣ୍ଣୋପମା (୨) ମାଳୋପମା (୩) ଲୁପ୍ତୋପମା ଭେଦରେ ତିନି ପ୍ରକାର ।

(୧) ପୂର୍ଣ୍ଣୋପମା - ଯେଉଁଠାରେ ଉପମାନ, ଉପମେୟ ସାଧାରଣ ଧର୍ମ ଓ ସାଦୃଶ୍ୟ ବାଚକ ଶବ୍ଦର ପ୍ରୟୋଗ ହୋଇଥାଏ, ସେଠାରେ ପୂର୍ଣ୍ଣୋପମା ହୋଇଥାଏ ।

ଉଦାହରଣ - ଦର୍ଦ୍ଦୁର ରବ ଶୁଣି ନିରବ ପିକ

ମୂଢ଼ ସଭାରେ ଯଥା ମୂକ ଧାର୍ମିକ (ତୁଳସୀ ସ୍ତବକ)

(୨)ମାଳୋପମା - ଗୋଟିଏ ଉପମେୟର ଏକାଧିକ ଉପମାନ ଥିଲେ ମାଳୋପମା ଅଳଙ୍କାର ହୁଏ । ଉଦାହରଣ -

ମିଶିଯାଏ ଯଥା ପ୍ରଭାତୀ ତାରା ରବି କିରଣେ

ମିଶିଯାଏ ଯଥା ଜୀବାତ୍ମା ବିଶ୍ୱ ଆତ୍ମା ଚରଣେ

ମିଶିଯାଏ ଯଥା ଚପଳା ନୀଳ ନିରଦ ସଙ୍ଗେ

ମିଶିଯାଏ ତଥା ଅବଳା ସେହି ନୀଳ ତରଙ୍ଗେ

ଲୁପ୍ତୋପମା - ଯେଉଁଠାରେ ଉପମାନ ଉପମେୟ ସାଧରଣ ଧର୍ମ ଓ ସାଦୃଶ୍ୟ ବାଚକ ଶବ୍ଦ । ଏମାନଙ୍କମଧ୍ୟରୁ ଗୋଟିକର ବା ଦୁଇଟିର ଲୋପ ହୋଇଥାଏ, ସେଠାରେ ଲୁପ୍ତୋପମା ଅଳଙ୍କାର ହୁଏ । ଯଥା -

ଚାହିଁଲେ ନୃପତି ଶିଶୁହସ୍ତେ ଯେହ୍ନେ

ବନ ବିକଶିତ ପଦ୍ମ

ଚକ୍ରବର୍ତ୍ତୀ ଚିହ୍ନ ସକଳ ତହିଁରେ

ରହିଛନ୍ତି କରି ସଦ୍ମ । (ପ୍ରଣୟ ବଲ୍ଲରୀ)

**ଉପମିତ କର୍ମଧାରୟ ସମାସ** – ଯେଉଁ ସମାସରେ ଉପମେୟ ପୂର୍ବପଦ ଓ ଉପମାନ ପରପଦ ହୁଏ, ତାହାକୁ ଉପମିତ କର୍ମଧାରୟ ସମାସ କୁହାଯାଏ ।

**ଉପମେୟ** – ଯାହାକୁ ତୁଳନା କରାଯାଏ ତାହା ଉପମେୟ ।

ଉଦାହରଣ -

''ନୀଳ ନୀରଦମାଳେ ଖେଳେ ଚପଳା

ଖଳ ପୀରତି ପ୍ରାୟେ ସଦା ଚପଳା'' (ତୁଳସୀ ସ୍ତବକ)

**ଉପରୂପକ** – ଦୃଶ୍ୟକାବ୍ୟକୁ ରୂପକ କୁହାଯାଏ । ଦୃଶ୍ୟ କାବ୍ୟର ଦୁଇଟି ଭେଦ (୧) ରୂପକ (୨) ଉପରୂପକ । ସମସ୍ତ ନାଟକୀୟ ରଚନାକୁ ରୂପକ କୁହାଯାଏ ଏବଂ ସେହି ନାଟକୀୟତାରେ ପରିଲକ୍ଷିତ ସ୍ୱତନ୍ତ୍ର ବିଶିଷ୍ଟତାକୁ ଦୃଷ୍ଟି ଆଗରେ ରଖି ରୂପକଗୁଡ଼ିକ ଦଶ ଭାଗରେ ବିଭକ୍ତ କରାଯାଇଛି ।

**ଉପସର୍ଗ** – ଯେଉଁ ଅକ୍ଷର ବା ଶବ୍ଦ ଅବ୍ୟୟ ଧାତୁର ପୂର୍ବରେ ବ୍ୟବହୃତ ହୋଇ ଏହାର ଅର୍ଥରେ ବିବିଧ ପରିବର୍ତ୍ତନ ସାଧନ କରିଥାନ୍ତି, ସେମାନଙ୍କୁ ଉପସର୍ଗ କୁହାଯାଏ । ପ୍ର, ପରା, ଅପ, ସମ, ଅବ, ଅନୁ, ଅଧି, ବି, ଅଭି, ଉପ, ଅଣି, ଆ ଭେଦରେ ଉପସର୍ଗ ସଂଖ୍ୟା କୋଡ଼ିଏ ଅଟେ ।

**ଉପାଖ୍ୟାନ** – ଗୁରୁଶିଷ୍ୟ କଥୋପକଥନ ପରଂପରାରେ ଲିଖିତ ଗୀତିକା ମଧ୍ୟରେ ନୀତି, ଧର୍ମ, ଦର୍ଶନ ତତ୍ତ୍ୱ ସମ୍ବଳିତ କାହାଣୀ ବା ଆଖ୍ୟାନ କୁ ଉପାଖ୍ୟାନ କୁହାଯାଏ ।

**ଉଦ୍ଭଟ** – ଦ୍ୱିତୀୟ ମହାଯୁଦ୍ଧର ଆଗ୍ନେୟ ଆଘାତରେ ୟୁରୋପ ମହାଦେଶର ଅର୍ଥନୀତି, ସାମାଜିକ ସ୍ଥିତି, ସଭ୍ୟତାର ଅହଙ୍କାର ଅର୍ଦ୍ଧଦଗ୍ଧ ହୋଇଗଲା, ସେ ଦଗଧ୍ ଭୂମିରୁ ଜନ୍ମନେଲା ଏକ ନୂତନ କଳାରୂପ 'ଉଦ୍ଭଟ' । ହଠାତ୍ ମଣିଷର ବିଶ୍ୱାସ ଓ ଜୀବନର ମୂଲ୍ୟବୋଧ ପ୍ରତି ଭୁଷିଡ଼ି ପଡ଼ିଲା । ମଣିଷ ଅନୁଭବ କଲା ବିଶ୍ୱ ଏଭଳି ଏକ ପରିସ୍ଥିତିରେ ଅଛି ଯାହା ଅଯୌକ୍ତିକ, ଭୀତିପ୍ରଦ, ଅସଂଲଗ୍ନ । ଗୋଟିଏ କଥାରେ କହିବାକୁ ଗଲେ 'ଉଦ୍ଭଟ' । ଏହି ତତ୍ତ୍ୱରେ ସାହିତ୍ୟର ନାଟକ ବିଭାଗରେ ଭାଷା ଓ ଭାବର ଯୁଗାନୁକାରୀ ପରୀକ୍ଷା ଚାଲିଲା । ଏହି ପରିବେଶ ଭିତରୁ ଜନ୍ମନେଲା ଉଦ୍ଭଟ ନାଟକ । ଅସଂଗତି, ଅସମତ୍ୱ, ଅର୍ଥହୀନ ପରିବେଶ ଏ ନାଟକର ପ୍ରଧାନ ପ୍ରବୃତ୍ତି ।

**ଉଷ୍ମବର୍ଣ୍ଣ** – ଓଡ଼ିଆ ଅବର୍ଗ୍ୟ ବର୍ଣ୍ଣ ତିନି ଶ୍ରେଣୀରେ ବିଭକ୍ତ । ଯଥା – ଅନ୍ତସ୍ଥ୍ୟ, ଉଷ୍ମ ଓ ଅଯୋଗବାହ ବର୍ଣ୍ଣ । ଶ୍, ଷ୍, ସ୍, ହ୍ ଏହି ୪ଟି କୁ ଉଷ୍ମବର୍ଣ୍ଣ କୁହାଯାଏ ।

## ଏ

**ଏକକ ନାଟକ** – ଏହାକୁ ଏକପାତ୍ରୀୟ ନାଟକ କୁହାଯାଏ । ଜଣେ ଅଭିନେତା ଦ୍ୱାରା ଗୋଟିଏ କଥାବସ୍ତୁ ବା ଘଟଣାଜନିତ କାର୍ଯ୍ୟ, ବ୍ୟପାର, କଥନକୁ ନିଖୁଣ ଭାବେ ପ୍ରଦର୍ଶନ କରାଯାଇଥାଏ । ମନୋବିଜ୍ଞାନିକ କଥାବସ୍ତୁର ଚିତ୍ରଣ ପାଇଁ ଏହା ସର୍ବୋତ୍କୃଷ୍ଟ ନାଟ୍ୟଶୈଳୀ । ଏକକ ନାଟକ ପାଇଁ ଅଭିନେତା ମୁଖା, ବେଶ ପରିପାଟୀ ସହିତ ସ୍ୱର ବୈଚିତ୍ର୍ୟ ଏକାନ୍ତ ଅପରିହାର୍ଯ୍ୟ ।

**ଏକତାତ୍ରୟୀ** – ଗ୍ରୀସ୍ ଦେଶୀୟ ଆଲୋଚକ ଆରିଷ୍ଟଟଲ୍‌ଙ୍କ ମତରେ ନାଟକରେ ଏକତାତ୍ରୟୀ *(three unities)* ର ସ୍ଥାନ ଅପରିହାର୍ଯ୍ୟ । ସ୍ଥାନୈକତା *(Unity of place)*, କାଳୈକତା *(Unit of time)* ଏବଂ କାର୍ଯୈକତା *(Unit of action)*କୁ ଏକତାତ୍ରୟୀ କୁହାଯାଏ ।

**ଏକାଙ୍କିକା** – ଏକ ଅଙ୍କ ବିଶିଷ୍ଟ ନାଟକକୁ ଏକାଙ୍କିକା କୁହାଯାଏ । ବାସ୍ତବରେ ଉପନ୍ୟାସ ଓ କ୍ଷୁଦ୍ରଗଳ୍ପ ମଧ୍ୟରେ ଯେଉଁ ସଂପର୍କ; ନାଟକ, ଏକାଙ୍କିକା ମଧ୍ୟରେ ସେହି ସମ୍ବନ୍ଧ । ଏକାଙ୍କିକା ହେଉଛି ସ୍ୱଳ୍ପ ଚରିତ୍ର ବିଶିଷ୍ଟ କ୍ଷୁଦ୍ରାୟତନ ଏକମୁଖୀ ଦୃଶ୍ୟକାବ୍ୟ ଯେଉଁଥିରେ ଗୋଟିଏ ବିଶିଷ୍ଟ ମୁହୂର୍ତ୍ତର ଗଭୀର ଭାବୋଦ୍ଦୀପକ ଏକ କ୍ଷୁଦ୍ର ଘଟଣାକୁ ତୀବ୍ରଗତିରେ ନାଟକୀୟ ପରିଣତି ପ୍ରଦାନ କରାଯାଏ । ଏହାର ପରିସର ନାଟକ ତୁଳନାରେ ସଂକ୍ଷିପ୍ତ ହୋଇଥିବାରୁ ଏହାର ପରିଣତିରେ ଆକସ୍ମିକ ସଂବେଦନର ତୀବ୍ରତା ଓ ଘଟଣାରେ ଅତର୍କିକତା ସମ୍ପାଦିତ ହୋଇଥାଏ । ଓଡ଼ିଆ ଆଧୁନିକ ଏକାଙ୍କିକାର ଜନ୍ମ ପୂର୍ବରୁ ବିଂଶ ଶତାବ୍ଦୀର ଆରମ୍ଭରେ ଏହା ଗୀତାଭିନୟ ଓ ଫାର୍ସ ମଧ୍ୟରେ ସୀମାବଦ୍ଧ ଥିଲା । ନାଟ୍ୟକାର ଗୋପାଳ ଛୋଟରାୟ, ପ୍ରାଣବନ୍ଧୁ କର ଓଡ଼ିଆ ସାହିତ୍ୟରେ ଭିନ୍ନ ଭିନ୍ନ ସ୍ୱାଦର ଏକାଙ୍କିକା ରଚନା କରି ସମୃଦ୍ଧ କରିଛନ୍ତି ।

**ଏକାକ୍ଷର ମନ୍ତ୍ର** – ଏହା ସନ୍ଥ ସାହିତ୍ୟରେ ଦେଖାଯାଏ । ଭଗବାନ ବୁଦ୍ଧ ରୂପରେ ଏକାକ୍ଷର ମନ୍ତ୍ରର ସ୍ରଷ୍ଟା ବୋଲି 'ରାଧାରସାମୃତ'ରେ କୁହାଯାଇଛି ।

'ତାହାର ଉଦରେ ମୁଁ ବୌଦ୍ଧ ରୂପେ ଜାତ
ଏକାକ୍ଷର ମନ୍ତ୍ର ମୁହିଁ କରିବି ଭକତ ।''

**ଏଲିଜି** – କୌଣସି ଘନିଷ୍ଠ ବ୍ୟକ୍ତିଙ୍କ ମୃତ୍ୟୁରେ ଯେଉଁ ଶୋକ କବିତା ଲେଖାଯାଏ ତାକୁ ଇଂରାଜୀ ସାହିତ୍ୟରେ ଏଲିଜି କୁହାଯାଇଥାଏ । ପାଶ୍ଚାତ୍ୟ ସାହିତ୍ୟରେ ବଂଶୀର ସ୍ୱର ସହ ଏ କବିତାକୁ ଗାନ କରାଯାଇଥାଏ । ଏ କବିତାର ପରିସର ମଧ୍ୟରେ ଆନନ୍ଦ ବା ଉଦ୍‌ବେଳନର ପ୍ରକାଶ, (ପ୍ରଥମ ପୁରୁଷରେ କଥୋପକଥନ) କାହାର ମରଣରେ ଦୁଃଖ ପ୍ରକାଶ ଇତ୍ୟାଦି ଅନ୍ତର୍ଭୁକ୍ତ ।

## ଐ

**ଐତିହ୍ୟ** – ପରମ୍ପରାଗତ ଉପଦେଶ, ବାକ୍ୟ, ପ୍ରମାଣ ବାକ୍ୟ, ପ୍ରବାଦ ବାକ୍ୟ, ସ୍ଥାପତ୍ୟ, କଳା, ସାହିତ୍ୟର ଇତିହାସକୁ ଐତିହ୍ୟ କୁହାଯାଏ ।

**ଐତିହାସିକ ଉପନ୍ୟାସ** – ଅତୀତ ଇତିହାସକୁ କଳ୍ପନାର ରଙ୍ଗରେ ରଞ୍ଜିତ କରି କାହାଣୀ ଭାବରେ ପରିବେଷଣ କରିବା ଐତିହାସିକ ଉପନ୍ୟାସର ଧର୍ମ । ବିଶ୍ୱସାହିତ୍ୟରେ ସାର୍ ୱାଲ୍‌ଟରସ୍କଟ୍ ଐତିହାସିକ ଉପନ୍ୟାସର ପ୍ରଧାନ ପ୍ରବର୍ତ୍ତକ । ଓଡ଼ିଆ ସାହିତ୍ୟରେ ପ୍ରଥମ ଐତିହାସିକ ଉପନ୍ୟାସ ଭାବରେ ଉମେଶ ଚନ୍ଦ୍ର ସରକାରଙ୍କ ରଚିତ ''ପଦ୍ମମାଳି'' ଉପନ୍ୟାସ ଐତିହାସିକ ଉପନ୍ୟାସଭାବେ ଧରାଯାଇଥାଏ । ପରବର୍ତ୍ତୀ ସମୟରେ ଫକୀରମୋହନ ''ଲଛମା'', ମୃତ୍ୟୁଞ୍ଜୟ ରଥଙ୍କ ''ଅର୍ଣ୍ଣପୂର୍ଣ୍ଣା'', କାହ୍ନୁଚରଣଙ୍କର 'ହା ଅନ୍ନ'', କାଳନ୍ଦୀ ପାଣିଗ୍ରାହୀଙ୍କର ''ମୁକ୍ତାଗଡ଼ର କ୍ଷୁଧା'', ସୁରେନ୍ଦ୍ର ମହାନ୍ତିଙ୍କର ''ନୀଳଶୈଳ'', ନୃସିଂହ ଚରଣ ପଣ୍ଡାଙ୍କର ''ଚଣ୍ଡାଶୋକ, ଧର୍ମାଶୋକ, ଖାରବେଳ'', ବିଭୁତି ପଟ୍ଟନାୟକଙ୍କ ''ସୁଲତାନା'' ପ୍ରଭୃତି ଉପନ୍ୟାସ ଓଡ଼ିଆ ଐତିହାସିକ ଉପନ୍ୟାସର ଧାରାକୁ ସମୃଦ୍ଧ କରିଛି ।

**ଐତିହାସିକ ନାଟକ** – ଅତୀତ ଇତିହାସର ଗୌରବମୟ କାହାଣୀକୁ ନାଟକର କଥାବସ୍ତୁ ଭାବେ ଗ୍ରହଣ କରି ଐତିହାସିକ ନାଟକ ରଚନା କରାଯାଏ । ଐତିହାସିକ ନାଟକରେ କିମ୍ବଦନ୍ତୀ ଓ କାଳ୍ପନିକତାର ଯେପରି ମିଶ୍ରଣ ଘଟିଥିବା ସମ୍ଭବ; ସେହିପରି କିମ୍ବଦନ୍ତୀମୂଳକ ନାଟକରେ ଐତିହାସିକତା ମଧ ପ୍ରଭାବବିସ୍ତାର କରିଥିବା ସମ୍ଭବ । ଗୋଦାବରୀଶ ମିଶ୍ରଙ୍କ 'ପୁରୁଷୋତ୍ତମ ଦେବ', 'ମୁକୁନ୍ଦଦେବ'; କାଳୀ ପଟ୍ଟନାୟକଙ୍କ 'ରକ୍ତମନ୍ଦାର', ମନୋରଞ୍ଜନ ଦାସଙ୍କ 'ବକ୍‌ସିଜଗବନ୍ଧୁ' ଓ ଭଞ୍ଜକିଶୋର ପଟ୍ଟନାୟକଙ୍କ 'ପ୍ରତାପରୁଦ୍ରଦେବ' ଓଡିଆ ସାହିତ୍ୟର ସ୍ମରଣୀୟ ଐତିହାସିକ ନାଟକ ।

**ଐତିହାସିକ ବାଦ** – ଇତିହାସ ଦର୍ଶନ ଉପରେ ଆଧାରିତ ଧର୍ମ, ଦର୍ଶନ, ଆଚାର, ଶାସ୍ତ୍ର, କଳା, ସଂସ୍କୃତି, ସାହିତ୍ୟର ସ୍ୱରୂପ ବ୍ୟାଖ୍ୟା କରିବାର ପ୍ରଣାଳୀକୁ ଐତିହାସିକ ବାଦ କୁହାଯାଏ । ସାହିତ୍ୟର ଐତିହାସିକ ବ୍ୟାଖ୍ୟାକୁ ବୁଝାଇଥାଏ ।

**ଐଶୀଚେତନା** – ମନୁଷ୍ୟର ଈଶ୍ୱର ବିଶ୍ୱାସ, ଆଧାତ୍ମିକ ଭାବ ସାହିତ୍ୟରେ ଐଶୀଚେତନା ଭାବରେ ପରିଚିତ । ବିବର୍ତ୍ତନର ପାହାଚରେ ମନୁଷ୍ୟ ସମସ୍ତ ପ୍ରାଣୀଜଗତଠାରୁ ଏହି ଐଶୀଚେତନା ନେଇ ଶ୍ରେଷ୍ଠତ୍ୱ ହାସଲ କରିଛି । ଓଡ଼ିଆ ସାହିତ୍ୟରେ ବୈଷ୍ଣବ, ଶୈବ, ଶାକ୍ତ, ଗାଣପତ୍ୟ, ସୌର, ମହିମା ଇତ୍ୟାଦି ଧର୍ମଧାରା ଇତ୍ୟାଦି ସାରସ୍ୱତ ଐଶୀଚେତନାର ଭିନ୍ନ ଭିନ୍ନ ବିଭବ ଭାବରେ ପରିଚିତ ।

# ଓ

**ଓଗାଳ** – 'ଓଗାଳିବା' ଶବ୍ଦରୁ ଓଗାଳ ଶବ୍ଦ ଆନୀତ । ଓଗାଳିବା ଶବ୍ଦ ବାଧାଦେବା ଅର୍ଥରେ ପ୍ରଯୁକ୍ତ । ପ୍ରଶ୍ନର ଉତ୍ତର ଦେଇ ନପାରିଲେ ଗୋଟିଏ ଦଳ ଅନ୍ୟକୁ ଓଗାଳିଥାଏ । ପ୍ରାଚୀନ ସାହିତ୍ୟେ ପ୍ରଶ୍ନୋତ୍ତର ଛଳରେ ଏହି ଓଗାଳ ଗୁଡ଼ିକ ରଚିତ ହୋଇଅଛି । ଦୁଇ ଦଳ ଗୋପାଳଙ୍କ ମଧ୍ୟରେ ଦୋଳଯାତ୍ରାର ଲଉଡ଼ି ଖେଳରେ ଓଗାଳ ବୋଲାଯାଇଥାଏ । ଏଥିରେ ନାନା ବ୍ରହ୍ମଜ୍ଞାନର ପ୍ରଶ୍ନ ରହିଅଛି ଯାହା ଓଡ଼ିଶୀ ବୈଷ୍ଣବଧର୍ମର ବୈଶିଷ୍ଟ୍ୟ ଅଟେ ।

**ଓଡ୍** – ଇଂରାଜୀ ସାହିତ୍ୟରେ ବଡ଼ ଗୀତି କବିତା ଓଡ୍ (Ode) ନାମରେ ପରିଚିତ । ଏହାର ବିଷୟବସ୍ତୁ ବିଶେଷ ଗୁରୁତ୍ୱ ପୂର୍ଣ୍ଣ ଓ ଅଭିବ୍ୟକ୍ତିର ସ୍ୱର ଅତ୍ୟନ୍ତ ଆନ୍ତରିକ । ପ୍ରତ୍ୟେକ ଓଡ଼ରେ ତିନୋଟି ଆଙ୍ଗିକ ବିଭାଗ ଥିଲା ଯଥା- ଷ୍ଟ୍ରୋଫି, ଆଣ୍ଟିଷ୍ଟ୍ରୋଫି ଓ ଇପୋଡ୍ ଏବଂ ଏହି ବିଭାଜନ କବିଙ୍କ ଇଚ୍ଛାନୁସାରେ ବି ହେଉଥିଲା । ଇଂରାଜୀ ରୋମାଣ୍ଟିକ କବିଙ୍କ ଓଡ୍ ବହୁତ ଲୋକପ୍ରିୟ ।

**ଓଡ଼ିଆ** – ଓଡ଼ିଶାର ଭାଷା, ଜାତି, ଲିପି ଓ ସାହିତ୍ୟ ବୁଝାଏ । ବହୁ ବିବର୍ତ୍ତନ ଦେଇ ଓଡ଼ିଆ ଲିପିର କ୍ରମବିକାଶ ଘଟିଛି । ସାରଳା ସାହିତ୍ୟର ଓଡ଼ିଆ ଲିପି ତତ୍ ପୂର୍ବବର୍ତ୍ତୀ ଓଡ଼ିଆ ଲିପି ଓ କଳିଙ୍ଗ ଲିପିର ସମନ୍ୱିତ ରୂପ । ଭାଷାତତ୍ତ୍ୱ ବିତ୍‌ଙ୍କ ମତ - କଳିଙ୍ଗ ଲିପି ଏକାଦଶ ଶତାବ୍ଦୀ ପର୍ଯ୍ୟନ୍ତ ପ୍ରଚଳିତ ଥିଲା ଓ ତାହା ପରେ ଭିନ୍ନ ଭିନ୍ନ ରୂପ ନେଇଥିଲା । ଏଣୁ ଅନୁମିତ ହୁଏ କଳିଙ୍ଗ ଲିପି ଏକାଦଶ ଶତାବ୍ଦୀପରେ ଓଡ଼ିଆ ଲିପି ସହିତ ମିଶି ନିଜର ଅସ୍ତିତ୍ୱ ହରାଇଥିଲା । ଓଡ଼ିଆ ଲିପିର ଗୋଟିଏ ରୂପ ଥିଲା କରଣୀ ଲିପି ଓ ଅନ୍ୟଟି ବ୍ରାହ୍ମଣୀ ଲିପି । କାଳିଙ୍ଗୀ ଭାଷା ମଧ୍ୟ ଓଡ଼ିଆ ଭାଷାରେ ମିଶି ନିଜର ଅସ୍ତିତ୍ୱ ହରାଇଥିବା ସମ୍ଭବ ବୋଲି ଅନୁମିତ ହୁଏ । ତେବେ ପଞ୍ଚଦଶ ଶତାବ୍ଦୀ ପର୍ଯ୍ୟନ୍ତ ଓଡ଼ିଆ ଲିପିର ସଂଧାନ ସେମିତି ପର୍ଯ୍ୟାପ୍ତ ନଥିଲା । ଭାଷା କ୍ଷେତ୍ରରେ ଅଶୋକଙ୍କ କଳିଙ୍ଗ ବିଜୟ ପରେ ମାଗଧୀ ଭାଷାର ପ୍ରଭାବ ପଡ଼ିଥିଲା ଏବଂ ତା'ଠାରୁ ଅଧିକ ସଂସ୍କୃତ ଭାଷାର ପ୍ରଭାବ ମଧ୍ୟ ପଡ଼ିଥିଲା । ସାରଳା ଦାସଙ୍କ ପର୍ଯ୍ୟନ୍ତ ଓଡ଼ିଆ ସଂସ୍କୃତ ଭାଷା ଆଧାରିତ ଥିଲା । ପ୍ରକୃତରେ ଓଡ଼ିଆ ଲିପି ପ୍ରାଚୀନ ଭାରତରେ ପ୍ରଚଳିତ ବ୍ରାହ୍ମୀ ନାମକ ଲିପିରୁ ପ୍ରବର୍ତ୍ତିତ ହୋଇ ଖ୍ରୀଷ୍ଟପୂର୍ବ ୩ୟ ଶତାବ୍ଦୀଠାରୁ ଖ୍ରୀଷ୍ଟାୟ ୧୬ ଶତାବ୍ଦୀ ପର୍ଯ୍ୟନ୍ତ ବିକାଶ ହୋଇ ଆଧୁନିକ ଲିପିରେ ପରିଣତ ହୋଇଛି । ଏହା ପ୍ରାଚୀନ ପ୍ରତ୍ନ-ପୂର୍ବଭାରତୀୟ ଲିପିର ପରବର୍ତ୍ତୀ ବିକାଶ ।

**ଓଡ଼ିଆ ସାହିତ୍ୟ** – ଇତିହାସ ଥିବା ଓଡ଼ିଆ ସାହିତ୍ୟ ଆରମ୍ଭ ହୋଇଥିଲା ପଞ୍ଚଦଶ ଶତାବ୍ଦୀ ଆରମ୍ଭରେ । କପିଳେନ୍ଦ୍ର ଦେବଙ୍କ ରାଜତ୍ୱ କାଳୀନ କବି ସାରଳା ଦାସଙ୍କ ଦ୍ୱାରା ସାମାଜିକ, ସାଂସ୍କୃତିକ, ଅର୍ଥନୈତିକ, ରାଜନୈତିକ ପଟ୍ଟ ପରିବର୍ତ୍ତନ ଭିତରେ ଓଡ଼ିଆ ଏକ ସମୃଦ୍ଧ

ସାହିତ୍ୟର ପରଂପରା ଉପରେ ପ୍ରତିଷ୍ଠିତ । ଯୁଗ ଦୃଷ୍ଟିରୁ ଏହା ମୋଟା ମୋଟି ପାଞ୍ଚ ଭାଗରେ ବିଭକ୍ତ କରାଯାଇଛି । (୧) ଆଦିଯୁଗ - ଖ୍ରୀଷ୍ଟୀୟ ୯ମ ଶତାବ୍ଦୀଠାରୁ ୧୪ଶ ଶତାବ୍ଦୀ । ଆଦି ଯୁଗର ସାହିତ୍ୟ ମୁଖ୍ୟତଃ ତିନୋଟି ରୂପରେ ଦେଖାଦିଏ ଯଥା (କ) ଲିଖିତ (ଖ) ମୌଖିକ (ଗ) ଅଭିଲେଖ (୨) ସାରଳା ଯୁଗ - ଖ୍ରୀଷ୍ଟୀୟ ୧୫ଶ ଶତାବ୍ଦୀ (୩) ପଞ୍ଚସଖା ଯୁଗ - ଖ୍ରୀଷ୍ଟୀୟ ୧୬ଶ ଶତାବ୍ଦୀଠାରୁ ଖ୍ରୀଷ୍ଟାବ୍ଦ ୧୬୫୦ ପର୍ଯ୍ୟନ୍ତ (୪) ରୀତିଯୁଗ - ଖ୍ରୀଷ୍ଟୀୟ ୧୬୫୦ଠାରୁ ଖ୍ରୀଷ୍ଟାବ୍ଦ ୧୮୮୦ ପର୍ଯ୍ୟନ୍ତ (୫) ଆଧୁନିକ ଯୁଗ - ଖ୍ରୀ: ୧୮୮୦ ଠାରୁ ଏ ପର୍ଯ୍ୟନ୍ତ । ପୁନଶ୍ଚ ଆଧୁନିକ ଯୁଗକୁ କେତେକ ଉପ ବିଭାଗରେ ବିଭକ୍ତ କରାଯାଇଥାଏ ଯଥା (କ) ରାଧାନାଥ ଯୁଗ୍ (ଖ) ସତ୍ୟବାଦୀଯୁଗ (ଗ) ସବୁଜଯୁଗ (ଘ) ପ୍ରଗତିଯୁଗ (ଙ) ଅତ୍ୟାଧୁନିକଯୁଗ । (ଓଡ଼ିଆ ସାହିତ୍ୟର ସଂକ୍ଷିପ୍ତ ପରିଚୟ) ।

**ଓଜଃଗୁଣ** – ଓଜଃ ର ଆକ୍ଷରିକ ଅର୍ଥ ହେଉଛି ତେଜ ବା ଦିପ୍ତୀ । କାବ୍ୟର ଅନ୍ତର୍ଗତ ଯେଉଁ ଗୁଣ ପାଠକ ମନରେ ଉତ୍ସାହ, ବୀରତା, ଆବେଶ, ଉଦ୍ଦୀପନା ଆଦି ଜାଗ୍ରତ କରିବାର କ୍ଷମତା ରଖିଥାଏ, ଏହାକୁ ଅଜଃଗୁଣ କୁହାଯାଏ । ଭରତ ମୁନିଙ୍କ ଅନୁସାରେ ଗାମ୍ଭୀର୍ଯ୍ୟପୂର୍ଣ୍ଣ ଭାବଯୁକ୍ତ ପଦ ଓଜଃଗୁଣ ସଂପନ୍ନ ହୋଇଥାଏ । ରୀତି ସାହିତ୍ୟରେ ଓଜଃଗୁଣ ସଂପନ୍ନ ପଦ ବିଶେଷ ପ୍ରୟୋଗ ହୋଇଥାଏ ।

**ଓଁ** – ଓଁକାର ମନ୍ତ୍ର ସାହିତ୍ୟର ପ୍ରଥମ ଶବ୍ଦ । ପ୍ରଣବ ଧ୍ୱନି । ପରଂବ୍ରହ୍ମ ସ୍ୱରୂପ । ଅ,ଉ,ମ ଏ ତିନୋଟି ଅକ୍ଷର ମିଶି 'ଓଁ' ହୋଇଛି । ଅ - ବିଷ୍ଣୁ, ଉ - ଶିବ ଓ ମ - ବ୍ରହ୍ମ । ଏହି ବିଜମନ୍ତ୍ରରେ ତ୍ରିଦେବଙ୍କ ନାମଥିବାରୁ ଏହା ମନ୍ତ୍ରର ପ୍ରଥମରେ ବ୍ୟବହୃତ ହୁଏ । ପ୍ରଥମେ ଓଁ ଉଚ୍ଚାରଣ ନକରି ବେଦମନ୍ତ୍ର ପଢ଼ିଲେ ତାହା ସିଦ୍ଧ ହୁଏ ନାହିଁ । 'ଅ' କାର ସୂର୍ଯ୍ୟ-ବୀଜ, 'ଉ'କାର ଚନ୍ଦ୍ର ଓ 'ମ' କାର ଅଗ୍ନୀ ବିଜ ବୋଲି ଶାସ୍ତ୍ରରେ ଅଛି । ଶାସ୍ତ୍ରରେ କୁହାଯାଇଛି -

ଅକାର ଚାପ୍ୟୁକାରଞ୍ଚ ମକାରଞ୍ଚ ପ୍ରଜାପତିଃ
ବେଦ ତ୍ରୟାତ୍ ନିରୁଦୂହତ୍ ଭୁର୍ଗୁବଃ ସ୍ୱରତୀ ଚ ।

ରକ୍ ବେଦରୁ 'ଅକାର', ଯଜୁବେଦରୁ 'କାର' ଓ ସାମବେଦରୁ 'ମ' କାର ଚୟନ କରି ଓଁ କାରର ସର୍ଜନା ପ୍ରଜାପତି ବ୍ରହ୍ମା କରିଥିଲେ ବୋଲି କଥିତ ଅଛି ।

# ଔ

**ଔଗ୍ର୍ୟ** – ସଂସ୍କୃତ ସାହିତ୍ୟ ତତ୍ତ୍ୱରେ ଔଗ୍ର୍ୟ ଏକ ସଂଚାରୀ ଭାବର ନାମ ।

**ଔଡ୍ରମାଗଧି ପ୍ରବୃତ୍ତି** – ପ୍ରାଚୀନ ଭାରତରେ ନାଟ୍ୟକଳା ପରିବେଷଣ ପାଇଁ ଚାରିଗୋଟି ଶୈଳୀର ପ୍ରବର୍ତ୍ତନ କରାଯାଇଥିଲା । ଯାହାକୁ ପ୍ରବୃତ୍ତି କୁହାଯାଉଥିଲା । ଯଥା - ଅବନ୍ତୀ, ଦାକ୍ଷିଣାତ୍ୟ, ପାଞ୍ଚାଳୀ ଓ ଔଡ୍ରମାଗଧୀ । ଅଙ୍ଗ, ବଙ୍ଗ, କଳିଙ୍ଗ, ପୌଣ୍ଡ୍ର ପ୍ରଭୃତିର ବେଶଭୂଷାର ବିକାଶ କ୍ରମକୁ ଔଡ଼ମାଗଧି ପ୍ରବୃତ୍ତି ବୋଲି କୁହାଯାଏ । ଉଡ୍ର ଏବଂ ମଗଧର ପାର୍ଶ୍ୱବର୍ତ୍ତୀ ଦେଶମାନଙ୍କର ବେଶବିନ୍ୟାସ ପ୍ରବୃତ୍ତି ହିଁ ଉଡ୍ରମାଗଧି ପ୍ରବୃତ୍ତି ।

**ଔଚିତ୍ୟ** – ସଂସ୍କୃତ ଅଳଙ୍କାର ଶାସ୍ତ୍ର ଅନୁସାରେ ରୀତିର ଏକ ପର୍ଯ୍ୟାୟ ହେଉଚି ଔଚିତ୍ୟ । ଅର୍ଥାତ୍ କାବ୍ୟର ଆତ୍ମତତ୍ତ୍ୱ ଅନୁସନ୍ଧାନ ପରମ୍ପରାରେ ଔଚିତ୍ୟକୁ କାବ୍ୟର ଆତ୍ମା ଭାବରେ ସ୍ୱୀକାର କରିବା ଔଚିତ୍ୟ ଚର୍ଚ୍ଚା ଭାବରେ ଖ୍ୟାତ । ଔଚିତ୍ୟ ବାଦର ପ୍ରବର୍ତ୍ତକ କ୍ଷେମନ୍ଦ୍ରଙ୍କ ମତରେ ''ଔଚିତ୍ୟ ହିଁ ସମସ୍ତ ରସସିଦ୍ଧ କାବ୍ୟର ଶେଷ ସୌନ୍ଦର୍ଯ୍ୟଦାୟକ ଜୀବନତତ୍ତ୍ୱ'''''ଔଚିତ୍ୟଂ ରସସିଦ୍ଧସ୍ୟ ସ୍ଥିରଂ କାବ୍ୟସ୍ୟ ଜୀବିତମ୍''। ତାଙ୍କ ମତରେ ଔଚିତ୍ୟ ହେଉଛି ''ଉଚିତଂ ପ୍ରାହୁର ଚାର୍ଯ୍ୟାଃ ସଦୃଶଂ କିଳ ଯସ୍ୟ ଯତ୍ / ଉଚିତସ୍ୟ ଚ ଯୋ ଭାବଃ ତ ଔଚିତ୍ୟଂ ପ୍ରଚକ୍ଷତଃ''। ସେ ଔଚିତ୍ୟକୁ ୨୮ ପ୍ରକାର କରି ପ୍ରତ୍ୟେକ ପ୍ରକାରର ସଂଜ୍ଞା ଓ ଉଦାହରଣ ଦେଲେ । ଏହିସବୁ ଔଚିତ୍ୟ ମଧ୍ୟରୁ ବ୍ୟକ୍ତ ଔଚିତ୍ୟ, ବାଚ୍ୟ ଔଚିତ୍ୟ, ବିଷୟ ଔଚିତ୍ୟ ଓ ରସ ଔଚିତ୍ୟ ମୁଖ୍ୟତଃ ପ୍ରଧାନ ଥିଲା । ୧ - ବ୍ୟକ୍ତ ଔଚିତ୍ୟ - ବକ୍ତାର ସ୍ୱଭାବ, ଅନୁକୂଳ ବକ୍ତବ୍ୟ ହେବା ଉଚିତ । ବକ୍ତା ଯାହା କହେ ସେଥିରେ ତାର ତନ୍ମୟତା ରହେ । ସେ ଜାଗତିକ ଅନୁଭୂତିକୁ ଆତ୍ମସାତ୍ କରି ସେସବୁକୁ ନିଜର କାବ୍ୟକଳାରେ ବିନ୍ୟସ୍ତ କରିବା ମଧ ବାଞ୍ଛନୀୟ । ଏପରି କାବ୍ୟରେ ଅସମାସ ବା ଅର୍ଦ୍ଧସମାସ ବିଶିଷ୍ଟ ବାକ୍ୟ ରହିବା ମଧ ଉଚିତ । ୨ - ବାଚ୍ୟ ଔଚିତ୍ୟ - ଏଠାରେ ବାଚ୍ୟର ଅର୍ଥ କମନୀୟ ବସ୍ତୁ, ଘଟଣା ବିନ୍ୟାସରୁ ବାଚ୍ୟର ସ୍ୱରୂପ ପ୍ରକାଶ ପାଇବା ଉଚିତ । ୩ - ବିଷୟ ଔଚିତ୍ୟ - ବିଷୟ ବ୍ୟାପକ ଅର୍ଥରେ ପ୍ରଯୁକ୍ତ । ଏଥିରୁ କାବ୍ୟର ପ୍ରକାର ଭେଦ ଯଥା - ଉତ୍ତମ କାବ୍ୟ, ମଧ୍ୟମ କାବ୍ୟ ଓ ଅଧମ କାବ୍ୟର ପରଚିୟ ମିଳେ । ୪ - ରସ ଔଚିତ୍ୟ - ରୀତିର ବିନ୍ୟାସ ରସାନୁକୂଳ ହେବା ଉଚିତ ।

ସାହିତ୍ୟରେ ଔଚିତ୍ୟ ବିଚାର ସଂସ୍କୃତ ସାହିତ୍ୟରେ ଯେପରି ଥିଲା, ଗ୍ରୀକ୍ ଓ ଲାଟିନ୍ ସାହିତ୍ୟରେ ମଧ ସେହିପରି ଥିଲା । କାରଣ ଏମାନଙ୍କ ମତରେ ସାହିତ୍ୟର ନିୟମ କାନୁନ ନଜାଣି ସାହିତ୍ୟ ରଚନା କଲେ ସାହିତ୍ୟ ଦୋଷଯୁକ୍ତ ହେବ । ଅବଶ୍ୟ ପରବର୍ତ୍ତୀ ସମୟରେ ଔଚିତ୍ୟ ବାଦର ବିଚାରରେ ବହୁ ପରିବର୍ତ୍ତନ ଆସିଛି ।

ଔପମ୍ୟ – ବୈଜ୍ଞାନିକ ଦୃଷ୍ଟିକୋଣରୁ ଅଳଙ୍କାର ଗୁଡ଼ିକୁ ଆଳଙ୍କାରିକରୁ ହୁଏ । ପ୍ରଥମେ ବାସ୍ତବ୍ୟ, ଔପମ୍ୟ, ଅତିଶୟ ଏବଂ ଶ୍ଳେଷମୂଳକ ଏହିପରି ଚାରିଭାଗରେ ବିଭକ୍ତ କରି ଧାରାବାହିକ ଆଲୋଚନାର ସୂତ୍ରପାତ କରିଥିଲେ । ଔପମ୍ୟଗର୍ଭ ଅଳଙ୍କାର ପ୍ରୟୋଗର ଏକ ଗୁରୁତ୍ୱପୂର୍ଣ୍ଣ ବିଭାଗ ।

ଔରସ ବର୍ଣ୍ଣ – ବ୍ୟାକରଣ ନିୟମ ଅନ୍ତର୍ଗତ । ଭିନ୍ନ ଭିନ୍ନ ବର୍ଣ୍ଣ ଶରୀର ଅଭ୍ୟନ୍ତରସ୍ଥ ଭିନ୍ନ ଭିନ୍ନ ସ୍ଥାନରୁ ଉଚ୍ଚାରିତ ହୁଅନ୍ତି । ଯଥା - ଉରଃ, କର୍ଣ୍ଣ, ମୂର୍ଦ୍ଧା, ଜିହ୍ୱାମୂଳ, ଦାନ୍ତ, ନାସିକା, ଓଷ୍ଠ୍ୟ ଓ ତାଳୁ । ହ କାର ଯେତେବେଳେ ଙ, ଞ, ଡ଼, ଢ଼, ଷ, ର, ଳ, ଓ୍ୱ ସହିତ ଯୁକ୍ତ ହୁଏ, ସେତେବେଳେ ଏହା ଉରଃ ସ୍ଥଳରୁ ଉଚ୍ଚାରିତ ହୁଏ । ଏଣୁ ସେତେବେଳେ ଏହା ଔରସ ବର୍ଣ୍ଣ ।

ଔତ୍ସୁକ୍ୟ – ପ୍ରଚଳିତ ୩୩ଶ ଟି ସଂଚାରୀଭାବ ମଧ୍ୟରୁ ଅନ୍ୟତମ । ଅଗ୍ନିପୁରାଣରେ ଏହି ସଂଚାରୀଭାବର ପରିଭାଷା ରହିଛି । ମନର ଏହି ଅସ୍ଥିର ଅବସ୍ଥା, ଇଷ୍ଟ ସିଦ୍ଧି ପ୍ରାପ୍ତିର ଇଚ୍ଛାର କାରଣ ଅଟେ । ଭରତମୁନି ଏହା ବିଭାବ ଓ ଅନୁଭାବକୁ ପ୍ରିୟଜନଙ୍କ ବିୟୋଗରେ ତାଙ୍କର ସ୍ମରଣ ଇତ୍ୟାଦି ଉଦ୍ଦୀପନାର ଭାବ ଜାଗ୍ରତ ହୁଏ । ଦୀର୍ଘଶ୍ୱାସ, ଚିନ୍ତାମଗ୍ନ, ନିଦ୍ରା ଏବଂ ଶୟନର ଅଭିଳାଷ ହିଁ ଏହି ଭାବର ଅଭିବ୍ୟକ୍ତି ।

## କ

**କର୍ତ୍ତା** – ବାକ୍ୟ ମଧ୍ୟରେ କର୍ମ ଯାହାଦ୍ୱାରା ସଂପାଦନ ହୁଏ କିମ୍ବା ଯେ କର୍ମକରେ ବା କରାଏ, ସେହି ପଦକୁ କର୍ତ୍ତା କୁହାଯାଏ ।

କର୍ମ - କର୍ତ୍ତା ଯାହାକୁ ନେଇ ବା ଯାହା କରିବାକୁ ଯାଏ ସେ କର୍ମ ।

କ୍ରିୟା - କର୍ତ୍ତା ଯାହା କରେ ସେ କ୍ରିୟାପଦ ।

**କଥା** – ଗଦ୍ୟକାବ୍ୟ ଦୁଇ ଭାଗରେ ବିଭକ୍ତ । ଯଥା- କଥା ଓ ଆଖ୍ୟା । ବାଣଭଟ୍ଟଙ୍କ ମତରେ କୌଣସି ପ୍ରାଚୀନ ଆଖ୍ୟାନକୁ କେନ୍ଦ୍ରକରି ଯଦି କବି ନିଜର ପ୍ରଚଣ୍ଡ ପ୍ରତିଭା ସ୍ପର୍ଶରେ ତାହାକୁ ଗୋଟିଏ ଅନବଦ୍ୟ ଗଦ୍ୟକାବ୍ୟରେ ରୂପପ୍ରଦାନ କରନ୍ତି, ସେତେବେଳେ ତାହା 'କଥା'ରେ ପରିଣତ ହୁଏ । ଏଣୁ କଥା ସମ୍ପୂର୍ଣ୍ଣ କଳ୍ପନା ମୂଳକ କଳାକୃତି ହେବାସ୍ଥଳେ ଆଖ୍ୟାୟିକା ଐତିହାସିକ ଘଟଣାକୁ କେନ୍ଦ୍ରକରି କଥା ଗଢ଼ିଉଠେ ।

ସାଂପ୍ରତିକ ସମସ୍ତ ଗଳ୍ପ, କ୍ଷୁଦ୍ରଗଳ୍ପ, ଗଦ୍ୟାତ୍ମକ କାହାଣୀ "କଥା" ସାହିତ୍ୟର ଅନ୍ତର୍ଗତ ।

**କଥାକାବ୍ୟ** – ପ୍ରାଚୀନ କାବ୍ୟକୁ ଦୁଇଟି ବର୍ଗରେ ରଖାଯାଏ - ପ୍ରବନ୍ଧ ଓ କଥାକାବ୍ୟ । ସାହିତ୍ୟର ଆଦ୍ୟରୂପ ଥିଲା ଗାଥାଚିତ୍ର ବା କାହାଣୀ କାବ୍ୟ । ପୁରାଣରେ ବର୍ଣ୍ଣିତ କାହାଣୀ ହେଉ କି ମନଗଢ଼ା କାହାଣୀ ହେଉ, କାହାଣୀର ଗଦ୍ୟାତ୍ମକ ଓ ପଦ୍ୟାତ୍ମକ ରୂପ କଥାକାବ୍ୟ । କଥାକାବ୍ୟ ଦୁଇ ପ୍ରକାର - ଗଦ୍ୟବନ୍ଧ କଥାକାବ୍ୟ ଓ ପଦ୍ୟବନ୍ଧ କଥାକାବ୍ୟ । କଥାକାବ୍ୟର ତିନୋଟି ରୂପ - ଗଦ୍ୟରେ ରଚିତ କାହାଣୀ, ପଦ୍ୟରେ ରଚିତ କାହାଣୀ ଓ ଗଦ୍ୟ-ପଦ୍ୟରେ ରଚିତ କାହାଣୀ କାବ୍ୟ ।

**କଥାବସ୍ତୁ** – ଯେଉଁ କାହାଣୀ ଉପରେ ନାଟକିଟିଏ ରଚିତ ହୋଇଥାଏ, ତାହା ସେହି ନାଟକର କଥାବସ୍ତୁ । କଥାବସ୍ତୁ ହେଉଛି ନାଟକର ପ୍ରଧାନ ଉପାଦାନ । ଏହି କଥାବସ୍ତୁ ଭାବପ୍ରଧାନ, ଘଟଣା ପ୍ରଧାନ ଅଥବା ଭାବନା ପ୍ରଧାନ ହୋଇପାରେ । ବିଷୟବସ୍ତୁ ଦୃଷ୍ଟିରୁ ନାଟକ (କ) ପୌରାଣିକ (ଖ) ଐତିହାସିକ (ଗ) ସାମାଜିକ (ଘ) ରାଜନୈତିକ (ଙ) ଉଦ୍ଭଟ ନାଟକ ଏହିପରି ପାଞ୍ଚ ଭାଗରେ ବିଭକ୍ତ କରାଯାଇପାରେ । ଆରିଷ୍ଟଟଲ୍‌ଙ୍କ ମତରେ କଥାବସ୍ତୁ ନାଟକର ଆତ୍ମା । ଏହି ନାଟକୀୟ କଥାବସ୍ତୁର ଆରମ୍ଭ, ଗତିଶୀଳ ମଧ୍ୟ ଏକ ନାଟକୀୟ ପରିସମାପ୍ତି ବା ଅନ୍ତଃ ରହିବା ଉଚିତ ।

**କବଚ** – ସାଧାରଣ ଜନତା ତଥା ଭକ୍ତମାନଙ୍କ ନିମିତ୍ତ ଉଦ୍ଦିଷ୍ଟ ପ୍ରାଚୀନ ଗୀତିକା । ସଂସ୍କୃତ ତନ୍ତ୍ର ଶାସ୍ତ୍ରରେ ନାନା ଦୁର୍ବିପାକ ଓ ଆପଦ ବିପଦରୁ ରକ୍ଷା ପାଇବାପାଇଁ ସଂସ୍କୃତ ଶ୍ଳୋକ ସହିତ ଯନ୍ତ୍ର ଗୁଡ଼ିକୁ କବଚ ନାମରେ ଅଭିହିତ ହେଉଥିଲା । ସେହିପରି ପ୍ରାଚୀନ ଓଡ଼ିଆ

ସାହିତ୍ୟରେ ଓଡ଼ିଆ ଭାଷାରେ ବିଭିନ୍ନ ତନ୍ତ୍ର, ମନ୍ତ୍ର, ଯନ୍ତ୍ର ଓ କବଚ ବଳରେ ସାଧାରଣ ଭକ୍ତଟିଏ ନାନା ଆପଦରୁ ରକ୍ଷା ପାଇବା ସଙ୍ଗେ ସଙ୍ଗେ ଅସାଧ୍ୟ କାର୍ଯ୍ୟ ସାଧନ କରିପାରୁଥିଲେ ।

**କମ୍ବଳପାଦ** – ଚଉରାଶୀ ସିଦ୍ଧାଚାର୍ଯ୍ୟଙ୍କ ମଧ୍ୟରୁ ଅନ୍ୟତମ । ତାରାନାଥଙ୍କ ବିବରଣୀ ଅନୁଯାୟୀ କମ୍ବଳପାଦଙ୍କ ଜନ୍ମସ୍ଥାନ ଥିଲା ଓଡ଼ିବିସା ବା ଓଡ଼ିଶା ଓ ସେ ଥିଲେ ଜଣେ ରାଜପୁତ୍ର । ସେ ସିଦ୍ଧାଚାର୍ଯ୍ୟ ବୌଦ୍ଧଘଣ୍ଟଙ୍କ ଦ୍ୱାରା ବୌଦ୍ଧଧର୍ମରେ ଦୀକ୍ଷିତ ହେଲେ । ତ୍ରିପିଟକରେ ସେ ବେଶ୍ ଦକ୍ଷତା ଅର୍ଜନ କରିଥିଲେ । ଧ୍ୟାନସିଦ୍ଧ ସମୟରେ ଜଣେ ଶ୍ମଶାନ ଡାକିନୀ କବଳରୁ ରକ୍ଷା ପାଇବା ପାଇଁ ନିଜକୁ ଖଣ୍ଡିଏ କମ୍ବଳରେ ପରିଣତ କରି ଦେଇଥିବାରୁ ସେ କମ୍ବଳପାଦ ନାମରେ ପରିଚିତ ଥିଲେ । ସମ୍ବଳର ରାଜା ବଜ୍ରଯାନର ପ୍ରବର୍ତ୍ତକ ଇନ୍ଦ୍ରଭୂତି ଥିଲେ କମ୍ବଳପାଦଙ୍କ ଶିଷ୍ୟ । 'ତାଞ୍ଜୁର' ରେ ହେରୁକ ସାଧନା ସମ୍ବନ୍ଧୀୟ ଛଅଗୋଟି ଗ୍ରନ୍ଥର ନାମୋଲ୍ଲେଖ ଅଛି । କମ୍ବଳଗୀତିକା, ଆର୍ତ୍ତସମୟନାମ ପଞ୍ଜିକା ପ୍ରଭୃତିକୁ ସେ ରଚନା କରିଥିଲେ । ସରହପାଦଙ୍କ ଦୋହାକୋଷରେ ଅଦ୍ୱୟ ବଜ୍ରକୃତ ଟୀକାରେ କମ୍ବଳପାଦଙ୍କ କେତେକ ସଂସ୍କୃତ ରଚନାଂଶ ଉଦ୍ଧୃତି ହୋଇଅଛି । ଚର୍ଯ୍ୟାଗୀତି କୋଷରେ ୮ମ ସଂଖ୍ୟକ ଗୀତିକାଟି ତାଙ୍କ ଦ୍ୱାରା ରଚିତ ।

**କରଣ ଲିପି** – ଲିଖନ କାର୍ଯ୍ୟର ବିବର୍ତ୍ତନ ମଧ୍ୟରେ ଲିଖନ ପ୍ରଣାଳୀକୁ ସହଜ ସରଳ ଓ କ୍ଷିପ୍ର କରିବା ସହିତ ଇଂରାଜୀ ଲେଖିବା ରୀତିରେ ଓଡ଼ିଆ ଲେଖିବା ରୀତି ଅନୁସୃତ ହେବାପାଇଁ ଓଡ଼ିଆ ଲିପିରେ କେତେକ ପରିବର୍ତ୍ତନ ଅଣାଗଲା । ଏହି ପରିବର୍ତ୍ତିତ ଲିପି 'କରଣୀ ଅକ୍ଷର' ନାମରେ ଓଡ଼ିଶାରେ ଜଣାଶୁଣା । ଏହା କେବଳ ତଦାନୀନ୍ତନ ଶାସନ କାର୍ଯ୍ୟରେ ସାହାଯ୍ୟ କରୁଥିବା ନକଲକାରୀଙ୍କ ମଧ୍ୟରେ ସୀମିତ ଥିଲା ।

**କରୁଣ ରସ** – ସାହିତ୍ୟରେ ରସ ସିଦ୍ଧାନ୍ତ ଅନୁଯାୟୀ ଏକ ରସର ନାମ । ଏଥିରେ କୌଣସି ମୃତ ବନ୍ଧୁ ବା ସମ୍ବନ୍ଧୀ ଅଥବା କୌଣସି ଅତ୍ୟନ୍ତ ଦୀନ ହୀନ ବ୍ୟକ୍ତି ଆଲମ୍ବନ । ଦାହାଦି କ୍ରିୟା ଅଥବା ଦୁଃସ୍ଥ ବ୍ୟକ୍ତିର ଜୀବନ ବିଷୟକ କଥାର ଶ୍ରବଣାଦି ଉଦ୍ଦୀପନ । ଭୂମିରେ ଛେଚି ହୋଇ ପଡ଼ିଯିବା, ଭାଗ୍ୟନିନ୍ଦା, କରିବା, ବିଳାପ କରିବା, ଦୀର୍ଘଶ୍ୱାସ ଛାଡ଼ିବା ଇତ୍ୟାଦି ଅନୁଭାବ । ନିର୍ବେଦ, ମୋହ, ଅପସ୍ମାର, ବିଷାଦ, ଜଡ଼ତା, ଦୀନତା, ଉଦାସୀନ, ଗ୍ଲାନି ସଂଚାରୀ ଭାବ । ସ୍ଥାୟୀଭାବ ଶୋକ । ଉଦାହରଣ :

ହା ନାଥ, ଉଚ୍ଚାରି ଦେବୀ ବ୍ୟାକୁଳେ କୋମଳେ
ଅବସରେ ବସୁ ବସୁ ବସୁନ୍ଧରା ତଳେ
ସଂଜ୍ଞା ବିରୋହିତ ହୋଇ ପଡ଼ିଲେ ଉତାନେ
ନଥିଲେ ଧରିବା ପାଇଁ କେହି ସନ୍ନିଧାନେ । (ତପସ୍ୱିନୀ)

**କରୁଣ ବିପ୍ରଲମ୍ଭ** – ଏହା ବିପ୍ରଲମ୍ଭ ଶୃଙ୍ଗାରର ଅନ୍ତର୍ଭୁକ୍ତ । ନାୟକର ମୃତ୍ୟୁ ହୋଇଥିଲେ ମଧ୍ୟ ଯେଉଁଠି ଦୈବବାଣୀବଶତଃ ପୁନର୍ମିଳନର ସମ୍ଭାବନା ହେତୁ ନାୟିକାର ଅନୁରାଗ ବର୍ଣ୍ଣିତ ହୋଇଥାଏ; ସେଠାରେ କରୁଣ ବିପ୍ରଲମ୍ଭ ଶୃଙ୍ଗାର ହୁଏ ।

**କଳସା** – ପ୍ରାଚୀନ ସାହିତ୍ୟରେ ଗୋଟିଏ ନିର୍ଦ୍ଦିଷ୍ଟ ଶ୍ରେଣୀର ରଚନାର ନାମ । କେତେକଙ୍କ ମତରେ ବଙ୍ଗଳା 'କଡ଼ଚା' ଭଳି ଓଡ଼ିଆ କଳସା ଏକ ପ୍ରକାର ଚଉତିଶା ପର୍ଯ୍ୟାୟର ଲେଖା । କଳସା ଏକ ରାଗର ନାମ ନୁହେଁ । କିନ୍ତୁ ଏହାର ଲୋକପ୍ରିୟତା ହେତୁ ପରବର୍ତ୍ତୀ କାଳରେ କେତେକ ଚଉତିଶା ଓ ଛାନ୍ଦ କଳସା ରୂପରେ ବୋଲାଯାଏ । ବଷା ଦାସଙ୍କ 'କଳସା ଚଉତିଶା' ଏକ ଅମ୍ଳାନ କୃତି ।

**କଳହଂସକେଦାର** – ଏହା ଏକ ବୃତ୍ତ ବା ଛନ୍ଦର ନାମ । ଏହାର ଚାରିପାଦରେ ଏକ ପଦ ହୁଏ । ପ୍ରଥମ ପାଦର ପ୍ରାନ୍ତ ବର୍ଣ୍ଣର ସହ ଦ୍ୱିତୀୟ ପାଦର ପ୍ରାନ୍ତ ବର୍ଣ୍ଣଟିର ଓ ତୃତୀୟ ପାଦର ପ୍ରାନ୍ତ ବର୍ଣ୍ଣ ସହ ଚତୁର୍ଥପାଦର ପ୍ରାନ୍ତ ବର୍ଣ୍ଣର ମେଳ ଥାଏ । ପ୍ରତ୍ୟେକ ପାଦର ସପ୍ତମ ଓ ଶେଷ ଅକ୍ଷର ଉପରେ ଯତି ପଡ଼େ । ଉଦାହରଣ –

ନବୀନ ଯୁବାଜନ'ସମ ପ୍ରଫୁଲ୍ଲ
ଦିଶୁଥିଲେ ଦ୍ରୁମ' କେତେ ମଞ୍ଜୁଳ
ଏବେ କିପାଁଇ ତେଜି' ସେ ଦିବ୍ୟ ଦେହ
ଏ ଦୀନ ହୀନ ବେଶେ' କରୁଛ ସ୍ନେହ ।

**କଳ୍ପ** – କଳ୍ପ ସୂତ୍ରର ବର୍ଣ୍ଣନା ବେଦର ପୂରକ ସାହିତ୍ୟରେ କରାଯାଇଛି । କଳ୍ପସୂତ୍ରରେ ଯଜ୍ଞ-ଯାଗ ସଂସ୍କାର କରିବା ବିଧି ଗୁଡ଼ିକର ବିବରଣୀ ରହିଛି । ବେଦାଙ୍ଗ ଦୃଷ୍ଟିରୁ କଳ୍ପସୂତ୍ରରେ ଅଧିକ ମହତ୍ୱର ବ୍ୟବସ୍ଥା ଏହି ଯେ ଯାହାର ପ୍ରୟୋଗ ସାର୍ବଜନୀନ ଯଜ୍ଞଯାଗାଦିରେ ହୋଇଥାଏ । ଏଥିରେ ବର୍ଣ୍ଣାଶ୍ରମ ଧର୍ମର ଉପଯୋଗ ମଧ୍ୟ ମିଶି ରହିଛି ।

**କଳ୍ପସୂତ୍ର** – ବୈଦିକ ବିଧି ଲିପିବଦ୍ଧ ହୋଇଥିବା ଗ୍ରନ୍ଥ ବା ବ୍ୟବସ୍ଥା ଶାସ୍ତ୍ରକୁ କଳ୍ପସୂତ୍ର ଭାବେ କଥିତ ।

**କଳା** – କାମଶାସ୍ତ୍ର ଅନୁଯାୟୀ କଳା ୬୪ ଭାଗରେ ବିଭକ୍ତ । ସ୍ତ୍ରୀମାନେ ଏହା ଉତ୍ତମଭାବେ ଜାଣିବା ଆବଶ୍ୟକ । ୬୪ କଳାର ନାମ ଯଥା – ଗୀତ, ବାଦ୍ୟ, ନୃତ୍ୟ ନାଟକାଭିନୟ, ଆଲେଖ୍ୟ ବା ଚିତ୍ରଣ, ଚିତା ଲେଖା, ଚାଉଳ ଓ ଫୁଲରେ ଚିତ୍ର ରଚନା, ପୁଷ୍ପାସ୍ତରଣ, ଦଶନବସନାଙ୍ଗରାଗ, ମଣି ଭୂମିକା, ଶୟନ ରଚନା, ଉଦକ ବାଦ୍ୟ (ଜଳତରଙ୍ଗ ବାଦ୍ୟ), ଉଦକଘାତ (ସୁବାସିତ ଜଳସେଚନ), ମାଲ୍ୟଗ୍ରଥନ, କେଶ ଶେଖର ପୀଡ ଯୋଜନ (ମୁଣ୍ଡରେ ଫୁଲ ସଜାଇବା), ନେପଥ୍ୟଯୋଗ (ଦେଶ କାଳ ପାତ୍ର ଅନୁସାରେ ଭୂଷଣ

ପରିଧାନ), କର୍ଣ୍ଣ ପତ୍ର ଭଙ୍ଗ(କାନକୁ କେଶଦ୍ୱାରା ଗୋପିତ କରିବା), ସୁଗନ୍ଧଯୋଜନ, ଭୂଷଣ, ଇନ୍ଦ୍ରଜାଲ, କୌଚୁମାର ଯୋଗ (ଅସୁନ୍ଦରକୁ ସୁନ୍ଦର କରିବା), ହସ୍ତ ଲାଘବ, ନାନା ପ୍ରକାର ଶାକ ବ୍ୟଞ୍ଜନାଦି ପ୍ରସ୍ତୁତିକରଣ, ପ୍ରପାନକ ପ୍ରସ୍ତୁତିକରଣ, ସୂଚୀକର୍ମ, ସୂତ୍ରକର୍ମ, ପ୍ରହେଳିକା ପ୍ରତିମାଳା ଓ ଶ୍ଳୋକାନ୍ତ ଆବୃତ୍ତି, ଦୁର୍ବାଚକ ଯୋଗ, (କଠିନ ଶବ୍ଦ ବା ବାକ୍ୟର ତାତ୍ପର୍ଯ୍ୟ ବାହାର କରିବା), ପୁସ୍ତକ ବାଚନ, ନାଟକାଖ୍ୟାୟକାଦର୍ଶନ, କାବ୍ୟ ସମସ୍ୟା ପୂର୍ତ୍ତି, ବେତରେ ପଟୀ ଓ ଖଟରେ ଲେବାନ ଆଦି ବୁଣିବା, ତର୍କ କର୍ମ, ବଢ଼େଇ କାମ, ଗୃହ ନିର୍ମାଣ ।

**କଳିଙ୍ଗ ଲିପି** – କଳିଙ୍ଗର ଗଙ୍ଗବଂଶୀୟ ରାଜାମାନେ ଖ୍ରୀଷ୍ଟପର ୧୧ଶ ଶତାବ୍ଦୀ ପର୍ଯ୍ୟନ୍ତ ବ୍ୟବହାର କରୁଥିବା ପେଟିକା ଶୀର୍ଷଲିପି ଉଭୟ ଉତ୍ତର ଭାରତୀୟ ଓ ଦକ୍ଷିଣ ଭାରତୀୟ ଲିପିର ସମନ୍ୱୟରେ ଆତ୍ମପ୍ରକାଶ କରିଥିଲା । ଏହାକୁ କଳିଙ୍ଗ ଲିପି କୁହାଯାଏ । ଅକ୍ଷରର ସୌନ୍ଦର୍ଯ୍ୟ ବୃଦ୍ଧି ପାଇଁ ପରବର୍ତ୍ତୀ ବ୍ରାହ୍ମୀଲିପି ର ଚୂଳ ସଂଯୋଗ ସହ ଆକୃତିଗତ ପରିବର୍ତ୍ତନ ଏ ଲିପି ଲାଭ କରିଥିଲା ।

**କବି** – କବି ହେଉଛି କାବ୍ୟକର୍ତ୍ତା । ଯେ କାବ୍ୟ କବିତା ରଚନା କରିପାରେ ସେ କବି । ଭାରତୀୟ ବ୍ୟୁତ୍ପତ୍ତି ନିର୍ଣ୍ଣୟରେ 'କବି' ଶବ୍ଦର ବ୍ୟୁତ୍ପତ୍ତି କରାଯାଉଥିଲା - ''କୁତଂ ଶବ୍ଦେ କବତେ ଇତି କବିଃ'' ଏବଂ ''ସଙ୍ଖୋବାଦ ପଣ୍ଡିତଃ କବିଃ''। କବି କ୍ରାନ୍ତଦର୍ଶୀ ''କଦୟ କ୍ରାନ୍ତି ଦର୍ଶନଃ''। ''ଅନନ୍ତ ମଦୟ କବିଃ'' କବି ଅନନ୍ତ ଓ ଅବ୍ୟୟ । କାଳଜୟୀ କାବ୍ୟ ସୃଷ୍ଟି ପାଇଁ କବି ପାଖରେ ଥାଏ ଉଦାତ୍ତ ଚିନ୍ତାଶକ୍ତି, ଉଦାମ ଆବେଗ, ରୂପ ସୃଷ୍ଟିପାଇଁ କ୍ଷମତା, ଉଦାତ୍ତ ଶୈଳୀ, ମହତ୍ ବିଷୟ ନିର୍ବାଚନ ଆଦି । କାବ୍ୟ ମୀମାଂସାରେ କବିଙ୍କୁ ତିନୋଟି ଶ୍ରେଣୀରେ ବିଭକ୍ତ କରାଯାଇଛି । ଯଥା - (୧) ସାରସ୍ୱତ (ପୂର୍ବଜନ୍ମର ସଂସ୍କାରବଶତଃ) (୨) ଆଭ୍ୟାସିକ (ଇହଜନ୍ମର ଅଭ୍ୟାସବଶତଃ) (୩) ଔପଦେଶିକ (ତନ୍ତ୍ର ମନ୍ତ୍ରବଶତଃ) । ପୁଣି କାବ୍ୟକୃତିର ଆତ୍ମିକ ବିଚାରରେ କବିଙ୍କୁ ଆଠଟି ବର୍ଗରେ ରଖିଛନ୍ତି । ଯଥା (୧) ରଚନା କବି (ପଦ ସଂଯୋଜନାରେ ନିପୁଣ) (୨) ଶବ୍ଦକବି (ଶବ୍ଦ ପ୍ରୟୋଗରେ ଦକ୍ଷ) (୩) ଅର୍ଥକବି (ଅର୍ଥଗୌରବ ସ୍ରଷ୍ଟା) (୪) ଅଳଙ୍କାର କବି (ଅଳଙ୍କାର ପ୍ରୟୋଗରେ ଦକ୍ଷ) (୫) ଉକ୍ତିକବି (ଉକ୍ତିରେ ବୈଚିତ୍ର୍ୟ ସ୍ରଷ୍ଟା) (୬) ରସକବି (ରସ ନିର୍ବାହରେ ନିପୁଣ) (୭) ମାର୍ଗକବି (ରୀତିବାଦୀ) (୮) ଶାସ୍ତ୍ରାର୍ଥ କବି (ଶାସ୍ତ୍ରୀୟ ଅର୍ଥ ଯୋଜନାରେ ନିପୁଣ) ଇଂରାଜୀରେ "Poets are unacknowledged lagislators of the world" ବୋଲି କଥିତ ଅଛି । ଭାରତୀୟ ସାହିତ୍ୟରେ କବି ପ୍ରଜପତିଙ୍କ ସମକକ୍ଷ । ''ଅପାରେ କାବ୍ୟ ସଂସାରେ କବିରେବ ପ୍ରଜାପତିଃ''।

**କବି କୌଶଳ** – ଅଳଙ୍କାର ଶାସ୍ତ୍ରରେ ବକ୍ରୋକ୍ତିକୁ କବି କୌଶଳ ଓ କବି ବ୍ୟାପାର ନାମରେ ନାମିତ କରାଯାଇଛି । କବିତ୍ୱପୂର୍ଣ୍ଣ ଦକ୍ଷତା ଦ୍ୱାରା ପରିକଳ୍ପିତ ଚମତ୍କାରପୂର୍ଣ୍ଣ ରଚନାବିନ୍ୟାସ ରୀତିକୁ ବକ୍ରୋକ୍ତି କୁହାଯାଏ । ବକ୍ରୋକ୍ତିରେ ବିଦଗ୍ଧତା ବା କୁଶଳତା, କବିତ୍ୱପୂର୍ଣ୍ଣ ଦକ୍ଷତା ଓ ଭଙ୍ଗୀକୃତ ବିଚିତ୍ରତା ଇତ୍ୟାଦି କାବ୍ୟରସ ବ୍ୟାପାର ବିନ୍ୟାସ ହୋଇଥିବାରୁ ଏହାକୁ କବି କୌଶଳ କୁହାଯାଏ । ଏହାର ପ୍ରବର୍ତ୍ତକ କୁନ୍ତକ ।

**କବିଚନ୍ଦ୍ର** – କବି କାଳୀଚରଣ ପଟ୍ଟନାୟକ କବିଚନ୍ଦ୍ର ଭାବରେ ପରିଚିତ । ୧୮୯୮ ମସିହା ଡିସେମ୍ବର ମାସ ୨୩ ତାରିଖରେ କଟକ ଜିଲ୍ଲା ବାଙ୍କି ସବ୍‌ଡ଼ିଭିଜନର ଖମାରଙ୍ଗ ଗ୍ରାମରେ ତାଙ୍କର ଜନ୍ମ । କାଳୀଚରଣଙ୍କ ପିତାଙ୍କ ନାମ ଥିଲା ଦୁର୍ଗାଚରଣ ଓ ମାତାଙ୍କ ନାମ ଥିଲା ରାଧାମାଳୀ । ଗଜପତି ରାମଚନ୍ଦ୍ର ଦେବ, କାଳୀଚରଣ ପଟ୍ଟନାୟକଙ୍କୁ କବିଚନ୍ଦ୍ର ଉପାଧି ଦେଇଥିଲେ । କାଳୀଚରଣ ନିଜ ପ୍ରତିଭାପାଇଁ ନାଟ୍ୟାଚାର୍ଯ୍ୟ ଏବଂ ଡକ୍ଟରେଟ୍ ଉପାଧି ମଧ୍ୟ ପାଇଥିଲେ । କବିଚନ୍ଦ୍ରଙ୍କ ରଚନା ଭିତରେ ଗୀତଗୋବିନ୍ଦ, ଭାତ, ଚକ୍ରୀ, ଗାର୍ଲସ୍କୁଲ୍, ଜୟଦେବ ଇତ୍ୟାଦି ନାଟକ ପ୍ରଧାନ । ଏହା ବ୍ୟତିତ ସେ ଶିଶୁ ସାହିତ୍ୟ, ଜୀବନୀ, ଉପନ୍ୟାସ, ଆଲୋଚନା, ଅନୁବାଦରେ ତାଙ୍କର ଅସାଧାରଣ ବିପ୍ତତି ଥିଲା । ସେ ମଧ୍ୟ ସଙ୍ଗୀତଜ୍ଞ, ଅଭିନେତା, ଗୀତକାର ଓ ନିର୍ଦ୍ଦେଶକ ଥିଲେ । ୧୯୭୮ ମସିହା ଜୁଲାଇ ୨୪ ତାରିଖରେ ମୃତ୍ୟୁବରଣ କରିଥିଲେ ।

**କବିତ୍ୱ** – କବି ପ୍ରତିଭା । ଏହା କବିର ଉଦାତ୍ତ ଚିନ୍ତାଶକ୍ତି, ଉଦ୍ଦାମ ଆବେଗ, ରୂପସୃଷ୍ଟି ପାଇଁ କ୍ଷମତା, ଉଦାତ୍ତ ଶୈଳୀ ତଥା ମହତ୍ ବିଷୟ ନିର୍ବାଚନ ପାଇଁ ପ୍ରଖର ଚିନ୍ତାଶକ୍ତି ଓ ତ୍ରିକାଳ ଦୃଷ୍ଟିକୁ ବୁଝାଏ ।

**କବିତା** – କବିତ୍ୱମୟ ପ୍ରାଣର ସ୍ୱତଃସ୍ଫୁର୍ତ୍ତ ଅଭିବ୍ୟକ୍ତି ହିଁ କବିତା । ବର୍ହିଜଗତର ରୂପ ରସ ଗନ୍ଧ ସ୍ପର୍ଶ ଯେତେବେଳେ ମଣିଷ ମନର ଭାବନା, ବେଦନା ଓ କଳ୍ପନାକୁ ଅନୁଭୂତିରେ ରଞ୍ଜିତ କରି ଉପଯୁକ୍ତ ଶବ୍ଦ ସମ୍ଭାରରେ ସୁଷମାମଣ୍ଡିତ କରେ ଏବଂ ତାକୁ ଚିତ୍ରାତ୍ମକ ଓ ଛନ୍ଦୋମୟ ରୂପ ପ୍ରଦାନକରେ, ସେତେବେଳେ ତାକୁ କୁହାଯାଏ କବିତା । କବିତ୍ୱମୟ ପ୍ରାଣର ସ୍ୱତଃସ୍ଫୁର୍ତ୍ତ ଭାଷା ହିଁ କବିତା । ଇଂରେଜ କବି ସମାଲୋଚକ କଲରିଜ୍‌ଙ୍କ ମତରେ "Best words in the best order" ଏବଂ କବିତା ଜୀବନର ଅନୁଶୀଳନ । (Poetry is the Criticism of life) ଓ ଇଂରାଜୀ କବି Wordsworth ଙ୍କ ଭାଷାରେ "Poetry is the spontaneous overflow of powerful feelings recollected in tranquillity". ସଂସ୍କୃତ ସାହିତ୍ୟ ଶାସ୍ତ୍ରରେ କୁହାଯାଇଛି ''ବାକ୍ୟ ରସାତ୍ମକଂ କାବ୍ୟଂ'' ଅର୍ଥାତ୍ ରସସ୍ରାବୀ ବାକ୍ୟ ହିଁ କାବ୍ୟ ଭାବରେ କଥିତ ।

**କବିବର** – କବି ରାଧାନାଥଙ୍କୁ କବିବର ଉପାଧିରେ କୁହାଯାଇଥାଏ । ବାଲେଶ୍ୱର ଜିଲ୍ଲାର କେଦାରପୁର ଗାଁରେ ୧୮୪୮ ମସିହା ସେପ୍ଟେମ୍ବର ୨୮ ତାରିଖରେ ତାଙ୍କ ଜନ୍ମ ହୋଇଥିଲା । ରାଧାନାଥଙ୍କ ପିତାଙ୍କ ନାମ ସୁନ୍ଦରନାରାୟଣ ଓ ମାତାଙ୍କ ନାମ ତାରିଣୀ । ରାଧାନାଥ ୧୮୯୬ ରେ ବ୍ରିଟିଶ୍ ସରକାର ତାଙ୍କୁ ରାୟ ବାହାଦୁର ଉପାଧି ଦେଇଥିଲେ । ରାଧାନାଥଙ୍କ କବିତାରେ ପ୍ରକୃତି ଚିତ୍ରଣ ପ୍ରଚୁର ଆଲେଖ୍ୟ ବହନ କରୁଥିବାରୁ ତାଙ୍କୁ ପ୍ରକୃତି କବି ଭାବେ ଆଖ୍ୟାୟିତ କରାଯାଇଛି । ତାଙ୍କ ରଚନା ଭିତରେ ମେଘଦୂତ, କବିତାବଳୀ, କେଦାରଗୌରୀ, ଚନ୍ଦ୍ରଭାଗା, ନନ୍ଦିକେଶ୍ୱରୀ, ଉଷା, ଦରବାର, ତୁଳସୀସ୍ତବକ, ମହାଯାତ୍ରା ପ୍ରଧାନ ଅଟେ । ତାଙ୍କୁ ଓଡ଼ିଆ ସାହିତ୍ୟରେ ଆଧୁନିକ ଯୁଗର ପ୍ରବର୍ତ୍ତକ ବୋଲି କୁହାଯାଏ ଏବଂ ରାଧାନାଥଙ୍କ ଯୁଗକୁ ଓଡ଼ିଆ ସାହିତ୍ୟରେ ରାଧାନାଥ ଯୁଗ ବୋଲି ନାମିତ କରାଯାଇଛି । ତତ୍‌କାଳୀନ ଓଡ଼ିଆ ଭାଷା ସୁରକ୍ଷାରେ ରାଧାନାଥଙ୍କ ଭୂମିକା ଅଗ୍ରଗଣ୍ୟ ଥିଲା । ୧୯୦୮ ମସିହା ଚୈତ୍ରମାସରେ ତାଙ୍କର ଦେହାନ୍ତ ହୋଇଥିଲା ।

**କବିରାଜ** – ଯେଉଁମାନେ ବହୁ ଭାଷାରେ ଅନାୟାସରେ କବିତା ଲେଖିପାରନ୍ତି, ସେମାନଙ୍କୁ କବିରାଜ କୁହାଯାଏ ।

**କବିଶିକ୍ଷା** – ଭାରତୀୟ ସାହିତ୍ୟ ଶାସ୍ତ୍ରରେ ସାହିତ୍ୟ ବିଷୟକ ତାତ୍ତ୍ୱିକ ଚିନ୍ତାର ବିଶ୍ଳେଷଣ ତଥା ବ୍ୟାବହାରିକ ଜୀବନରେ ସେଗୁଡ଼ିକର ଉପଯୋଗିତା, କଥାର ବିଶଦ ବିଚାର କବିଶିକ୍ଷାର ଅନ୍ତର୍ଭୁକ୍ତ । କବିତା କିପରି ରଚିତ ହୁଏ, କବିତା ରଚନା ପାଇଁ କବି ପକ୍ଷରେ କି କି ଉପାୟ ଅବଲମ୍ବନୀୟ, ଏସବୁର ବିଶଦ ବିଚାର କବି ଶିକ୍ଷାତ୍ମକ ଗ୍ରନ୍ଥରେ ଦେଖିବାକୁ ମିଳେ ।

**କବିସମ୍ରାଟ** – କବି ଉପେନ୍ଦ୍ରଭଞ୍ଜଙ୍କୁ କବିସମ୍ରାଟ କୁହାଯାଏ । ଏହି କବିସମ୍ରାଟ ଉପାଧି ପୁରୀ ଗଜପତି ରାଜା ତାଙ୍କୁ ଅର୍ପଣ କରିଥିଲେ । କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ଗଞ୍ଜାମ ଜିଲ୍ଲାର ଘୁମସୁର ରାଜବଂଶରେ ୧୬୭୦ ଖ୍ରୀ: ରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ନୀଳକଣ୍ଠ ଭଞ୍ଜ । କୁଳାଡଗଡ଼ର ଦେବୀ ସିଦ୍ଧେଶ୍ୱରୀଙ୍କ ଆଶୀର୍ବାଦରୁ ରାମତାରକ ମନ୍ତ୍ର ଜପ କରି ଉପେନ୍ଦ୍ର କବିତ୍ୱ ପ୍ରାପ୍ତି ହୋଇଥିଲେ ବୋଲି କଥିତ ଅଛି । ଉପେନ୍ଦ୍ରଭଞ୍ଜଙ୍କ ପ୍ରଥମ କାବ୍ୟ 'ବୈଦେହୀଶ ବିଳାସ' ଯାହାର ପ୍ରତ୍ୟେକ ପଦ ବ ଅକ୍ଷରରେ ଆରମ୍ଭ ହୋଇଛି । କବି ସମ୍ରାଟ ପ୍ରାୟ ୬୨ ଖଣ୍ଡ କାବ୍ୟ ଲେଖିଛନ୍ତି । ସେଗୁଡ଼ିକ ମଧ୍ୟରୁ ବୈଦେହୀଶବିଳାସ, ଲାବଣ୍ୟବତୀ, କୋଟୀବ୍ରହ୍ମାଣ୍ଡସୁନ୍ଦରୀ, ପ୍ରେମସୁଧାନିଧି, ରସିକହାରାବଳୀ, ରସପଞ୍ଚକ, ଚୌପଦୀଭୂଷଣ, ଅବନାରସତରଙ୍ଗ, ସୁଭଦ୍ରା ପରିଣୟ, କଳାକଉତୁକ, ଗୀତାଭିଧାନ, ତ୍ରୈଲୋକମୋହିନୀ, ଚିତ୍ରକାବ୍ୟବନ୍ଧୋଦୟ, ସୁବର୍ଣ୍ଣରେଖା

ଶ୍ରେଷ୍ଠକୃତି ଭାବେ ବିବେଚିତ । କବି ସମ୍ରାଟଙ୍କ ରୀତିକାବ୍ୟ ରଚନାରେ ଶ୍ରେଷ୍ଠକବି ତାଙ୍କ କାବ୍ୟ କବିତା ଉପମା ଓ ଅର୍ଥଗୌରବରେ ବିଶେଷତା ଲାଭ କରିଥାଏ ।

**କବି ସ୍ୱଭାବ** – ମନୁଷ୍ୟର ବ୍ୟକ୍ତିଗତ ସ୍ୱଭାବ ପରି କବି ଲେଖକମାନଙ୍କର ବ୍ୟକ୍ତିଗତ ସ୍ୱଭାବ ସହିତ ରୀତି ନିର୍ବାଚନର ସାକ୍ଷାତ ସମ୍ବନ୍ଧ ରହିଛି । ଏହି ଦୃଷ୍ଟିରୁ ଆଲୋଚନା ସବୁର ତିନି ପ୍ରକାର କବି ସ୍ୱଭାବର ସ୍ୱରୂପ କୁହାଯାଇଛି । ଯଥା- (୧) ସୁକୁମାର (୨) ବିଚିତ୍ର (୩) ମଧ୍ୟମ । ସାହିତ୍ୟ ସୌନ୍ଦର୍ଯ୍ୟଭାବ ଉପରେ ଗୁରୁତ୍ୱ ଦେଉଥିବା ସ୍ୱଭାବ ସୁକୁମାର ସ୍ୱଭାବର ପାଣ୍ଡିତ୍ୟପ୍ରକର୍ଷ ଓ ଶବ୍ଦାଳଙ୍କାର ଇତ୍ୟାଦି ଉପରେ ଗୁରୁତ୍ୱ ଦେବା ବିଚିତ୍ର ସ୍ୱଭାବର ଏବଂ ଏହି ଦୁଇଗୋଟି ସମ୍ମିଶ୍ରଣ ହିଁ ମଧ୍ୟମ ସ୍ୱଭାବ କୁହାଯାଏ ।

**କବିସୂର୍ଯ୍ୟ** – କବି ବଳଦେବ ରଥଙ୍କୁ କବିସୂର୍ଯ୍ୟ କୁହାଯାଏ । ଜଳନ୍ତରର ରାଜା ରାମଚନ୍ଦ୍ର ଛୋଟରାୟ ତାଙ୍କୁ କବିସୂର୍ଯ୍ୟ ଉପାଧିରେ ଭୂଷିତ କରାଇଥିଲେ । ପରେ ଗଜପତି ମୁକୁନ୍ଦଦେବ ମଧ୍ୟ ସ୍ୱୀକାର କରିଥିଲେ । ବଳଦେବ ରଥ ଗଞ୍ଜାମ ଜିଲ୍ଲାର ବଡ଼ଖେମୁଣ୍ଡିଠାରେ ୧୭୮୯ ଖ୍ରୀଷ୍ଟାବ୍ଦରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ଉଜ୍ଜ୍ୱଳ ରଥ । ଏଗାର ବର୍ଷ ବୟସରେ ତାଙ୍କର ମାତୃବିୟୋଗ ଘଟିବାରୁ ପିତା ତାଙ୍କ ଶ୍ୱଶୁରଘରେ ଅର୍ଥାତ୍ ଅଜା ତ୍ରିପୁରାରୀଙ୍କ ପାଖରେ ଆଠଗଡ଼ରେ ଛାଡ଼ିଦେଲେ । ଦେବୀ ଦୁର୍ଗାଙ୍କ ପ୍ରସାଦ ପାନ କରି ବଳଦେବ କବି ଓ ପଣ୍ଡିତ ହେଲେ ବୋଲି କଥିତ ଅଛି । ତାଙ୍କର ପ୍ରସିଦ୍ଧ କିଶୋର ଚନ୍ଦ୍ରାନନ ଚଂପୁ ଲେଖି ଆଠଗଡ଼ ରାଜାଙ୍କୁ ଉପହାର ଦେଇଥଲେ । ୧୮୫୦ ମସିହା ଅକ୍ଷୟ ତୃତୀୟାରେ କବିଙ୍କ ଦେହାନ୍ତ ହେଲା ।

**କାଉଁରୀ ମଣ୍ଡଳ** – ସୁଷୁମ୍ନାର ଶେଷ ସୂକ୍ଷ୍ମଦ୍ୱାର ଉପରେ କାଉଁରୀ ମଣ୍ଡଳ ବା କାଉଁରୀ ପାଟଣା ବୋଲି ସନ୍ଥସାହିତ୍ୟରେ କଥିତ :

''ସୂଚିମୂଳ ପ୍ରମାଣେ ତହିଁକି ଯେଉଁ ବାଟ
ତିଳ ଚୋପା ପ୍ରମାଣେଟି ଲାଗିଛି କବାଟ
ଦେଖୁ ଦେଖୁ ମତ୍ତଗଜ ଚଳୁଅଛି ଯହିଁ
ଚୈତନ୍ୟ ସହିତେ ହେତୁ ବନ୍ଧାଇଛି ତହିଁ
ମାଙ୍କଡ଼ସା ସୂତାପ୍ରାୟେ ଯେଉଁଦ୍ୱାରେ ଦିଶି
ତଥିପରେ କାଉଁରୀମଣ୍ଡଳ ଯେ ପ୍ରକାଶି । (ଛତିଶ ଗୁପ୍ତଗୀତା)

**କାଳ** – କ୍ରିୟା ଘଟିବା ସମୟକୁ 'କାଳ' କହନ୍ତି । କାଳ ତିନି ପ୍ରକାର - ବର୍ତ୍ତମାନ, ଅତୀତ ଓ ଭବିଷ୍ୟତ । ଯେଉଁ କ୍ରିୟା ଦ୍ୱାରା କାର୍ଯ୍ୟ ବର୍ତ୍ତମାନ ସମୟରେ ଘଟୁଥିବା ଜଣାଯାଏ, ତାହା ବର୍ତ୍ତମାନ କାଳ ହୁଏ ।

**କାରକ** – ବାକ୍ୟ ମଧ୍ୟରେ କ୍ରିୟା ସହିତ ପଦର ସମ୍ବନ୍ଧକୁ କାରକ କୁହାଯାଏ । ଏହି ସମ୍ବନ୍ଧ ଛଅ ପ୍ରକାର । ତେଣୁ କାରକ ଛଅ ପ୍ରକାର । ଯଥା- କର୍ତ୍ତା, କର୍ମ, କରଣ, ସମ୍ପ୍ରଦାନ, ଅପାଦାନ, ଅଧିକରଣ ।

**କାଣ୍ଡ** – ରାମାୟଣର ପ୍ରତି ଖଣ୍ଡକୁ କାଣ୍ଡ କୁହାଯାଏ । ଅଥର୍ବ ବେଦ ୨୦ ଟି କାଣ୍ଡରେ ବିଭକ୍ତ ।

**କାନ୍ଦଣା ଗୀତ** – ଅଶ୍ରୁ ବିସର୍ଜନ ପୂର୍ବକ ଅର୍ଥାତ୍ କାନ୍ଦିବା ସ୍ୱରରେ ପ୍ରକାଶିତ ଭାବାବେଗ ପୂର୍ବକ ଗୀତକୁ କାନ୍ଦଣା ଗୀତ କୁହାଯାଏ । ଏହା ଓଡ଼ିଆ ଲୋକଗୀତର ଅନ୍ତର୍ଭୁକ୍ତ । ନାରୀ ଜୀବନର ସଜଳ ଅଶ୍ରୁଳ କାହାଣୀ ଏ ଗୀତର ପରିସର ଭୁକ୍ତ । ଝିଅ ପିତାଗୃହ ତ୍ୟାଗ କରି ସ୍ୱାମୀଗୃହକୁ ଯିବା ସମୟରେ କାନ୍ଦଣାଗୀତ ବୋଲାଯାଏ । ଓଡ଼ିଆ ପଲ୍ଲୀ ଜୀବନ ର ସାମାଜିକ, ମାନବିକ ଆବେଦନରେ ପରିପୂର୍ଣ୍ଣ ହୁଏ । ଗୀତଗୁଡ଼ିକ ନାରୀ ସୃଜନର ଆଦ୍ୟ ଆଲେଖ୍ୟ ବହନ କରିଥାଏ ।

**କାନ୍ତକବି** – କାନ୍ତକବି ଲକ୍ଷ୍ମୀକାନ୍ତ ଭଦ୍ରକର ତାଳପଦା ଗ୍ରାମରେ ୧୮୮୮ ମସିହା ଡିସେମ୍ବର ୯ ତାରିଖରେ ଜନ୍ମଗ୍ରହଣ କରିଥିଲେ । ଲକ୍ଷ୍ମୀକାନ୍ତଙ୍କ ପିତା ଓ ମାତାଙ୍କ ନାମ ଯଥାକ୍ରମେ ଚୌଧୁରୀ ଭାଗବତ ପ୍ରସାଦ ସାମନ୍ତରାୟ ମହାପାତ୍ର ଓ ରାଧାମଣି ଦେବୀ । ସାହିତ୍ୟିକ ଲକ୍ଷ୍ମୀ ନାରାୟଣ ସାହୁ ଲକ୍ଷ୍ମୀକାନ୍ତଙ୍କୁ କାନ୍ତକବି ଆଖ୍ୟା ଦେଇଥିଲେ । ଲକ୍ଷ୍ମୀକାନ୍ତ କ୍ଷୁଦ୍ରଗଳ୍ପ, ନାଟକ, ପ୍ରବନ୍ଧ, ଉପନ୍ୟାସ, କବିତା, ଶିଶୁ ସାହିତ୍ୟ ରଚନା କରିଛନ୍ତି । ୧୯୫୩ ମସିହା ଫେବୃୟାରୀ ୨୪ ତାରିଖରେ ସେ ମୃତ୍ୟୁବରଣ କରିଥିଲେ ।

**କାବ୍ୟ** – ସରସ ସୁନ୍ଦର ସନ୍ତୁଳିତ ପଦ ବିନ୍ୟାସ ସହିତ ବିଭିନ୍ନ କଥାବସ୍ତୁ ସହ କୌଣସି ଗୋଟିଏ ଘଟଣାର ରସମୟ ବୃହତ୍ ପଦ୍ୟ ହିଁ କାବ୍ୟ ନାମରେ ନାମିତ । ଏହି ବିଭିନ୍ନ ପ୍ରସଙ୍ଗ ବିଭିନ୍ନ ସର୍ଗ, ଉପସର୍ଗରେ ବିଭକ୍ତ ଏବଂ ବିକଶିତ । ପରମ୍ପରା, ସଂସ୍କୃତି, ସମାଜ ତଥା ଲୋକ ଚରିତ୍ରର ସାମୂହିକ ଆବେଦନ ଏଥିରେ ଲକ୍ଷଣୀୟ ଥାଏ ।

**କାବ୍ୟଦୋଷ** – ଯାହା ରସର ଅପକର୍ଷକ ତାହା କାବ୍ୟଦୋଷ ଭାବରେ ବିବେଚିତ ହୁଏ । 'ରସାପକର୍ଷକାଃ ଦୋଷଃ'। ଅର୍ଥାତ୍ ଯେ କୌଣସି ରସାଳ କାବ୍ୟରେ ଯେଉଁ ଦୋଷମୁକ୍ତ ଶବ୍ଦଯୋଜନା କାବ୍ୟର ରସର ଅଭିବ୍ୟକ୍ତି ଓ ରସାତ୍ମକ ଅନୁଭୂତିରେ ବାଧା ସୃଷ୍ଟି କରେ ଅଥବା ତାହାକୁ ନ୍ୟୁନ କରିଦିଏ, ତାହା କାବ୍ୟଦୋଷ ଭାବରେ ପରିଗଣିତ ହୁଏ । ଏହିପରି ଦୋଷ ହେଉଛି ପାଞ୍ଚ ପ୍ରକାର । (୧) ପଦଦୋଷ (୨) ପଦାଂଶ ଦୋଷ (୩) ବାକଦୋଷ, (୪) ଅର୍ଥଦୋଷ, (୫) ରସଦୋଷ । ରସଦୋଷ ଆତ୍ମିକ ଦୋଷ କୁହାଯାଉଥିବା ସ୍ଥଳେ ଆଉ ସମସ୍ତ ଦୋଷ ଆଙ୍ଗିକ ଦୋଷ ଭାବରେ ଗ୍ରହଣ କରାଯାଏ ।

**କାବ୍ୟ ପ୍ରୟୋଜନ** – ସାହିତ୍ୟ ଶାସ୍ତ୍ର ଆଲୋଚକମାନେ ବିଭିନ୍ନ କାବ୍ୟ ପ୍ରୟୋଜନର ବ୍ୟାଖ୍ୟା କରିଛନ୍ତି । ସେଥିରୁ କେତୋଟିକୁ ଗୌଣ ପ୍ରୟୋଜନ ଓ କେତୋଟିକୁ ମୁଖ୍ୟ ପ୍ରୟୋଜନ ଭାବରେ ଗ୍ରହଣ କରାଯାଇଛି । ମୁଖ୍ୟ ପ୍ରୟୋଜନଗୁଡ଼ିକ ମଧ୍ୟରେ ଯଶ, ଅର୍ଥ, ବ୍ୟବହାର ଜ୍ଞାନ, ଅମଙ୍ଗଳ ନିବାରଣ, ଆନନ୍ଦାନୁଭୂତି ଏବଂ ନୈତିକତା ପ୍ରଧାନ । ମାନବ ଜୀବନରେ ଯେଉଁ ଚାରୋଟି ପୁରୁଷାର୍ଥ ଯଥା ଧର୍ମ, ଅର୍ଥ, କାମ, ମୋକ୍ଷ ସ୍ୱୀକାର କରାଯାଇଛି କାବ୍ୟକୁ ଛାଡ଼ିଦେଲେ ଆଉ କୌଣସି ସାରସ୍ୱତ କୃତିରେ ଏହି ପୁରୁଷାର୍ଥ ଲାଭ କରି ହୁଏନାହିଁ । ଏହାହିଁ କାବ୍ୟ ରଚନାର ଶ୍ରେଷ୍ଠ ପ୍ରୟୋଜନ ଓ ଚରମ ଆବଶ୍ୟକତା ବୋଲି ଗ୍ରହଣ କରାଯାଇଛି ।

**କାବ୍ୟ ନାଟକ** – ପଦ୍ୟରେ ରଚିତ ନାଟକ । ପୂର୍ବରୁ ନାଟକ ଥିଲା ଗଦ୍ୟ ପଦ୍ୟର ମିଶ୍ର ରୂପ । ପରେ ନାଟକ କେବଳ ଗଦ୍ୟରୂପକୁ ଆଦରିନେଲା । ଯାହାକି ଟି.ଏସ୍. ଏଲିଅଟ୍ ପଦ୍ୟକୁ ନାଟକର ଭାଷା ଭାବରେ ଗ୍ରହଣ କଲେ ଓ ନାଟକ ରଚନା କଲେ । ଏଲିଅଟ୍‌ଙ୍କ ବିଚାରରେ ନାଟ୍ୟକାର ପ୍ରଥମେ କବି ଦ୍ୱିତୀୟରେ ନାଟ୍ୟକାର । କିନ୍ତୁ ନାଟକର ଭାଷା ପଦ୍ୟ ହେବା ବିଧେୟ । କିନ୍ତୁ କାବ୍ୟନାଟକ ଆଦୃତ ହେଲାନାହିଁ ।

**କାବ୍ୟଶବ୍ଦ** – ଭାରତୀୟ ସାହିତ୍ୟରେ ପ୍ରଯୁକ୍ତ ହୋଇଥିବା ଶବ୍ଦାବଳୀକୁ ବିଚାର ବିବେଚନା ଦୃଷ୍ଟିରୁ ସାଧାରଣତଃ ତିନି ଭାଗରେ ବିଭକ୍ତ କରାଯାଇଛି । ଯଥା - ବେଦଶବ୍ଦ, ଶାସ୍ତ୍ର ଶବ୍ଦ ଓ କାବ୍ୟ ଶବ୍ଦ । ବେଦଶବ୍ଦ ଶବ୍ଦ ପ୍ରଧାନ, ଶାସ୍ତ୍ରଶବ୍ଦ ଅର୍ଥ ପ୍ରଧାନ ଏବଂ କାବ୍ୟଶବ୍ଦ ବ୍ୟାପାର ପ୍ରଧାନ ବୋଲି ସମିଚୀତ ହୁଏ ।

**କାବ୍ୟାଦର୍ଶ** – କାବ୍ୟ ରଚନା କରିବା ସମୟରେ ଶବ୍ଦ ଚୟନ, ପଦ ଯୋଜନାର ବିଧି ଓ ପ୍ରକାଶଭଙ୍ଗୀର ରୁଚି ତଥା ନୀତିକୁ କାବ୍ୟାଦର୍ଶ କୁହାଯାଏ । ଏହା ଉଭୟ ଆତ୍ମିକ ଓ ଆଙ୍ଗିକ । ବିଭିନ୍ନ ଯୁଗରେ ବିଭିନ୍ନ କାବ୍ୟାଦର୍ଶ ପରିଲକ୍ଷିତ ହୁଏ ।

**କାବ୍ୟାନନ୍ଦ** – କାବ୍ୟପଠନ ଓ ନାଟକ ଦର୍ଶନରୁ ଯେଉଁ ଆନନ୍ଦ ମିଳେ ତାହା କାବ୍ୟାନନ୍ଦ । କାବ୍ୟାନନ୍ଦ ଅଲୌକିକ, ଅଖଣ୍ଡ ଓ ସୀମାହୀନ । କାବ୍ୟନନ୍ଦର ସ୍ଥିତି ଭିନ୍ନ ପ୍ରକାରର । ସାଧାଧରଣ ଲୌକିକାନନ୍ଦ କ୍ଷଣସ୍ଥାୟୀ ଓ ସୀମିତ । କାବ୍ୟପାଠକ ଅନ୍ୟର ଦୁଃଖରେ ଅତ୍ୟନ୍ତ ଦୁଃଖୀ ଓ ଅନ୍ୟର ସୁଖରେ ଅତ୍ୟନ୍ତ ସୁଖୀ ହେଲେ ବି ଏକ ପ୍ରକାର ଆନନ୍ଦ ପାଏ । ଯାହା ହୃଦୟରେ ଅଖଣ୍ଡ ବିସ୍ତାର କରେ ।

**କାହ୍ନୁପା** – ସିଦ୍ଧାଚାର୍ଯ୍ୟ କାହ୍ନୁପା, କୃଷ୍ଣାଚାର୍ଯ୍ୟ ବା କୃଷ୍ଣପାଦ ଥିଲେ ସିଦ୍ଧାଚାର୍ଯ୍ୟ ଜାଳନ୍ଧରୀପାଦଙ୍କ ଶିଷ୍ୟ । ସେ ଓଡ଼ିଶାର ଏକ ବ୍ରାହ୍ମଣ ପରିବାରରେ ଜନ୍ମଗ୍ରହଣ କରିଥିଲେ ।

ପାଗ୍ ସାମ୍ ଜୋନ୍ ଜାଙ୍ଗ ରେ ତିନିଜଣ କାହ୍ନୁଙ୍କର ଉଲ୍ଲେଖ ଅଛି । ସେଥି ମଧ୍ୟରୁ ଜଣେ ଓଡ଼ିଶାବାସୀ ଓ ଜାଳନ୍ଧରୀପାଦଙ୍କ ଶିଷ୍ୟ ବୋଲି କୁହାଯାଇଛି । ସେ ଅନେକ ଅଲୌକିକ ଶକ୍ତିର ଆଧାର ଥିଲେ । ତାଙ୍କର ଗ୍ରନ୍ଥରେ ଅନ୍ୟୂନ ୬୯ଟି ବୌଦ୍ଧତନ୍ତ୍ର ସଂପର୍କୀୟ ରଚନା ତାଙ୍କ ନାମରେ ଦେଖିବାକୁ ମିଳେ । ଚର୍ଯ୍ୟାଗୀତିକୋଷରେ ତାଙ୍କ ରଚିତ ୧୩ଗୋଟି ଗୀତ ସଂକଳିତ ।

**କ୍ଲାସିକ୍‌ବାଦ** – କ୍ଲାସିସିଜିମ୍‌ର କୌଣସି ନିର୍ଦ୍ଦିଷ୍ଟ ଅର୍ଥ ନାହିଁ । ଏହା ପ୍ରଥମେ ରୋମୀୟ Classious ଶବ୍ଦରୁ ସୃଷ୍ଟି ଲାଭ କରିଅଛି । ଆଭିଧାନିକ ଅର୍ଥରେ ଉଚ୍ଚଶ୍ରେଣୀର ଲେଖକ ବା ଚିତ୍ରଶିଳ୍ପ ବା ସାରସ୍ୱତ ସୃଷ୍ଟି । ଏକ ରୀତି ସିଦ୍ଧ ପ୍ରୟୋଗ ଦ୍ୱାରା ରଚିତ ହୋଇଥାଏ । ବ୍ୟକ୍ତିବାଦ ମଧ୍ୟରେ ନୈର୍ବ୍ୟକ୍ତିକତା କ୍ଲାସିକ୍‌ଚେତନାର ଅନ୍ୟତମ ବିଶେଷତ୍ୱ । ଐତିହ୍ୟ ପ୍ରୀତି, ପରଂପରାମାନ୍ୟତା ସହ ବୁଦ୍ଧି, ଶୃଙ୍ଖଳା ତଥା ଶାସ୍ତ୍ରୀୟତା ନେଇ ସୌନ୍ଦର୍ଯ୍ୟବୋଧର ପରପୂର୍ଣ୍ଣ ପରିପ୍ରକାଶ ହିଁ କ୍ଲାସିକ୍ ପଦବାଚ୍ୟ । କଳ୍ପନା ପରିବର୍ତ୍ତେ ସମୁଚିତ କଳ୍ପନା, ପରିପକ୍ୱ ରୁଚିବୋଧ, ସମୁନ୍ନତ କଳା-ଚେତନା ହିଁ କ୍ଲାସିକ୍ ବାଦର ଅନ୍ୟତମ ବୈଶିଷ୍ଟ୍ୟ ।

**କିମ୍ବଦନ୍ତୀ** – ପୁରୁଷାନୁକ୍ରମେ ଆଂଚଳିକ ଭିତ୍ତିରେ ଗଢ଼ି ଆସୁଥିବା ବିଶ୍ୱାସ ଓ ପରଂପରା ମୂଳ କଥାବସ୍ତୁକୁ କିମ୍ବଦନ୍ତୀ କୁହାଯାଏ । ଏହା ଲିଖିତ ବା ପ୍ରାମାଣିକ ନୁହେଁ । ଲୋକମୁଖରେ ଏହା କେଉଁ ସ୍ମୃତିର ଅତଳଗର୍ଭରେ ସଂଜିବୀତ ଓ ସଂଚିତ ବୈଶିଷ୍ଟ୍ୟମୟ କାହାଣୀଟିଏ ମାତ୍ର ।

**କିଶୋର ସାହିତ୍ୟ** – କିଶୋର ଉପଯୋଗୀ ରଚିତ ସାହିତ୍ୟ । ଭାରତରେ ୧୫ ବର୍ଷକୁ କିଶୋର ଅବସ୍ଥା କୁହାଯାଏ । ଏହି ସମୟରୁ ମଣିଷ ମନରେ ଅନିସନ୍ଧିତ୍ସୁ ପ୍ରବୃତ୍ତିକୁ ଭିତ୍ତି କରି କିଶୋର ସାହିତ୍ୟ ସୃଷ୍ଟି ହୋଇଥାଏ ।

**କୀର୍ତ୍ତନ** – ଓଡ଼ିଆ କୀର୍ତ୍ତନ ଓଡ଼ିଶୀ କୀର୍ତ୍ତନ ଭାବରେ ଆଖ୍ୟାତ । ଏହାଛଡ଼ା ଦକ୍ଷିଣୀ ଓ ନଦୀୟା ବା ବଙ୍ଗଳା କୀର୍ତ୍ତନ ରହିଛି । ବୈଷ୍ଣବ ଧର୍ମ ପ୍ରଚାରରେ କୀର୍ତ୍ତନ ସାହିତ୍ୟର ବହୁଳ ଅବଦାନ ରହିଛି । ରାଧାକୃଷ୍ଣ ଲୀଳାର ମଧୁର ମୂର୍ଚ୍ଛନା କୀର୍ତ୍ତନ ସାହିତ୍ୟରେ ପରିଲକ୍ଷିତ । କୀର୍ତ୍ତନ ସାହିତ୍ୟ ଓଡ଼ିଶାର ସ୍ୱତନ୍ତ୍ର ତଥା ଶାସ୍ତ୍ରୀୟତା ର ପ୍ରମାଣ ବହନ କରେ ।

**କ୍ଲୀଂ ଶ୍ଲୀଂ ଓ ହ୍ଲୀଂ** – ଏଗୁଡ଼ିକ ରହସ୍ୟମୟ ବା ବ୍ରହ୍ମଜ୍ଞାନ ନିଗୂଢ଼ ପ୍ରତୀକାତ୍ମକ ବର୍ଣ୍ଣ ଅଟେ । ଏ ବର୍ଣ୍ଣତ୍ରୟ ଭଗବାନ (ଜଗନ୍ନାଥ) ଗୁରୁ ଓ ଶିଷ୍ୟକୁ ବୁଝାଇଥାଏ । ସନ୍ଥ ସାହିତ୍ୟରେ ଓ ତନ୍ତ୍ର ସାହିତ୍ୟରେ ଏହାର ବହୁଳ ପ୍ରଚାର ଅଛି ।

**କୃଷ୍ଣଲୀଳା** – ଷୋଡ଼ଶ ଶତାବ୍ଦୀରେ କୃଷ୍ଣ ଓ ରାଧା, ଗୋପୀ ଓ କୃଷ୍ଣଙ୍କ ଲୀଳା ସମ୍ବନ୍ଧିତ ରଚନା ସମୂହ । ଏହା ମୁଖ୍ୟତଃ ଶୃଙ୍ଗାର ରସାଶ୍ରିତ ଏବଂ ରାଧାକୃଷ୍ଣ ପ୍ରେମ ଅବଲମ୍ବନରେ ରଚିତ । ଏହା ପଦ୍ୟାକାରରେ ଲିଖିତ ହୋଇଥିଲେ ମଧ୍ୟ ଏହା ଅଭିନୀତ ହେଉଥିଲା । କଥୋପକଥନ ଶୈଳୀରେ ଲିଖିତ ଏ ଲୀଳାରେ ରାସଲୀଳା ଅତ୍ୟନ୍ତ ଆକର୍ଷଣୀୟ । ଗୋପୀମାନଙ୍କର ମଣ୍ଡଳାକାର ନୃତ୍ୟ ଏହାର ପ୍ରଧାନ ଅବଦାନ ।

**କୋଇଲି** – ପ୍ରାଚୀନ ମଧ୍ୟ ଯୁଗୀୟ ଓଡ଼ିଆ ସାହିତ୍ୟରେ କୋଇଲି ନାମକ ଏକ ପ୍ରକାର ରଚନା ପରିଦୃଷ୍ଟ ହୁଏ । ଏଗୁଡ଼ିକ ସୁଲଳିତ ଛନ୍ଦ ଓ ଶ୍ରୁତିମଧୁର ପଦାବଳୀଯୁକ୍ତ ଗୋଟିଏ ମନୋଜ୍ଞ ଗୀତିକବିତା । ଏଗୁଡ଼ିକ ସଂସ୍କୃତ ସାହିତ୍ୟର ଦୂତକାବ୍ୟ ବା ସନ୍ଦେଶ କାବ୍ୟର ଅନୁରୂପ । ଏ ପ୍ରକାର ଗୀତର ପ୍ରତ୍ୟେକ ପଦରେ 'କୋଇଲି'କୁ ସମ୍ବୋଧନ କରାଯାଇଥାଏ । ତେଣୁ ଏ ପ୍ରକାର ରଚନାକୁ କୋଇଲି ରଖାଯାଇଛି । ଓଡ଼ିଆ ସାହିତ୍ୟରେ ମାର୍କଣ୍ଡ ଦାସଙ୍କ 'କେଶବ କୋଇଲି' କୋଇଲି ଗୀତି ଜଗତର ସର୍ବଶ୍ରେଷ୍ଠ ଲୋକପ୍ରିୟ ରଚନା ଭାବେ ଗ୍ରହଣ କରାଯାଏ ।

**କୋକିଳକବି** – କବି ଗୋଦାବରୀଶ ମିଶ୍ରଙ୍କୁ କୋକିଳକବି କୁହାଯାଏ । ପୁରୀ ଜିଲ୍ଲାର ଶ୍ରୀନିବାସପୁରରେ ସେ ଜନ୍ମ ଗ୍ରହଣ କରିଥିଲେ । ଗୋଦାବରୀଶଙ୍କ ପିତାଙ୍କ ନାମ ଲିଙ୍ଗରାଜ ମିଶ୍ର ଓ ମାତାଙ୍କ ନାମ ଅପସରା ଦେବୀ । ଗୋଦାବରୀଶଙ୍କ ଦ୍ୱାରା ଲିଖିତ ପୁସ୍ତକର ନାମ - ଆଲେଖିକା, ଗୀତାୟନ, ଚୟନିକା, କିଶଳୟ, ଗୁରୁପୁରୁଷୋତ୍ତମ, ଷଢ଼େଇକଳା ଖରସୁଆ, ମୁକୁନ୍ଦଦେବ, କଙ୍କାଳର ଆର୍ତ୍ତନାଦ, ଅଠରଶହ ସତର, ଅଭାଗିନୀ, ଘଟାନ୍ତର, ଅର୍ଦ୍ଧଶତାବ୍ଦୀର ଓଡ଼ିଶା ଓ ତହିଁରେ ମୋର ସ୍ଥାନ । ୧୯୫୬ ଜୁଲାଇ ୬ ତାରିଖରେ ସେ ମୃତ୍ୟୁ ବରଣ କରିଥିଲେ ।

**କୌତୁକ** – ଏହା ହାସ୍ୟଭାବ ପୂର୍ଣ୍ଣ । ଏହା ସ୍ୱଭାବତଃ କାବ୍ୟ ସ୍ୱଭାବ ବିଶିଷ୍ଟ । ଏହା ସୌନ୍ଦର୍ଯ୍ୟବୋଧର ଶାସନକୁ ଅପେକ୍ଷା ରଖେନାହିଁ । ଏହା ସ୍ନାୟୁରେ ଉତ୍ତେଜନା ଆଣେ ଓ ଶବ୍ଦ ସହ ହସରେ ପ୍ରକାଶିତ ହୁଏ ।

## ଖ

**ଖଣ୍ଡକାବ୍ୟ** – ଦୀର୍ଘ ପଦ୍ୟରଚନା କାବ୍ୟକଳା ଦୃଷ୍ଟିରୁ ସ୍ୱୟଂସଂପୂର୍ଣ୍ଣ ଗୋଟିଏ ସ୍ୱତନ୍ତ୍ର ସୃଷ୍ଟି । ଏହା ସଂପୂର୍ଣ୍ଣ ମହାକାବ୍ୟ ଲକ୍ଷଣକୁ ବହନ କରିଥାଏ । କିନ୍ତୁ ଏହା ମହାକାବ୍ୟର ଅଂଶ ନୁହେଁ ।

**ଖଣ୍ଡବାକ୍ୟ** – କେତେକ ପଦର ସମଷ୍ଟିରେ କର୍ତ୍ତା ଓ ସମାପିକା କ୍ରିୟା ଥାଇ ସୁଦ୍ଧା ପୂର୍ଣ୍ଣ ମନୋଭାବ ପ୍ରକାଶିତ ନହେଲେ ଏବଂ ସେହି ପଦ ସମଷ୍ଟି ଗୋଟିଏ ବୃହତ୍ତର ବାକ୍ୟର ଅଂଶ ହୋଇଥିଲେ ତାହାକୁ ଖଣ୍ଡବାକ୍ୟ ବୋଲାଯାଏ । ଖଣ୍ଡବାକ୍ୟ ତ୍ରିବିଧ ଯଥା - ବିଶେଷାତ୍ମକ, ବିଶେଷଣାତ୍ମକ ଓ କ୍ରିୟା ବିଶେଷଣାତ୍ମକ ।

**ଖଳନାୟକ** – ଏହି ଚରିତ୍ର ଚିତ୍ରଣ ନାଟକର ପ୍ରଧାନ ଉପାଦାନ । ଯେଉଁ ଚରିତ୍ର ନାଟକଟିର ବିରୋଧୀ ଭୂମିକାରେ ଅବତୀର୍ଣ୍ଣ ହୁଏ, ତାକୁ ଖଳନାୟକ କୁହାଯାଏ । ନାଟକକୁ ଗତିଶୀଳ କରାଇବାରେ ଖଳନାୟକର ଭୂମିକା ଗୁରୁତ୍ୱପୂର୍ଣ୍ଣ ।

**ଖଳନାୟିକା** – ଖଳନାୟକକୁ ସହଯୋଗ କରୁଥିବା ବା କରାଉଥିବା ନାୟିକା ଅଥବା ନାୟକା ନାଟକର ଚରିତ୍ର ସହିତ ନାୟିକାର ମିଳନରେ ଅନ୍ତରାୟ ସୃଷ୍ଟି କରୁଥିବା ସ୍ତ୍ରୀ ଚରିତ୍ରକୁ ଖଳନାୟିକା କୁହାଯାଏ ।

**ଖ୍ୟାତି ବିରୁଦ୍ଧତା** – ଭାରତୀୟ ସାହିତ୍ୟ ତତ୍ତ୍ୱରେ ଏହା କାବ୍ୟଦୋଷର ଅନ୍ତର୍ଗତ । ଯେଉଁ ବର୍ଣ୍ଣନାରେ ଲୋକ ପ୍ରସିଦ୍ଧି ଅଥବା କବି ସମୟ ପ୍ରସିଦ୍ଧିର ବିରୁଦ୍ଧାଚରଣ କରାଯାଏ, ସେଠାରେ ଖ୍ୟାତି ବିରୁଦ୍ଧାଚରଣ ଦୋଷ ହୁଏ । ଉଦାହରଣ -

ରବିକରେ ମ୍ଳାନ କମଳ ପରାଏ
ଖଣ୍ଡିତ ମୃଣାଳ ଗଳେ ଶୋଭାପାଏ ।

ରବି କିରଣ ଦ୍ୱାରା କମଳ ପ୍ରଫୁଲ୍ଲିତ ହୁଏ ବୋଲି ପ୍ରସିଦ୍ଧି ରହିଥିବା ବେଳେ, ଏଠାରେ ରବି କିରଣ ଦ୍ୱାରା କମଳର ମ୍ଳାନ କୁହାଯାଇଛି । ଯାହା ପ୍ରସିଦ୍ଧି ବିରୁଦ୍ଧତା ଦୋଷରେ ଦୋଷୀ ।

**ଖୋରଠା** – ଅଣଓଡ଼ିଆ କବିମାନଙ୍କ ଦ୍ୱାରା ରଚିତ ଜଗନ୍ନାଥଙ୍କ ଉପଲକ୍ଷେ ଭଜନାବଳୀ । 'ଖରୋଷ୍ଟ୍ରୀ'ରୁ 'ଖୋରାଠା' ଶବ୍ଦର ଉତ୍ପତ୍ତି ବୋଲି ଅନେକ ମତ ଦିଅନ୍ତି । ଓଡ଼ିଆରେ ଏହି ଖରୋଠା ବୋଲି ପ୍ରାଚୀନ ହିନ୍ଦୀ ଭାଷାର ବୋଲି ଭାବରେ ଖ୍ୟାତ । ଶ୍ରୀକ୍ଷେତ୍ର ପୁରୀକୁ ଯେଉଁ ଉତ୍ତର ଭାରତୀୟ ସାଧୁ ସନ୍ଥ ଓ ବୈଷ୍ଣବ କବି ଆସୁଥିଲେ ସେମାନଙ୍କ ଆତ୍ମ ନିବେଦନ ମୂଳକ ଜଣାଣ ଓ ଭଜନ ଗୁଡ଼ିକୁ ଖୋରଠା କୁହାଯାଏ । ଯାହାକି ଓଡ଼ିଆ ସାହିତ୍ୟରେ ଏକ ଗୌରବମୟ ବିଭବ ଅଟେ ।

## ଗ

**ଗଦ୍ୟ** – କଥିତ ଭାଷା ଲିଖିତ ରୂପ ନେଲେ ତାହା ସାହିତ୍ୟର ଅଙ୍ଗ ହୋଇଯାଏ । ସାହିତ୍ୟର ଦୁଇଟି ରୂପ । ଗୋଟିଏ ଗଦ୍ୟ ରୂପ ଓ ଅନ୍ୟଟି ପଦ୍ୟ ରୂପ । ଛନ୍ଦହୀନ କଥାକୁ ଗଦ୍ୟ କୁହାଯାଇଥାଏ । କାହାଣୀ, ଗଳ୍ପ, ଉପନ୍ୟାସ, ନାଟକ, କ୍ଷୁଦ୍ରଗଳ୍ପ, ପ୍ରବନ୍ଧ, ନିବନ୍ଧ ପ୍ରଭୃତି ଗଦ୍ୟ ସାହିତ୍ୟର ଅନ୍ତର୍ଗତ ।

**ଗଦ୍ୟଛନ୍ଦ** – ପଦ୍ୟର ପରିଚୟ ଛନ୍ଦପାଇଁ । ତେଣୁ ଗଦ୍ୟକୁ ବାକ୍‌ଛନ୍ଦ ମଧ୍ୟ କୁହାଯାଇଥାଏ । ମୌଖିକ କଥାବାର୍ତ୍ତା, ବକ୍ତୃତା, ପ୍ରବଚନ ଆଦିରେ ମଧ୍ୟ ବେଳବେଳେ ଛନ୍ଦ ଦେଖାଯାଏ । ଗଦ୍ୟକୁ ଅଧିକ ଶ୍ରୁତିଶ୍ରାବ୍ୟ କରିବା ଉଦ୍ଦେଶ୍ୟରେ ଗଦ୍ୟଛନ୍ଦର ଜନ୍ମ ।

**ଗବେଷଣା** – ଗବେଷଣା ଶବ୍ଦର ଉତ୍ପତ୍ତି ରୂପେ ଗୋ + ଈଷ + ଲ୍ୟୁଟ କୁ ଗ୍ରହଣ କରାଯାଏ । ଏହାର ବ୍ୟୁତ୍ପତ୍ତିକ ଅର୍ଥ ହେଉଛି ଗୋ + ଏଷଣା ଅର୍ଥାତ୍ ଗୋରୁ ଖୋଜିବା । ଗୁରୁକୁଳାଶ୍ରମରେ ହଜିଯାଇଥିବା ଗୋରୁକୁ ଖୋଜିବା ଭଳି ନିରବଚ୍ଛିନ୍ନ ଅନ୍ୱେଷଣ ହିଁ ଗବେଷଣା । କେହି କେହି ଏହାକୁ ଅନୁସନ୍ଧାନ କହିଥାନ୍ତି । 'ଅନୁସନ୍ଧାନ' ଶବ୍ଦଟି ଅନୁ ଓ ସମ ଉପସର୍ଗ ପୂର୍ବକ 'ଧା' ଧାତୁରେ ଲ୍ୟୁଟ ପ୍ରତ୍ୟୟ ଯୋଗେ ଗଠିତ, ଯା'ର ଅର୍ଥ ଅନ୍ୱେଷଣ ବା ପରୀକ୍ଷଣ । ଇଂରାଜୀ research ଶବ୍ଦଟିର ଓଡ଼ିଆ ପ୍ରତିଶବ୍ଦ 'ଗବେଷଣା' । ଇଂରାଜୀ ଶବ୍ଦଟି ଫରାସୀ rechercher ଶବ୍ଦରୁ ନିଷ୍ପନ୍ନ । ଯା'ର ମୂଳଅର୍ଥ ପୁନରନୁସନ୍ଧାନ । ତେଣୁ research ର ଉଦ୍ଦେଶ୍ୟ ଜ୍ଞାନର କୌଣସି ରାଜ୍ୟକୁ ପୁନଃ ଉଦ୍‌ଘାଟନ କରିବା, ପୁନଃ ଅବଧାରଣ କରିବା ବା ପ୍ରାଚୀନ ଧାରଣାକୁ ପରିମାର୍ଜନ କରିବା । ଅନ୍ୟ ଅର୍ଥରେ କୌଣସି ବିଷୟ ସଂପର୍କରେ ନୂତନ ଚିନ୍ତା, ନୂତନ ଆଲୋକପାତ, ବିଭିନ୍ନ ବିଷୟର ପର୍ଯ୍ୟାଲୋଚନା ଏବଂ ତନ୍ମଧ୍ୟରେ ନିହିତ ପାରସ୍ପରିକ ଆନ୍ତସଂପର୍କ ଆବିଷ୍କାର କରିବାର ନାମ ଗବେଷଣା । ଗବେଷଣା ସଂପର୍କରେ କେତୋଟି ମତ –

"Research is a careful inquiry or examination to discover new information or relationships and to expand and to verify existing knowledge.

(Francis Rammel)

"It is the manipulation of things, concepts or symbols for the purpose of generalising knowledge whether that knowledge aids in the construction of a theory or in practice of an art."

(Encyclopaedia of Social Science)

A careful critical inquiry or examination in seeking facts or principles, deligents investigation in order to ascertain something."

(Webster's International Dictionary)

**ଗର୍ଭସନ୍ଧି** – ପ୍ରାଚୀନ ସାହିତ୍ୟ ତତ୍ତ୍ୱରେ ନାଟକୀୟ ପଞ୍ଚସନ୍ଧିର ଅନ୍ତର୍ଗତ । ଯେଉଁ ସନ୍ଧିରେ 'ପ୍ରାପ୍ତାଶ୍ୟା' ଓ 'ପତାକା'ର ସଂଯୋଗ ଘଟୁଥିଲେ ବି ଏଥିରେ ନାଟକୀୟ ଉଦ୍ଦେଶ୍ୟ ଲୁକ୍‌କାୟିତ ଅବସ୍ଥାରେ ରହୁଥିବାରୁ ଏହାକୁ ଗର୍ଭସନ୍ଧି କୁହାଯାଏ ।

**ଗ୍ରନ୍ଥପଞ୍ଜୀ** – ଇଂରାଜୀ ବିବିଲୋଗ୍ରାଫି (bibliography) ଶବ୍ଦର ପାରିଭାଷିକ ଶବ୍ଦ ରୂପେ ଓଡ଼ିଆରେ ଗ୍ରନ୍ଥପଞ୍ଜୀ ବା ଗ୍ରନ୍ଥବିଜ୍ଞାନକୁ ଗ୍ରହଣ କରାଯାଇଥାଏ । ଏହି ଶବ୍ଦଟି ଗ୍ରୀକ bibliographia ଶବ୍ଦରୁ ଆନୀତ । ବିବଲିଓନ ଶବ୍ଦର ଅର୍ଥ ଗ୍ରନ୍ଥ ଏବଂ ଗ୍ରାଫିଆନ୍ ଶବ୍ଦର ଅର୍ଥ ରଚନା କରିବା । ଗ୍ରନ୍ଥର ଶେଷ ଭାଗରେ ପ୍ରଦତ୍ତ ଗ୍ରନ୍ଥ ବିବରଣୀକୁ ଗ୍ରନ୍ଥ ବିଜ୍ଞାନ ବା ଗ୍ରନ୍ଥପଞ୍ଜୀ କୁହାଯାଏ । ଗବେଷଣା ନିବନ୍ଧରେ ଗବେଷକ ଯେଉଁ ସମସ୍ତ ଗ୍ରନ୍ଥ, ପତ୍ରପତ୍ରିକା ଓ ଆନୁଷଙ୍ଗିକ ଉପକରଣ ବ୍ୟବହାର କରିଥାଏ, ତାହାର ପୁଙ୍ଖାନୁପୁଙ୍ଖ ବିବରଣୀ ଗ୍ରନ୍ଥପଞ୍ଜୀରେ ରହିଥାଏ ।

**ଗ୍ରନ୍ଥସୂଚୀ** – ଗବେଷଣାତ୍ମକ ନିବନ୍ଧରେ ସୂଚନା ଦିଆଯାଉଥିବା ପୁସ୍ତକ ଗୁଡ଼ିକ ଲେଖକ ନାମାନୁକ୍ରମିକ ଗ୍ରନ୍ଥନ କରାଯାଇ ନିବନ୍ଧ ସହିତ ସଂଯୁକ୍ତ କରାଯାଏ ।

**ଗ୍ରନ୍ଥସାହେବ** – ଶିଖ୍‌ମାନଙ୍କ ଧର୍ମ ପୁସ୍ତକ । ଏଥିରେ ଶିଖ୍ ଗୁରୁମାନଙ୍କ ଉପଦେଶ ସଂଗୃହିତ ହୋଇଅଛି ଓ ଏହା ଗୁରୁମୁଖୀ ଭାଷାରେ ଲିଖିତ । ଶିଖ୍‌ମାନଙ୍କ ଧର୍ମ ମନ୍ଦିର ଗୁରୁଦ୍ୱାରରେ ଗ୍ରନ୍ଥସାହେବ ପାଠ ଓ ପୂଜା କରାଯାଏ ।

**ଗାଥା** – ଏହା ଲୋକଗୀତର ପର୍ଯ୍ୟାୟ । ଲୋକ ସଂସ୍କୃତି ଏହାର ମୂଳପିଣ୍ଡ । ଭାରତୀୟ ସାହିତ୍ୟରେ ଗାଥା କବିତାର ପରଂପରା ବହୁ ପ୍ରାଚୀନ । 'ଗାଥା'ଗୀତି କବିତାର ଧର୍ମ ରକ୍ଷା କରିଥାଏ । ଏହା ବର୍ଣ୍ଣନାତ୍ମକ ଅବା ବିଶ୍ଳେଷଣାତ୍ମକ ହୋଇଥାଏ । ଲୋକ ପ୍ରଚଳିତ କାହାଣୀ, କିମ୍ବଦନ୍ତୀ ଆଦି 'ଗାଥା' କବିତାର ବିଷୟବସ୍ତୁ । ଏହାର ଭାଷା ସରଳ, କିନ୍ତୁ ଭାବ ଗମ୍ଭୀର । ଗ୍ରାମ୍ୟଛନ୍ଦ, ଗ୍ରାମ୍ୟଭାଷା ଏହାର ଆଦି ଉପାଦାନ ।

**ଗାଥା କବିତା** – ଗାଥା କବିତା ହେଉଛି ବସ୍ତୁନିଷ୍ଠ ବର୍ଣ୍ଣନାତ୍ମକ କବିତା । ଏହାର ଇଂରାଜୀ ଶବ୍ଦ ବାଲାଡ଼(Ballad) ର ପ୍ରତିଶବ୍ଦ । Ballad ଶବ୍ଦଟି ଫରାସୀ ଶବ୍ଦ Baller ଅଥବା ଲାଟିନ୍ Ballore ଶବ୍ଦରୁ ନିଷ୍ପନ୍ନ ହୋଇଥିବା ଅନୁମାନ କରାଯାଏ । ଏଇ ଫରାସୀ ଓ ଲାଟିନ୍ ଶବ୍ଦ ଦୁଇଟିର ଅର୍ଥ ହେଉଛି ନୃତ୍ୟ ନୃତ୍ୟନାଟ୍ୟ । ନୃତ୍ୟନାଟ୍ୟ ସହିତ ଯେଉଁ ନାଟକୀୟ କାହାଣୀ ସମ୍ବଳିତ ସଙ୍ଗୀତ ଗାନ କରାଯାଏ ତାକୁ ଗାଥା କବିତା କୁହାଯାଏ । 'ବର୍ଣ୍ଣନାତ୍ମତା, ସରଳତା, ସଂଗୀତମୟତା, ନାଟକୀୟତା - ଏହି ବୈଶିଷ୍ଟ୍ୟକୁ ନେଇ ଗାଥା କବିତା ରଚିତ ହୋଇଥାଏ । ପାଶ୍ଚାତ୍ୟ ଦେଶମାନଙ୍କରେ ଏହି ଗାଥା କବିତାର ବହୁ ପ୍ରାଚୀନ ପରଂପରା ରହିଛି । ଗୋଷ୍ଠୀ ଜୀବନର ମନୋରଞ୍ଜନ ପାଇଁ ସଂର୍ବଜନୀନ ଲୋକପ୍ରିୟ କାହଣୀକୁ ନେଇ ନୃତ୍ୟ ସହିତ ଗାନ କରାଯିବା ପାଇଁ ରଚିତ କବିତା ଗାଥା

କବିତା ନାମରେ ଖ୍ୟାତ । ଅନ୍ୟ ଭାଷାରେ ଗୋଷ୍ଠୀଜୀବନର ମୌଳିକ ଅନୁଭୂତି, ସେମାନଙ୍କର ସାହସିକତା, ବୀରତ୍ୱ, ଦୈବୀକ୍ରିୟା, ହାସ୍ୟ, କୌତୁକ, ଇତିହାସ, କିମ୍ବଦନ୍ତୀ, ଅଲୌକିକ ଲୋକଗୀତି କାହାଣୀକୁ ନେଇ ଏଇସବୁ ଗାଥାକବିତା ରଚିତ ହେଉଥିଲା ।

"The material with which the ballad poet works is the basic experience of the community, he draws upon local or national history, pseudo history, legend and supernatural folk lore and his tales are of adventure and war, love, the supernatural and to lesser extent religious persons and events".

- Cassell's Encyclopaedia of Literature.

**ଗାନ୍ଧର୍ବ ବେଦ** – ବୈଦିକ ସାହିତ୍ୟର ଅନ୍ତର୍ଭୁକ୍ତ । ଏହା ସାମବେଦର ଉପବେଦ । ସାମବେଦର ଏକ ହଜାର ଶାଖା ଅଛି । କିନ୍ତୁ ତେଇଶିଟି କେବଳ ମିଳିଛି । ଜାର୍ଣ୍ଣେୟ ଶାଖାର ଉପବେଦ ଗାନ୍ଧର୍ବବେଦ ନାମରେ କଥିତ । ଏଥିରେ ଚଉଦଟି ପ୍ରକରଣ ଅଛି । ଧ୍ୱନି, ଶବ୍ଦ, ସ୍ୱର, ତାଳ, ନର୍ତ୍ତନ, ରାଗ, ରାଗିଣୀ ସ୍ୱରୂପ, ଉଦ୍ଭବ, ବିକାଶ ସଂପର୍କରେ ଉଲ୍ଲେଖ ଅଛି । ଋଷିମାନଙ୍କ ହାତରେ ଯେଉଁ ବିଦ୍ୟା ଗାନ୍ଧର୍ବ ବେଦ ବୋଲି କୁହାଯାଉଥିଲା ତାହା ସର୍ବସାଧାରଣ ବ୍ୟବହାରରେ ସଂଗୀତ ବିଦ୍ୟା କୁହାଗଲା । ଗାନ୍ଧର୍ବ ବେଦ ମତରେ ସଂଗୀତୀ ବିଜ୍ଞାନ ଅଛି, ଯାହା ମନରେ ଅତି ଉତ୍ତମ ଭାବ ଗୁଡ଼ିକୁ ଉଦ୍ଦୀପ୍ତ କରେ ଏବଂ ଯାହା ମନରେ ଚଞ୍ଚଳତାକୁ ଦୂରକରି ସ୍ଥିର ରୂପରେ ପରମାତ୍ମାଙ୍କ ଧ୍ୟାନରେ ଲଗାଇଦିଏ ।

**ଗାନ୍ଧୀବାଦ** – ମହାତ୍ମାଗାନ୍ଧୀଙ୍କ ରାଜନୀତିକ ମତବାଦ ଗାନ୍ଧୀବାଦ ନାମରେ ପରଚିତ । ଗାନ୍ଧୀ ରାଜନୀତିକ କର୍ମ, ଶ୍ରମ ଓ ଆଧ୍ୟାତ୍ମିକ ଚେତନା ଉପରେ ବିଶ୍ୱାସ ସ୍ଥାପନ କରିଥିଲେ ଓ ବିଶେଷତଃ ତାଙ୍କର ଆଦର୍ଶକୁ ସେ ବାସ୍ତବ ରୂପରେ ସାକାର କରୁଥିଲେ । ତେଣୁ ଗାନ୍ଧୀବାଦ କହିଲେ ମାନବିକ ଲକ୍ଷଣ ଭିତ୍ତିରେ ଆଦର୍ଶର ସମନ୍ୱୟକୁ ବୁଝାଯାଏ । ରାଜନୀତି ସହିତ ଧର୍ମକୁ ପୃଥକ୍ ବୋଲି ଗାନ୍ଧୀ ଧାରଣା କରୁନଥିଲେ । ଗାନ୍ଧୀଙ୍କ ରାଜନୀତିକ ମତବାଦ ଯଥାର୍ଥରେ ସତ୍ୟ, ଅହିଂସା, ଆଧ୍ୟାତ୍ମିକ ଚେତନା ଉପରେ ପର୍ଯ୍ୟବସିତ ଥିଲା । ତେଣୁ ଭାରତୀୟଙ୍କ ପରିପ୍ରେକ୍ଷିରେ ଗାନ୍ଧୀଦର୍ଶନ ପ୍ରତ୍ୟେକ ସଚେତନଶୀଳ ନାଗରିକ, କବି ସାହିତ୍ୟିକ ଓ ରାଜନୀତିକଙ୍କ ଦ୍ୱାରା ଆଦୃତ ହୋଇ ଆସଥିଲା ।

**ଗାୟତ୍ରୀ ତତ୍ତ୍ୱ** – ଗାୟତ୍ରୀ ହେଉଛି ଋଗ୍ ବେଦର ଏକ ପ୍ରଧାନ ମନ୍ତ୍ର । ଗାନ କରିବା ଓ ଲୋକମାନଙ୍କର ତ୍ରାଣ କର୍ତ୍ତା ବୋଲି ଏହାର ନାମ ଗାୟତ୍ରୀ । ଅନ୍ୟ ଉତ୍କଳୀୟ ବୈଷ୍ଣବମାନଙ୍କ ଭଳି ପଞ୍ଚସଖା ଗାୟତ୍ରୀ ମନ୍ତ୍ରକୁ ଗ୍ରହଣ କରିଛନ୍ତି । ପଞ୍ଚସଖାମାନେ ନିଜ ଅଙ୍ଗର ବିଭିନ୍ନ ପ୍ରତ୍ୟଙ୍ଗରେ ଗାୟତ୍ରୀମନ୍ତ୍ରର ବିଭିନ୍ନ ଅକ୍ଷରକୁ ଅବସ୍ଥାପନ କରି ଧ୍ୟାନ-

ନିବିଷ୍ଟ ହୋଇଛନ୍ତି ଓ ତହିଁରେ ନିଜ ନାମ ସହ ମନ୍ତ୍ର ''ହରେ ରାମ ହରେ ରାମ ରାମ ରାମ ହରେ ହରେ । ହରେ କୃଷ୍ଣ ହରେ କୃଷ୍ଣ କୃଷ୍ଣ କୃଷ୍ଣ ହରେ ହରେ''ର ସ୍ଥାନ ସନ୍ଧାନ କରିଛନ୍ତି । ଚୈତନ୍ୟପନ୍ଥୀମାନେ କାମ ଗାୟତ୍ରୀ ମନ୍ତ୍ରର ଉପାସକ ମାତ୍ର ପଞ୍ଚସଖାମାନେ ଯୁଗଳ ଗାୟତ୍ରୀର ଉପାସକ । କାମ ଗାୟତ୍ରୀରେ କେବଳ କୃଷ୍ଣଙ୍କର ପ୍ରାଧାନ୍ୟ ଓ ଯୁଗଳ ଗାୟତ୍ରୀରେ ରାଧାକୃଷ୍ଣ ଉଭୟଙ୍କର ପ୍ରାଧାନ୍ୟ ଥାଏ । ସଂସାରର ସୃଷ୍ଟି ଓ ସ୍ଥିତି ଏହି ଗାୟତ୍ରୀ ଉପରେ ନିର୍ଭରକରେ ବୋଲି ପଞ୍ଚସଖାଙ୍କର ବିଶ୍ୱାସ ।

**ଗୀତା** – ସଂସ୍କୃତ ଶ୍ରୀମଦ୍ ଭଗବତ ଗୀତାର ଆଦର୍ଶରେ ଓଡ଼ିଆ ଭାଷାରେ ଓଡ଼ିଶାର ସାଧୁ ସନ୍ଥମାନେ ଶହ ଶହ ଗୀତାଗ୍ରନ୍ଥ ରଚନା କରିଛନ୍ତି । ଶ୍ରୀମଦ୍ ଭଗବତ ଗୀତା ସହିତ ଏ ଗୁଡ଼ିକର କୌଣସି ସଂପର୍କ ନାହିଁ । ଏହି ଗୀତା ଗୁଡ଼ିକ ଧର୍ମ, ଦର୍ଶନ ତତ୍ତ୍ୱ ଓଡ଼ିଶାର ପାରମ୍ପରିକ ଧର୍ମତତ୍ତ୍ୱ ବା ଓଡ଼ିଶୀ ସନ୍ଥ ମତ । ଅଧିକାଂଶ ଗୀତାରେ ସଂସ୍କୃତ ଗୀତା ପରି ଶ୍ରୀକୃଷ୍ଣ ଅର୍ଜ୍ଜୁନ ସମ୍ବାଦ ରହିଛି ବା ଅନ୍ୟାନ୍ୟ ଉକ୍ତି ପ୍ରତ୍ୟୁକ୍ତି ରହିଛି । ଅଧିକାଂଶ ଗୀତା ନବାକ୍ଷରୀରେ ଲେଖାଯାଇଛି । ଓଡ଼ିଆ ଗୀତା - ଓଡ଼ିଶୀ ବୈଷ୍ଣବଧର୍ମର ବିଭିନ୍ନ ବିଷୟରେ ନାମକରଣ କରାଯାଇଛି । ବଳରାମ ଦାସଙ୍କ ବେଦାନ୍ତସାର ଗୀତା, ଅରକ୍ଷିତ ଦାସଙ୍କ ମହୀମଣ୍ଡଳ ଗୀତା ଇତ୍ୟାଦି ଓଡ଼ିଶାର ଲୋକପ୍ରିୟ ଗୀତା ।

**ଗୀତି କବିତା** – ଇଂରାଜୀ ଲିରିକ୍‌ର ପ୍ରତିଶବ୍ଦ । ଗୀତିକବିତା ସର୍ବଦା ଛନ୍ଦମୟ ଓ ଆବେଗମୟ ମୁହୂର୍ତ୍ତର ସ୍ୱତଃସ୍ଫୂର୍ତ୍ତ ଉଚ୍ଚାରଣ । ଏହା ଆତ୍ମକୈନ୍ଦ୍ରିକ ଏବଂ ପ୍ରଭାବପୂର୍ଣ୍ଣ । ସାଙ୍ଗିତିକତା, ଅନୁଭୂତି, ଆବେଗ, ଆନ୍ତରିକତା, ଆତ୍ମସଚେତନତା, ଅଙ୍ଗୀକାରବଦ୍ଧତା ପ୍ରଭୃତି ଗୀତି କବିତାର ପ୍ରଧାନ ଉପାଦାନ । ସରଳ, ସାବଲୀଳ ଭାଷା ବା କଥିତ ଭାଷା ଗୀତି କବିତାର ପ୍ରାଣ । Lyric ଶବ୍ଦଟି ଲାଟିନ୍ Lyre ଶବ୍ଦରୁ ଆନୀତ । Lyre ହେଉଛି ପ୍ରାଚୀନ କାଳରେ ୟୁରୋପରେ ବ୍ୟବହୃତ ତାରଯୁକ୍ତ ବାଦ୍ୟଯନ୍ତ୍ର । (Lyre: One of the most ancient of stringed instruments similar to a harp (2)A primitive violin of mediaevial Europe sometimes called rebue'.

ଗୀତିକବିତା ଏକ ବ୍ୟକ୍ତିନିଷ୍ଠ କବିତା କିନ୍ତୁ ଏହାର ଆବେଦନ ସାର୍ବଜନୀନ । ଅନ୍ୟ ଭାଷାର ଗୀତିମୟ ଆତ୍ମଭାବମୂଳକ କ୍ଷୁଦ୍ର କବିତାକୁ ଗୀତି କବିତା କୁହାଯାଏ । ତେଣୁ ସାଙ୍କେତିକତା, ଅନ୍ତର୍ମୁଖୀନତା, ସ୍ୱତଃସ୍ଫୂର୍ତ୍ତତା ଓ ସଂକ୍ଷିପ୍ତତା - ଏଇ ଚାରୋଟି ଗୁଣର ସମାହାରରେ ଗୀତିକବିତା ଲିଖିତ ।

ବିଷୟ ଭାବ ଦୃଷ୍ଟିରୁ ଗୀତିକବିତାକୁ ଭାବାତ୍ମକ ଗୀତିକବିତା, ଭକ୍ତିମୂଳକ, ଦେଶପ୍ରେମ ମୂଳକ, ପ୍ରେମମୂଳକ, ପ୍ରକୃତି ସମ୍ପର୍କୀୟ, ସମ୍ବୋଧନମୂଳକ, ଶୋକଗୀତି ଇତ୍ୟାଦିରେ ବିଭକ୍ତ କରାଯାଇଥାଏ ।

**ଗୀତିନାଟ୍ୟ** – ଏକ ଅଙ୍କ ବିଶିଷ୍ଟ କ୍ଷୁଦ୍ର ନାଟିକା ଯେଉଁଠି ସଂଳାପ ଗଦ୍ୟ ଓ ପଦ୍ୟରେ ଗଠିତ ହୋଇଥାଏ । ସଙ୍ଗୀତ ବାହୁଲ୍ୟ ଗୀତିନାଟ୍ୟର ପ୍ରଧାନ ବିଶେଷତ୍ୱ । ଗୀତାଭିନୟ ଓ ଗୀତିନାଟ୍ୟ ସମଗୋତ୍ରୀୟ ହୋଇଥିଲେ ବି ଗୀତାଭିନୟରେ ସଂଗୀତର ବହୁଳତା ପରିଦୃଷ୍ଟ ହେଲେ ହେଁ ଗଦ୍ୟ ସଂଳାପର ସଂଯୋଜନା କରାଯାଇଥାଏ । ସୁଆଙ୍ଗ, ଗୀତିନାଟ୍ୟ, ଗୀତାଭିନୟ, ଯାତ୍ରା ଏକାର୍ଥବୋଧକ ହେଲେ ହେଁ ଏଗୁଡ଼ିକ ମଧ୍ୟରେ ଶୈଳୀଗତ ପାର୍ଥକ୍ୟ ଦେଖାଯାଏ । ପ୍ରାଚୀନ ସାହିତ୍ୟ ଗୀତିନାଟ୍ୟ ନିମ୍ନଶ୍ରେଣୀର ପ୍ରତୀତ ହେଉଥିଲା, କିନ୍ତୁ ସାମ୍ପ୍ରତିକ କାଳରେ ସୁଆଙ୍ଗ, ଗୀତାଭିନୟ ବିଲୀନ ହୋଇଯାଇଛି । ପରନ୍ତୁ ଗୀତିନାଟ୍ୟ ଲୋକନାଟ୍ୟ ପରଂପରା ଶାସ୍ତ୍ରୀୟତା ବହନ କରିବାର ସାମର୍ଥ୍ୟ ହରାଇ ବସିଛି । ବୈଷ୍ଣବ ପାଣି, ଗୋପାଳ ଛୋଟରାୟ ପ୍ରଭୃତି ଗୀତିନାଟ୍ୟ ରଚନାର ଧୂରୀଣ ଶିଳ୍ପୀ ।

**ଗୁଜ୍ଜରୀ** – ପ୍ରାଚୀନ ଓଡ଼ିଆ ସାହିତ୍ୟର ଗୀତି କବିତା ପର୍ଯ୍ୟାୟର । 'ଗୁଜ୍ଜରୀ' ରାଗ ଅନୁସରଣରେ ଲିଖିତ ଗୀତି ଗଜ୍ଜୁରୀ ଭାବରେ ଆଖ୍ୟାତ । ଏହା ଦୁଇ ପ୍ରକାର ଦେଖାଯାଏ (୧) ଅଷ୍ଟ ଗୁଜ୍ଜରୀ ଯାହା ଗୁଜ୍ଜରୀ ରାଗରେ ୮ ଗୋଟି ବିଭାଗରେ ୮ଟି ଗୀତିକା ରହିଅଛି । ଅଚ୍ୟୁତାନନ୍ଦଙ୍କ ଅଷ୍ଟଗଜ୍ଜୁରୀ ଏହାର ଉଦାହରଣ (୨) ନବ ଗୁଜ୍ଜରୀରେ ରାଧାକୃଷ୍ଣଙ୍କ ପ୍ରେମମୂଳକ ନଅଗୋଟି ଗୀତିକା ରହିଅଛି । ପ୍ରତ୍ୟେକ ଗୀତିକାରେ କବି ଭଣିତି ରହିଅଛି ।

**ଗୁର୍ଜ୍ଜରୀ** – ଏହି ବୃତ୍ତର ଦୁଇପାଦରେ ଏକ ପଦ ହୁଏ । ପ୍ରତି ପାଦରେ ନଅଟି ଅକ୍ଷର ଥାଏ ଏବଂ ଏହାର ତୃତୀୟ, ପଞ୍ଚମ ଓ ଶେଷ ଅକ୍ଷର ଉପରେ ଯତିପାତ ହୁଏ ।

ତୁ ନାଥ' ପର'ମ ଦୟାଳୁ
ଦୁଷ୍ଟ ନି'ବାରି' ସନ୍ଥ ପାଳୁ ।

**ଗୋଥିକ ଉପନ୍ୟାସ** – ଅତିଭୂତି ବା ଅପ୍ରାକୃତିକ ଘଟଣା ଉପରେ ଆଧାରିତ ଭୟଙ୍କର ଉପନ୍ୟାସ । ଅଷ୍ଟାଦଶ ଶତାବ୍ଦୀରେ ଏ ଧରଣର ଉପାଦାନ ଉପନ୍ୟାସ ଜଗତରେ ଦେଖାଦିଏ । ଭୂତ ଓ ଅଲୌକିକ ଚରିତ୍ର ଓ ସେମାନଙ୍କ କାର୍ଯ୍ୟାବଳୀ ଏଥିରେ ସ୍ଥାନ ପାଇଥାଏ । ନିର୍ଜ୍ଜନ ଭୂମି, ପୁରାତନ ଅଟ୍ଟାଳିକ, ଅପ୍ରାକୃତିକ ଶବ୍ଦ, ଭୟଙ୍କର ପ୍ରତିକ୍ରିୟା ଉପାଦାନ ଗୋଥିକ ଉପନ୍ୟାସରେ ମୁଖ୍ୟସ୍ଥାନ ଅଧିକାର କରେ ।

**ଗୋଲାହାଟ** – ସନ୍ଥ ସାହିତ୍ୟରେ ଗୋଲାହାଟ ହେଉଛି ବୈକୁଣ୍ଠକୁ ଯିବାପାଇଁ ବାଟ- ଏହିଠାରୁ ନୀଳଚକ୍ର ଦେଖାଯାଇଥାଏ । ଶୂନ୍ୟଭୂମି ଉପରେ ଗୋଲାହାଟରେ ୧୨ପୁଣ ବିସ୍ତାର ପରିକଳ୍ପିତ ହୋଇଛି । ଗୋଲାହାଟରେ ଦ୍ୱାର ହେଉଛି ତ୍ରିବେଣୀ ଏବଂ ତ୍ରିବେଣୀ ଉପରେ ପରମଙ୍କର ସ୍ଥାନ ଏବଂ ଲୟ ବଳରେ ସେ ଦୃଶ୍ୟ ହୋଇଥାନ୍ତି । ସେହି ସ୍ଥାନର ଓଲଟ କଦମ୍ବ ଯାହାର ମୂଳ ଉପରକୁ ଓ ଡାଳ, ଫୁଲ, ଫଳ ତଳକୁ ଓହଳିଛି, ତାହା

ସହସ୍ରାର କମଳ ଓଲଟ ଅବସ୍ଥାରେ ରହିବାର ବର୍ଣ୍ଣନା କରାଯାଇଛି । ଯୋଗୀ ଏହି ସ୍ଥାନକୁ ଲୟ କରି ଅନାହତନାଦ ବା ବେଣୁଧ୍ୱନି ଶୁଣିଥାଏ । ଏହି ସ୍ଥାନ ନିତ୍ୟରସର ସ୍ଥଳୀ । ବୈଚନ୍ଦ୍ରଗୀତାରେ 'ଗୋଲାହାଟ' ର ବର୍ଣ୍ଣନା ଅଛି ।

**ଗୌଢ଼ୀରୀତି** – ଭାରତୀୟ ସାହିତ୍ୟ ତତ୍ତ୍ୱରେ କାବ୍ୟମାର୍ଗ ପ୍ରସଙ୍ଗରେ ବିଚିତ୍ର ମାର୍ଗ ଗୌଡ଼ୀରୀତିର ନାମାନ୍ତର ମାତ୍ର । ବହୁବିଧ କଷ୍ଟ କଳ୍ପନା, ପାଣ୍ଡିତ୍ୟପ୍ରକର୍ଷ ଓ ବିଶେଷକରି ଶବ୍ଦାଡ଼ମ୍ବର ପୂର୍ଣ୍ଣ ଶବ୍ଦାଳଙ୍କାର ମାନଙ୍କର ବହୁଳ ପ୍ରୟୋଗ କରି ଯେଉଁ କବିମାନେ ନିଜର କାବ୍ୟ ପ୍ରତିଷ୍ଠା କରିବା ପାଇଁ ଚେଷ୍ଟିତ ସେମାନଙ୍କ ଲିଖନରୀତିକୁ ବିଚିତ୍ରମାର୍ଗୀ କିମ୍ୱା ଗୌଡ଼ୀରୀତି କୁହାଯାଏ । କାବ୍ୟର ଓଜଗୁଣ ଆଧାରିତର ରୀତିର ନାମ ଗୌଡ଼ୀ ।

## ଘ

**ଘଟମାନ କବି** – ପ୍ରାଚୀନ ସାହିତ୍ୟ ଶାସ୍ତ୍ରରେ କବି ଭେଦରେ ଘଟମାନ କବି ଅନ୍ୟତମ । ଯେଉଁମାନେ ହଠାତ୍ କୌଣସି ଉନ୍ନତ ଭାବନାର ବଶବର୍ତ୍ତୀ ହୋଇ ସଙ୍ଗେ ସଙ୍ଗେ ସୁନ୍ଦର କ୍ଷୁଦ୍ର କବିତା ରଚନା କରିପାରନ୍ତି, କିନ୍ତୁ ଦୀର୍ଘକାବ୍ୟ ଲେଖିବାକୁ ପୂର୍ଣ୍ଣ ଅସମର୍ଥ, ସେମାନଙ୍କୁ ଘଟମାନ କବି କୁହାଯାଏ ।

**ଘଟସାଧନା**– ଘଟସାଧନା ବା କାୟା ସାଧନା ଭାରତ ବର୍ଷର ବହୁ ପ୍ରାଚୀନ । ରାଜଯୋଗରେ ଯମ, ନିୟମ, ଆସନ, ପ୍ରାଣାୟମ, ପ୍ରତ୍ୟାହାର, ଧାରଣ, ଧ୍ୟାନ ଓ ସମାଧି ଏହି ଅଷ୍ଟାଙ୍ଗସାଧନାକୁ ସ୍ୱୀକୃତି ଦିଆଯାଇଛି । ବୌଦ୍ଧଗାନ ଓ ଦୋହାରେ ମଧ୍ୟ ଅବଧୂତି, ଅମଣଚମଣ, ନାଡ଼ୀ ସାହାଯ୍ୟରେ ଯୋଗ କରିବା ପ୍ରଣାଳୀ ଉଲ୍ଲେଖ ଅଛି । ନାଥ ଧର୍ମରେ ପରଂପରାରେ ସପ୍ତାଙ୍ଗ ଯୋଗ ସାଧନା ଏକ ପ୍ରଧାନ ସ୍ଥାନ ଲାଭ କରିଛି । ପଞ୍ଚସଖାମାନେ ଯୋଗ ବଳରେ ଘଟଚକ୍ର ଭେଦ କରି ପରଂବ୍ରହ୍ମଙ୍କୁ ଲାଭ କରିବାରେ ଏହି ସାଧନା ଉପରେ ଗୁରୁତ୍ୱ ଦେଇଛନ୍ତି ।

**ଘନବାଦ** – ଚିତ୍ରକଳାର ଏକ ଶୈଳୀ । ପ୍ରଥମ ପୃଥିବୀ ମହାସମର ପୂର୍ବରୁ ଏହା ଆରମ୍ଭ ହୋଇଥିଲା । ଫରାସୀ ଚିତ୍ରକାର ସେଜାନ୍‌ଙ୍କ ଚିତ୍ର ଶୈଳୀ ସହ ଏହା ସମ୍ବନ୍ଧିତ । ଭଙ୍ଗରେଖାକୁ କୌଣିକ ରୂପ ଦେଇ ଘନରୂପକୁ ବଳିଷ୍ଠ କରି ସ୍ପଷ୍ଟ ରୂପେ ବସ୍ତୁର ଘନତ୍ୱର ପରିଚୟ ପ୍ରଦାନ ହୋଇଥାଏ । ଇଂରାଜୀ କ୍ୟୁବିଜିମ୍ ର ଏହା ଓଡ଼ିଆ ପରିଭାଷା ଅଟେ ।

**ଘନାକ୍ଷରୀ** – ହିନ୍ଦୀ ସାହିତ୍ୟର ଏହା ଏକ ଲୋକପ୍ରିୟ ଛନ୍ଦ । ଘନାକ୍ଷରୀ ବୃତ୍ତରେ ୩୧ଟି ବବର୍ଣ୍ଣ ଥାଏ । ହିନ୍ଦୀ ବ୍ରଜ ଭାଷାର ଏହା ନିଜସ୍ୱ ଛନ୍ଦ ଅଟେ । ଭକ୍ତି ସାହିତ୍ୟର କବି ସନ୍ଥ ତୁଳସୀ ଦାସ ଏବଂ ସୁରଦାସଙ୍କ କବିତାରେ ଏହା ଅଧିକ ପରିଦୃଷ୍ଟ ହୁଏ ।

## ଚ

**ଚଉତିଶା–** ଚଉତିଶା ଗୀତି କବିତାର ଏକ ବଳିଷ୍ଠ ବିଭାବ । ଏହାର ରଚନା ପାଇଁ ନିର୍ଦ୍ଦିଷ୍ଟ ପଦ୍ଧତି ଅନୁସୃତ ହୁଏ । ଓଡ଼ିଆ ବର୍ଣ୍ଣମାଳାର 'କ' ଠାରୁ 'କ୍ଷ' ପର୍ଯ୍ୟନ୍ତ ଚଉତିରିଶ ବ୍ୟଞ୍ଜନକୁ କ୍ରମାନ୍ୱୟରେ ଆଦ୍ୟାନୁପ୍ରାସ ରୂପେ ବ୍ୟବହାର କରି ଏହାର ପଦ ଗୁଡ଼ିକ ରଚିତ ହୋଇଥାଏ । ତେତେକ ସ୍ଥଳରେ ବିପରୀତ କ୍ରମେ 'କ୍ଷ' ଠାରୁ ପଦାରମ୍ଭ ହୋଇ 'କ' ଠାରେ ଶେଷ ହୋଇଥାଏ । ଏହାକୁ 'ଓଲଟ ଚଉତିଶା' କୁହାଯାଏ ।

**ଚଉପଦୀ –** ଚାରି ପାଦରେ ଏକପଦ ଓ ଚାରିପଦକୁ ନେଇ ରଚିତ ଗୀତି କବିତାକୁ ଚଉପଦୀ କୁହାଯାଏ । ସଂସ୍କୃତ ଚତୁଃସ୍ପତୀ ଶବ୍ଦରୁ ଅପଭ୍ରଷ୍ଟ ହୋଇ ଓଡ଼ିଆରେ ଚୌପଦୀ ଓ ହିନ୍ଦୀରେ 'ଚୌପାଇ' ହୋଇଅଛି । ଚଉପଦୀ ପ୍ରାଚୀନ ଗୀତି କବିତାର ଏକ ବିଶିଷ୍ଟ ରଚନା ସ୍ୱରୂପ । ଏହା ସାଧାରଣତଃ ପ୍ରେମ, ବ୍ରହ୍ମଜ୍ଞାନ ଓ ନାୟକ ନାୟିକାଙ୍କ ବିରହ ମିଳନ ମୂଳକ ବିଷୟରେ ଲିଖିତ ହୋଇଥାଏ । ପ୍ରାଚୀନ ଓ ମଧ୍ୟ ଯୁଗରେ ଶତାଧିକ ଚଉପଦୀ ରଚିତ ହୋଇଅଛି । ଓଡ଼ିଆ ସଂଗୀତ ସାହିତ୍ୟରେ ଏହାର ସ୍ଥାନ ସ୍ୱତନ୍ତ୍ର । ଜଗନ୍ନାଥ ଦାସଙ୍କ ଷୋଳ ଚଉପଦୀ, ଉପେନ୍ଦ୍ର ଭଞ୍ଜଙ୍କ 'ଚଉପଦୀ ଭୂଷଣ' ଆମ ସାହିତ୍ୟର ବଳିଷ୍ଠ ଦୃଷ୍ଟାନ୍ତ ।

**ଚଉରାଶିସିଦ୍ଧାଚାର୍ଯ୍ୟ –** ପ୍ରାଚୀନ ଭାରତ ଓ ତିବ୍ବତ ଦେଶର ତାନ୍ତ୍ରିକ ପରଂପରାରେ ସୁପରିଚିତ ଚଉରାଶୀ ସିଦ୍ଧକବିଙ୍କର ଆବିର୍ଭାବ ଘଟିଥିଲା । ଆମ ଦେଶର କେତେକ ଗ୍ରନ୍ଥ, ଲୋକକଥା, ଧର୍ମପରଂପରାରୁ ଯେଉଁ ତଥ୍ୟ ମିଳେ ଏମାନଙ୍କ ଜନ୍ମସ୍ଥଳୀ ଓ କର୍ମସ୍ଥଳୀ ସମ୍ବନ୍ଧରେ ସଠିକ୍ ବିବରଣୀ ପ୍ରଦାନ କରିବା ସମ୍ଭବ ହୁଏ ନାହିଁ । ସ୍ଥୁଳ ଭାବରେ ଏମାନଙ୍କୁ ଖ୍ରୀଷ୍ଟୀୟ ୭ମ ଶତାବ୍ଦୀରୁ ୧୨ ଶତାବ୍ଦୀ ମଧ୍ୟରେ ଅବସ୍ଥାପିତ କରାଯାଇପାରେ ଏବଂ ଓଡ଼ିଶା, ବଙ୍ଗଳା, ଆସାମ, ବିହାର ପ୍ରଭୃତି ପୂର୍ବ ଭାରତୀୟ ଅଞ୍ଚଳକୁ ଏମାନଙ୍କ ଜନ୍ମସ୍ଥାନ ଭାବରେ ଗ୍ରହଣ କରାଯାଇଥାଏ । ଏମାନେ ସନ୍ଧ୍ୟା ଭାଷାରେ ଦୋହା, ଚର୍ଯ୍ୟାଗୀତି, ବଜ୍ରଗୀତି ରଚନା ସହ ବିଭିନ୍ନ ତନ୍ତ୍ର ଓ ଯୋଗ ବିଷୟକ ସଂସ୍କୃତ ଗ୍ରନ୍ଥମାନ ମଧ୍ୟ ରଚନା କରିଥିଲେ । ଏହି ଚଉରାଶୀ - ସିଦ୍ଧମଣ୍ଡଳୀ ଯେଉଁ ତାନ୍ତ୍ରିକ ସିଦ୍ଧାଚାର୍ଯ୍ୟମାନେ ଚର୍ଯ୍ୟା ସାହିତ୍ୟ ରଚନା କରିଥିଲେ ସେମାନଙ୍କ ମଧ୍ୟରେ ଅନେକ ଥିଲେ ତତ୍କାଳୀନ ଓଡ଼ିଶା ଭୂମିର ସାଧକ ଓ ସେମାନଙ୍କ ରଚନାବଳୀ ଲିଖିତ ହୋଇଥିଲା ତତ୍କାଳୀନ ଓଡ଼ିଶାର ପ୍ରଚଳିତ ଭାଷାରେ ।

୧. ଲୁଇପା, ୨. ଲୀଳାପା, ୩. ବିରୂପ. ୪. ଡୋମ୍ବିହେରୁକ, ୫. ଶବରୀପା, ୬. ସହରପାଦ (ରାହୁଲଭଦ୍ର), ୭. କଙ୍କାଳିପା, ୮. ମୀନପା(ବଜ୍ରପାଦ), ୯.ଗୋରକ୍ଷପା, ୧୦. ଚୌରାଙ୍ଗୀପା, ୧୧. ବୀଣାପା, ୧୨. ଶାନ୍ତିପା(ରତ୍ନାକର ଶାନ୍ତି), ୧୩. ତନ୍ତିପା,

୧୪. ଚର୍ମରିପା, ୧୫. ଖଡ଼ଣପା, ୧୬. ନାଗାର୍ଜୁନପା, ୧୭. କୃଷ୍ଣାଚାରୀପା, ୧୮. କର୍ଣ୍ଣରିପା ଆର୍ଯ୍ୟଦେବ, ୧୯. ପଗଣପା, ୨୦. ନାରୋପା, ୨୧.ଶାଳିପା (ଶୃଗାଳପାଦ), ୨୨. ତିଲୋପା, ୨୩. ଛତ୍ରପା, ୨୪. ଭଦ୍ରପା(ଭାଦେପା), ୨୫. ଦ୍ୱିଖଣ୍ଡିପା, ୨୬. ଅଯୋଗୀପା, ୨୭. କଡ଼ପାଦ, ୨୮. ଧୋବିପା, ୨୯. କଙ୍କଣପା, ୩୦. କମ୍ବଲପା(କାମଳି), ୩୧. ଢେଙ୍କିପା, ୩୨. ଭାଦେପା, ୩୩. ତନ୍ତୀପା, ୩୪. କୁକ୍‌କୁରୀପା, ୩୫. କୁବୁଜୀପା (କୁସୁଳୀ), ୩୬. ଧର୍ମପା ୩୭. ମହୀପା, ୩୮. ଅଚିନ୍ତ୍ୟପା, ୩୯. ବଭରୀପା. ୪୦. ନଳିନପା, ୪୧. ଭୁସୁକୁପା (ଶାନ୍ତିଦେବ), ୪୨. ଇନ୍ଦ୍ରଭୂତି, ୪୩. ମେଘପାଦ, ୪୪. କୁଠାରୀପା, ୪୫. କର୍ମାରପା, ୪୬. ଜାଳନ୍ଧରୀପା, ୪୭. ରାହୁଲପା, ୪୮. ଗର୍ଭରିପା, ୪୯. ଧୋକଡ଼ିପା, ୫୦. ମେଦିନୀପା, ୫୧. ପଙ୍କଜପା, ୫୨. ଘଣ୍ଟାପା, ୫୩. ଯୋଗୀପା, ୫୪. ଚେଲୁକପା, ୫୫. ଗୁଣ୍ଡୁରୀପା, ୫୬. ଲଞ୍ଚକପା, ୫୭. ନିର୍ଗୁଣପା, ୫୮. ଜୟାନନ୍ଦ, ୫୯. ଚର୍ପଟୀପା, ୬୦. ଚମ୍ପକପା, ୬୧. ବିଷଣପା, ୬୨. ଭଲିପା, ୬୩. କୁମରୀପା, ୬୪.ଚର୍ପଟିପା, ୬୫. ମଣିଭଦ୍ରା, ୬୬. ମେଖଳପା, ୬୭. ମଙ୍ଗଳପା, ୬୮. କଳକଳପା, ୬୯. କନ୍ଥଡିପା, ୭୦. ଦଉଡ଼ିପା, ୭୧. ଉଧଲିପା, ୭୨. କପାଳପା, ୭୩. କିଳପା, ୭୪.ପୁଷ୍କରପା, ୭୫. ସର୍ବଭକ୍ଷପା, ୭୬. ନାଗବୋଧିପା, ୭୭. ଦାରୀକପା, ୭୮.ପୁତ୍ତାଲିପା, ୭୯. ପନହପା, ୮୦. କୋକିଳାପା, ୮୧. ଅନଙ୍ଗପା, ୮୨. ଲକ୍ଷ୍ମୀଙ୍କରା, ୮୩. ସାମୁଦ୍ରପା, ୮୪. ଭଳିପା । (ଓଡ଼ିଆ ସାହିତ୍ୟର ଇତିହାସ - ଡକ୍ଟର ସୁରେନ୍ଦ୍ର ମହାରଣା)

**ଚଉଷଠି କଳା** – କାମଶାସ୍ତ୍ର ଅନୁଯାୟୀ କଳା ୬୪ ଭାଗରେ ବିଭକ୍ତ । ୬୪ କଳାର ନାମ ଯଥା - ଗୀତ, ବାଦ୍ୟ, ନୃତ୍ୟ, ନାଟକାଭିନୟ, ଆଲେଖ୍ୟ ବା ଚିତ୍ରଣ, ଚିତାଲେଖା, ଚାଉଳ ଓ ଫୁଲରେ ଚିତ୍ର ରଚନା, ପୁଷ୍ପାସ୍ତରଣ, ଦଶନବସନାଙ୍ଗରାଗ, ମଣିଭୂମିକା, ଶୟନ ରଚନା, ଉଦକ ବାଦ୍ୟ(ଜଳତରଙ୍ଗ ବାଦ୍ୟ), ଉଦକଘାତ(ସୁବାସିତ ଜଳ ସେଚନ), ମାଲ୍ୟ ଗ୍ରଥନ, କେଶଶେଖର ପ୍ରୀତ ଯୋଜନ(ମୁଣ୍ଡରେ ଫୁଲ ସଜାଇବା), ନେପଥ୍ୟଯୋଗ(ଦେଶ, କାଳ, ପାତ୍ର ଅନୁସାରେ ଭୂଷଣ ପରିଧାନ), କର୍ଣ୍ଣପତ୍ର ଭଙ୍ଗ (କାନକୁ କେଶଦ୍ୱାରା ଗୋପିତ କରିବା), ସୁଗନ୍ଧଯୋଜନ, ଭୂଷଣ ଇନ୍ଦ୍ରଜାଲ, କୌମାରଯୋଗ, ହସ୍ତଲାଘବ, ନାନାପ୍ରକାର ଶାକ ବ୍ୟଞ୍ଜନାଦି ପ୍ରସ୍ତୁତିକରଣ ।

**ଚଉଷଠି ଦଳ** – ସନ୍ଥ ସାହିତ୍ୟରେ ଶରୀର ସମଗ୍ର ଚଉଷଠି ଦଳ ବୋଲି କଥିତ ଅଛି ।

"ଚଉଷଠି ଦଳ ଯେ ଶରୀର ଯାକ ବହି " । (ରାଧା ରସାମୃତ ଗୀତା)

**ଚଣ୍ଡୀ ପୁରାଣ** – ଏହା ଆଦିକବି ସାରଳାଦାସଙ୍କ ଦ୍ୱାରା ରଚିତ । ଏହା ସଂସ୍କୃତ 'ସପ୍ତସତୀ ଚଣ୍ଡୀ ବା ଶ୍ରୀଦେବୀ ଭାଗବତର ଅନୁବାଦ ନୁହେଁ । ସ୍ଥୁଳତଃ ସଂସ୍କୃତ ଚଣ୍ଡୀପୁରାଣରେ ପ୍ରତିପାଦିତ କଥାବସ୍ତୁ ଚଣ୍ଡୀଙ୍କ ହସ୍ତରେ ମହିଷାସୁର ବଧ ସାରଳା ଚଣ୍ଡୀପୁରାଣର କଥାବସ୍ତୁ ହୋଇଥିଲେ ହେଁ, ଏହା କବିଙ୍କର ଏକ ମୌଳିକ ଗ୍ରନ୍ଥ । ଏହାର କଥାବସ୍ତୁ ଏହିପରି - ସିଂହଳାସୁରର ପୁତ୍ର ବଜ୍ରସିଂହର ପୁତ୍ର କପିଳ ସିଂହ ଚଉଦବର୍ଷ କାଳ ତପସ୍ୟା କରି ଶିବଙ୍କଠାରୁ ବରପ୍ରାପ୍ତ ହୋଇଛି । ଏହି ବର ବଳରେ ବହୁ ସ୍ତ୍ରୀ ଉପଭୋଗ କରିଛି । ତା'ର ନିଜ ସ୍ତ୍ରୀ ଧର୍ମରେଖା ଶୃଙ୍ଗାର ଭୟରେ ମଇଁଷି ରୂପ ଧାରଣ କରି ସିଂହଳ ଦ୍ୱୀପକୁ ଚାଲିଯାଇଛି । ସେଠାରେ ତାକୁ ବଳାତ୍କାର ହରଣ କରିଛି ଯମଙ୍କ ବାହାନ କୃତାନ୍ତ ନାମକ ମଇଁଷି; ଫଳରେ ଜନ୍ମ ନେଇଛି ମହାବଳବନ୍ତ ଓ ମହାତେଜ ସମ୍ପନ୍ନ ପୁତ୍ର 'ମହିଷାସୁର' ଯାହାର ମୁଣ୍ଡଟି ମଇଁଷିର ଓ ଶରୀରଟି ରାକ୍ଷାସର । ମହିଷାସୁର ବରପ୍ରାପ୍ତ ହୋଇ ଦେବତାଙ୍କ ଉପରେ ଅତ୍ୟାଚାର ଆରମ୍ଭ କଲା ସ୍ୱର୍ଗ ଅଧିକାର କରି ପାରିଜାତ ପୁଷ୍ପ, ରମ୍ଭା ଅପ୍ସରା, ଐରାବତ ହସ୍ତୀ ଏବଂ ଉଚ୍ଚୈଶ୍ରବା ଅଶ୍ୱ ହାସଲ କରିବା ନିମିତ୍ତ । କ୍ରମଶଃ ଅତ୍ୟାଚାର ବଢ଼ିବାରେ ଲାଗିଛି ଏବଂ ଦେବତାଗଣ ଅନନ୍ୟୋନପାୟ ହୋଇ ବିଷ୍ଣୁଙ୍କୁ ସ୍ତୁତି କରିଛନ୍ତି ଏବଂ ଦେବୀ ଦୁର୍ଗା ଜନ୍ମ ହୋଇଛନ୍ତି । ଦୁର୍ଗା ସମସ୍ତ ଶକ୍ତି ଖଟାଇ ମଧ ମହିଷାସୁରକୁ ବଧ କରିପାରି ନାହାଁନ୍ତି । ପରିଶେଷରେ ଦୁର୍ଗା ରାକ୍ଷସ ସମ୍ମୁଖରେ ବସ୍ତ୍ର ତ୍ୟାଗ କରିଛନ୍ତି । ରାକ୍ଷାସ ଦୁର୍ଗାଙ୍କର ବିବସ୍ତ୍ର ଶରୀର ଦେଖି ଆନନ୍ଦ ହୋଇଛି । ସେହି ଅବସରରେ ଦୁର୍ଗା ତା' ବକ୍ଷରେ ଶୂଳବିଦ୍ଧ କରି ତାକୁ ବିନାଶ କରିଛନ୍ତି ।

**ଚତୁର୍ଦ୍ଦଶପଦୀ କବିତା** – ଇଂରାଜୀ ପ୍ରତିଶବ୍ଦ ସନେଟ୍ (Sonnet)। ସନେଟ୍ ର ଅର୍ଥ କ୍ଷୁଦ୍ର ଧ୍ୱନି (Sonneto) । ଇଟାଲୀ ଭାଷାରେ Seono ରୁ ଏହା ଆନୀତ । ସନେଟ୍ କବିତାର ଆରମ୍ଭ ଇଟାଲୀରୁ ଏବଂ ଏହାର ଜନ୍ମଦାନ ପେଟ୍ରାର୍କ । ଇଂରାଜୀ ସାହିତ୍ୟରେ Wjatt ଏବଂ Surrey ପ୍ରଥମେ ସନେଟ୍ ରଚନା କରିଥିଲେ । ତାଙ୍କ ପରେ ଏଲିଜାବେଥ୍ ଯୁଗଠାରୁ ରୋମାଣ୍ଟିକ୍ ଯୁଗ ପର୍ଯ୍ୟନ୍ତ ଅନେକ ଇଂରେଜ କବି ସନେଟ୍ ରଚନା କରିଥିଲେ । ପ୍ରଥମେ ପେଟ୍ରାର୍କଟ ସନେଟ୍ ଥିଲା ଏଗାର ଅକ୍ଷର ବିଶିଷ୍ଟ ଚଉଦଟି ପାଦର ସମାହାର । ପଦ ଯୋଜନାରେ ଚଉଦଟି ଚରଣ ଦୁଇ ଭାଗରେ ବିଭକ୍ତ - ପ୍ରଥମ ଆଠ ଚରଣ (Octave) ଏବଂ ଦ୍ୱିତୀୟ ଭାଗଟି ଛଅଚରଣ ବିଶିଷ୍ଟ (Sesete) ହୁଏ । ପରବର୍ତ୍ତୀ ସମୟରେ ଏହି ସନେଟ୍‌ରେ ପରିବର୍ତ୍ତନ ଅଣାଗଲେ କେତେକ ସ୍ଥଳରେ ଚାରିପଦ ଲେଖାଏଁ ତିନୋଟି ଏବଂ ଶେଷ ଦୁଇଟି ଚରଣରେ ସମାପ୍ତ କରାଯାଏ ।

ଓଡ଼ିଆ ସାହିତ୍ୟରେ କବି ମଧୁସୂଦନ ରାଓ ଅଷ୍ଟକ, ଷଷ୍ଟକ ନିୟମରେ ସନେଟ୍ ରଚନା କରି ଚତୁର୍ଦ୍ଦଶପଦୀ ଗୀତି କବିତାର ଆରମ୍ଭ କରିଥିଲେ । ପରବର୍ତ୍ତୀ ସମୟରେ ଏହାର ଅନେକ ପରିବର୍ତ୍ତନ ହୋଇଛି ।

**ଚତୁର୍ଦ୍ଧାମୂର୍ତ୍ତି** – ସିଦ୍ଧ - ଜଗନ୍ନାଥ । ସୁଦର୍ଶନ ସ୍ତମ୍ଭ - ତ୍ରିପୁରା । ରାଧା - ସୁଭଦ୍ରା । ଅନନ୍ତ ଶେଷଦେବ - ବଳରାମ ମାୟା । ଏଠାରେ ଜଗନ୍ନାଥଙ୍କ ସିଂହାସନକୁ ଯୋଗମାୟା ବୋଲି କୁହାଯାଇଛି । ଯୋଗମାୟାଙ୍କ ଅଙ୍ଗରୁ ତ୍ରିମୂର୍ତ୍ତି ଜାତ ହୋଇଥିବାର କୁହାଯାଇଛି ।

**ଚଂପୂ** – ରଚନାତ୍ମକ କଳା ବୈଶିଷ୍ୟ ଦୃଷ୍ଟିରୁ ସମଗ୍ର କାବ୍ୟ ସାହିତ୍ୟକୁ (ଗ) ଗଦ୍ୟ (କ) ପଦ୍ୟ ଓ (ଗ) ଚମ୍ପୂ ଏହିପରି ତିନି ଭାଗରେ ବିଭକ୍ତ । ଗଦ୍ୟ ପଦ୍ୟ ମିଶ୍ରିତ ରଚନାକୁ ଚମ୍ପୁ କୁହାଯାଏ । ଗୋଟିଏ ପ୍ରବାହଶୀଳ କଥାବସ୍ତୁ ଓ ଭାବାତ୍ମକ ଚିନ୍ତାଧାରାକୁ ପଦ୍ୟମାଧମରେ ଓ ବର୍ଣ୍ଣନାତ୍ମକ ଉପାଖ୍ୟାନକୁ ଗଦ୍ୟ ମାଧ୍ୟମରେ ବର୍ଣ୍ଣନା କଲେ ବିଷୟବସ୍ତୁର କାବ୍ୟିକ ଚମତ୍କାରିତା ହୃଦୟଙ୍ଗମ କରାଉଥିବାରୁ ହିଁ କାବ୍ୟକୌଶଳର ପ୍ରବର୍ତ୍ତନ କରାଯାଇଥିଲା । ସଂସ୍କୃତ ସାହିତ୍ୟରେ ବହୁ ଚମ୍ପୂ କାବ୍ୟ ରଚିତ ହୋଇଛି । ଆଚାର୍ଯ୍ୟ ଦଣ୍ଡୀ ତାଙ୍କର କାବ୍ୟାଦର୍ଶରେ ଚମ୍ପୂର ସଂଜ୍ଞା ଦିଅନ୍ତି - ''ଗଦ୍ୟପଦ୍ୟମୟୀ କାଚିଚଂମ୍ପୂରିତ୍ୟଭିଧୀୟତେ'' ଏବଂ ହେମଚନ୍ଦ୍ର ଙ୍କ ଭାଷାରେ ''ଗଦ୍ୟପଦ୍ୟମୟୀସାଂକାସୋଚ୍ଛ୍ୱାସଚଂପୂ''। ବିଶେଷତଃ ଚଂପୂର ରସ ଥିଲା ଶୃଙ୍ଗାର । ବର୍ଣ୍ଣକଛନ୍ଦ ଓ ମାତ୍ରିକ ଛନ୍ଦର ପ୍ରୟୋଗ ଥିଲା । ସଂସ୍କୃତ ଚମ୍ପୂର ରଚୟିତାମାନେ ବିଷୟବସ୍ତୁ ଅପେକ୍ଷା ବର୍ଣ୍ଣନାଭଙ୍ଗୀ ଉପରେ ଗୁରୁତ୍ୱ ଦେଉଥିଲେ । ଓଡ଼ିଆ ଚମ୍ପୂ ସଂସ୍କୃତ ଚମ୍ପୂ ସାହିତ୍ୟର ପ୍ରଭାବରେ ରଚିତ ହୋଇଥିଲେ ବି ଏହା ମୁଖ୍ୟତଃ ଗୀତାଶ୍ରୟୀ । କବିସୂର୍ଯ୍ୟଙ୍କ କିଶୋର ଚନ୍ଦ୍ରନନ ଚମ୍ପୂ ଅତ୍ୟନ୍ତ ଜନପ୍ରିୟ ଯାହାକି ଉକ୍ତିପ୍ରତ୍ୟୁକ୍ତି ମୂଳକ ।

**ଚର୍ଯ୍ୟାଗୀତି** – ଚର୍ଯ୍ୟାର ପାରିଭାଷିକ ପ୍ରତିଶବ୍ଦ ଆଚରଣ । ମୂଳତଃ ଏହା ଆଚାର ବା ଆଚରଣ ଅର୍ଥରେ ବ୍ୟବହୃତ । ଏହାର ଅନ୍ୟ ଏକ ଅର୍ଥ ହେଉଛି ଅଧ୍ୟୟନ ବା ସମୀକ୍ଷା । ତନ୍ତ୍ରରେ ଶ୍ରେଣୀ ବିଭାଗର ନାମ ମଧ୍ୟ ଚର୍ଯ୍ୟା । ସଙ୍ଗୀତଶାସ୍ତ୍ର ଅନୁସାରେ ପ୍ରାଚୀନକାଳରେ ପ୍ରଚଳିତ ଏକ ବିଶେଷ ଗୀତରୀତିରନମ୍ ଚର୍ଯ୍ୟା ଥିଲା । ତେଣୁ ଚର୍ଯ୍ୟଗୀତି ତତ୍‌କାଳୀନ ସମାଜରେ ବିଶେଷ ଆଦୃତ ଗୀତି କବିତା କୁ ବୁଝାଏ । ଯାହା ସାଧାରଣ ଆଚରଣ ନୁହେଁ - କେବଳ ଯୋଗ ସାଧନ ପଦ୍ଧତି ସମ୍ପର୍କିତ ଆଚରଣକୁ ନେଇ ଲିଖିତ । ବିଶେଷ ଭାବରେ ବୌଦ୍ଧ ସହଜିୟା ସାଧକଙ୍କର ଆଚରଣୀୟ ବିଧି ନିଷେଧ ହେଉଛି ଚର୍ଯ୍ୟାଗୀତି ଗୁଡ଼ିକର ପ୍ରତିପାଦ୍ୟ ବିଷୟବସ୍ତୁ ।

ଚର୍ଯ୍ୟାଗୀତି ଗୁଡ଼ିକ ଦଶ ପାଦଯୁକ୍ତ । ଗୀତିଗୁଡ଼ିକର ଦ୍ୱିତୀୟ ପଦଟି ଧ୍ରୁବ ପଦ । ପ୍ରତ୍ୟେକ ପଦ ଶେଷରେ ଏହାର ପୁନରାବୃତ୍ତି ହୋଇଥାଏ । ଏଗୁଡ଼ିକ ସମୁହଗୀତି ଭାବରେ

ପ୍ରସିଦ୍ଧି ଲାଭ କରିଥିଲା । ଆଙ୍ଗିକଗଠନ ଦୃଷ୍ଟିରୁ ଛଅଗୋଟି ଗୀତି ବ୍ୟତୀତ ସମସ୍ତ ଚର୍ଯ୍ୟାଗୀତି ଦଶପାଦଯୁକ୍ତ । ଏହି ଛଅଟି ମଧ୍ୟରୁ ଚର୍ଯ୍ୟାଗୀତି - ୧୦, ୨୮ ଓ ୫୦ ଚଉଦ ପାଦ ବିଶିଷ୍ଟ ଏବଂ ଚର୍ଯ୍ୟାଗୀତି ସଂଖ୍ୟା ୨୧ ଓ ୨୨ - ବାରପାଦ ବିଶିଷ୍ଟ ଓ ଚର୍ଯ୍ୟାଗୀତି ୪୩ ଆଠ ପାଦ ବିଶିଷ୍ଟ । ଆବିଷ୍କୃତ ପୋଥିରେ ସ୍ଥାନିତ ହୋଇଥିବା ପଚାଶଟି ଗୀତିକୁ ରଚନା କରିଛନ୍ତି ୨୩ ଜଣ କବି । ଏ କବିମାନେ ଥିଲେ ସିଦ୍ଧ ଆଚାର୍ଯ୍ୟ ଯେଉଁମାନେ ସମସ୍ତେ ଚୌରାଶି ସିଦ୍ଧ ପରମ୍ପରାର ଅନ୍ତର୍ଭୁକ୍ତ ।

**ଚର୍ଯ୍ୟାପଦ** – ବୌଦ୍ଧଧର୍ମର ନୀତି ଅନୁସାରେ ବୋଧିଚିତ୍ତ ପ୍ରାପ୍ତି ପାଇଁ ଛଟି ପାରମିତା ସାଧନ୍ କରିବାକୁ ପଡ଼େ । ପ୍ରଜ୍ଞା ପାରମିତା ସେହି ସବୁ ସାଧନା ଯୋଗ୍ୟ ଅନୁଷ୍ଠାନ ମଧ୍ୟରେ ଗୁରୁତ୍ୱପୂର୍ଣ୍ଣ । ଏହି ସାଧନପ୍ରଣାଳୀ ହେଉଛି ଚର୍ଯ୍ୟାପଦ । ଚର୍ଯ୍ୟାର ପରିଣାମ ହେଉଛି ପ୍ରଜ୍ଞା ଓ ଉପାୟର ସିଦ୍ଧି । ସହଜିୟା ବୌଦ୍ଧ ସାଧକମାନେ କେତେକ ଗୀତିକା ରଚନା କରିଛନ୍ତି ଯାହା ଦୁଇ ଭାଗରେ ବିଭକ୍ତ (୧) ଦୋହାକୋଷ ଓ (୨) ଚର୍ଯ୍ୟାପଦ । ଏହି ଗୀତକାଗୁଡ଼ିକ ଗୂଢ଼ାର୍ଥ ପ୍ରଧାନ ଓ ପରକୀୟା ପ୍ରୀତିମୂଳକ । ତିଥି କ୍ରମରେ କମାଇ ଓ ବଢ଼ାଇ ପୂର୍ଣ୍ଣମୀ ଦିନ ଭୋଜନ କରିବାକୁ ହୁଏ । ଏଥିରେ ବ୍ରହ୍ମଚର୍ଯ୍ୟ ଅବଲମ୍ବନ କରି ବ୍ରତ ଓ ପ୍ରାୟଶ୍ଚିତ ବିଧାନ ଶାସ୍ତ୍ର ସମ୍ମତ । ଓଡ଼ିଆ ଶିଷ୍ଟ ସାହିତ୍ୟ ବିକାଶକୁ ଗବେଷକମାନେ ସହଜିଆ ବୌଦ୍ଧ ସିଦ୍ଧମାନଙ୍କର ଚର୍ଯ୍ୟାଗୀତିକା ଠାରୁ ନିର୍ଦ୍ଦେଶ କରିଛନ୍ତି । ଏହି ୮୪ ସିଦ୍ଧମାନଙ୍କ ମଧ୍ୟରୁ ଅନେକ ଉତ୍କଳବାସୀ ଥିଲେ । ଏହି ସହଜ ଧର୍ମୀ ଗୀତିକାଗୁଡ଼ିକ ଚର୍ଯ୍ୟାପଦ ଦୋହା ଭାବରେ ପରିଚିତ ।

**ଚରଣ** – ପ୍ରାଚୀନ ସାହିତ୍ୟରେ ପଦ୍ୟ ରଚନାରେ ପ୍ରତିଟି ଧାଡ଼ିକୁ ଚରଣ କୁହାଯାଏ ।

**ଚରିତ୍ର** – ସାହିତ୍ୟରେ ଭାବର ବିଶ୍ଳେଷଣ ଯାହା ମାଧ୍ୟମରେ କରାଯାଏ ତାହା ଚରିତ୍ର । ତାହା ମଣିଷ, କିମ୍ବା ମଣିଷେତର ପ୍ରାଣୀ କିମ୍ବା ଜୀବନଶୂନ୍ୟ ପଦାର୍ଥବିଶେଷ ବି ହୋଇପାରେ । ଚରିତ୍ର ଦୁଇ ଶ୍ରେଣୀର - ସରଳ ଚରିତ୍ର ଓ ଜଟିଳ ଚରିତ୍ର । ଅନ୍ୟକ୍ଷେତ୍ରରେ ମୁଖ୍ୟ ଚରିତ୍ରଭାବେ ମଧ୍ୟ ଅଭିହିତ କରାଯାଇଥାଏ । ଲିଙ୍ଗଭେଦରେ ପୁରୁଷ ଚରିତ୍ର ଓ ନାରୀ ଚରିତ୍ର ଏବଂ ବିଷୟାନୁସାରେ ବାସ୍ତବ ଚରିତ୍ର ଓ କାଳ୍ପନିକ ଚରିତ୍ର ମଧ୍ୟ ଥାଏ । ତେବେ ପ୍ରଚଳିତ ଅର୍ଥରେ ଚରିତ୍ରମାନେ ସାହିତ୍ୟ ସୃଷ୍ଟି ମଧ୍ୟରେ ଥିବା ନାଟକ, ଉପନ୍ୟାସ, ଗଳ୍ପ ପ୍ରଭୃତିରେ ବିଶେଷ ଗୁଣଯୁକ୍ତ ବ୍ୟକ୍ତିବିଶେଷକୁ ଚରିତ୍ର ଭାବେ ଆଖ୍ୟା ଦିଆଯାଏ । ପୂର୍ବଯୁଗର ସାହିତ୍ୟ କୃତିର ଚରିତ୍ର ଶ୍ରେଣୀ ବା ସମୂହକୁ ପ୍ରତିନିଧିତ୍ୱ କରୁଥିଲାବେଳେ ଆଧୁନିକ ଯୁଗର ଚରିତ୍ର, ବ୍ୟକ୍ତିକୈନ୍ଦ୍ରିକ । ନାଟକରେ ପ୍ରତିଟି ଅଭିନେତା, ଅଭିନେତ୍ରୀ ଗୋଟିଏ ଗୋଟିଏ ଚରିତ୍ର ମଧ୍ୟ ।

**ଚାର୍ବାକ ଦର୍ଶନ** – ଚାର୍ବାକ ନାସ୍ତିକମତ ପ୍ରବର୍ତ୍ତକ ଋଷି ବିଶେଷ । କେହି କେହି ଚାର୍ବାକ୍ କେହି ନଥିଲେ ବୋଲି କହନ୍ତି । ସେ ସ୍ୱୟଂ ଦେବଗୁରୁ ବୃହସ୍ପତି । ତେଣୁ ଚାର୍ବାକ୍ ଦର୍ଶନକୁ ବୃହସ୍ପତି ଦର୍ଶନ କୁହାଯାଏ । ଏହି ଦର୍ଶନରେ ବିଷୟ ସୁଖ (ଦୈହିକ ଓ ମାନସିକ) ପରମ ପୁରୁଷାର୍ଥ ବୋଲି ମନେ କରିଥାନ୍ତି । ଯାବତ୍ ଜୀବନ ସୁଖଂ ଜୀବେତ୍, ଋଣଂ କୃତ୍ୱା ଘୃତଂ ପିବେତ୍' ଚାର୍ବାକ୍ ଦର୍ଶନରେ ସବୁଠାରୁ ଲୋକପ୍ରିୟ ନୀତି ।

**ଚାରିଅଗ୍ନି** – ଓଡ଼ିଆ ସନ୍ଥ ସାହିତ୍ୟରେ ଭୂଅଗ୍ନି, ଜଳାଗ୍ନି, ବଜ୍ରାଗ୍ନି ଓ ରୁଦ୍ରାଗ୍ନି ଯଥାକ୍ରମେ ଇନ୍ଦ୍ରିୟ, ନାଭି, କଣ୍ଠ ଓ ହୃଦୟରେ ରହିଥାନ୍ତି ବୋଲି କଥିତ ଅଛି ।

**ଚାରିକଳା** – ଏହା ସନ୍ଥ ସାହିତ୍ୟରେ ଦେଖାଯାଏ । ଉର୍ମି, ଧୂର୍ମି, ଜ୍ୟୋତି, ଜ୍ୱାଳା- ଏହା ସାଧନାର ଅଂଶବିଶେଷ ଓ ଏସବୁ ରବିଙ୍କର ଚାରିକଳା ବୋଲି କଥିତ

''ଉର୍ମି ଧୂର୍ମି ଜ୍ୟୋତି ଜ୍ୱାଳା ନାମ ତାର
ଏ ରବିର ଚାରିକଳା''। (ଛତିଶ ଗୁପ୍ତଗୀତା)

**ଚାରିଖାନି** – ଅଚ୍ୟୁତାନନ୍ଦ ଶବ୍ଦବ୍ରହ୍ମ ବା ଚାରିଖାନି ନାମରେ ଯେଉଁ ଗ୍ରନ୍ଥ ଲେଖିଛନ୍ତି ସେଥିରେ ଆରମ୍ଭ, ଘଟ, ପରଚେ ଓ ନିସ୍ପତି ଯୋଗରେ ବ୍ରହ୍ମପ୍ରାପ୍ତିର କଥା କୁହାଯାଇଛି ।

**ଚାରିଗୁମ୍ଫା** – ସନ୍ଥ ସାହିତ୍ୟରେ ଚାରିଗୁମ୍ଫା ଶରୀର ସାଧନାର ମୂଳକଥା । ନୀଳୋତ୍ପଳ ଗୁମ୍ଫା (ମୁଖବାଟ), ଭ୍ରମର ଗୁମ୍ଫା(ନାସା ମଧ୍ୟବର୍ତ୍ତୀ ନିଗୁଢ଼ ସ୍ଥାନ), ପରମଶୂନ୍ୟ ଗୁମ୍ଫା(ନୟନ), ଅନାହତ ଗୁମ୍ଫା(ଶ୍ରବଣ) - ଏହି ଚାରିଗୁମ୍ଫା ମଧ୍ୟରେ ଗୋଲହାଟ ରହିଛି । ଏହି ହାଟର ମଧ୍ୟ ସ୍ଥଳରେ ରାଧାକୃଷ୍ଣଙ୍କର ନିତ୍ୟରସ ଚାଲିଛି । ହାଟର ୧୮ ଦାଣ୍ଡ, ୭୨ ସନ୍ଧି । ସେହି ସନ୍ଧିମାନଙ୍କର ଦିବ୍ୟଜ୍ୟୋତି ଝଲସିତ । ସେହି ହାଟରେ ସବୁଦ୍ରବ୍ୟ ରହିଥିବାର ବର୍ଣ୍ଣନା କରାଯାଇଛି ।

**ଚାରିଜ୍ୟୋତି** – ଶୂନ୍ୟରେ ଶ୍ୱେତ, ପୀତ, ହରିତ ଓ କୃଷ୍ଣ ବର୍ଣ୍ଣର ଜ୍ୟୋତି ଯୋଗୀ ଦର୍ଶନ କରିଥାଏ ବୋଲି ସନ୍ଥ ସାହିତ୍ୟରେ କଥିତ ଅଛି ।

''ଶୂନ୍ୟେ ଚାରିଜ୍ୟୋତି ପ୍ରକାଶ ହୋଇଅଛି
ଶ୍ୱେତପୀତ ହରିତ ଯେ କୃଷ୍ଣ ବର୍ଣ୍ଣେ ଅଛି । (ରାଧା ରସାମୃତ ଗୀତା)

**ଚାରିମୁଦ୍ରା** – ପଞ୍ଚସାଖା ସହିତ ଚାଚେରୀ, ଖେଚରୀ, ଉନ୍ମନୀ ଓ ଅଗୋଚରୀ ମୁଦ୍ରା- ଏହିପରି ଚାରିମୁଦ୍ରାର ବୈଶିଷ୍ଟ୍ୟ ପ୍ରତିପାଦନ ହୋଇଥାଏ ।

**ଚାରିଯୋଗ** – ଆରମ୍ଭ, ଘଟ (ଉଠ), ପରଚେ ଓ ନିସ୍ପତୀ । ହଠଯୋଗରେ ରେଚକ, ପୂରକ, କୁମ୍ଭକ ଓ ତ୍ରାଟକ ଯୋଗ ରହିଛି । ଓଡ଼ିଶାର ସନ୍ଥସାଧକଗଣ ଏହି ଯୋଗକୁ ଗ୍ରହଣ କରିଥିଲେ । ରେଚକ-ଅଗ୍ନି, ପୂରକ-ଚନ୍ଦ୍ର, କୁମ୍ଭକ- ବାୟୁ, ତ୍ରାଟକ - ଲୋଚନରେ ସାଧିତ ହୋଇଥାଏ ।

**ଚାରିସାଧନା** – ଜ୍ୟୋତି, ଛାୟା, ଅଜାତ ଓ ସହଜାତ - ଚାରି ସାଧନା ନାମରେ ଖ୍ୟାତ । ଅବାଡ଼ ପିଛୁଡ଼ା ନପଡ଼ିବା ଅର୍ଥରେ ବ୍ୟବହୃତ ହୋଇଛି ।

''ସହଜ ସାଧିବୁ ହେ ଅବାଡ଼ ନ ପଡ଼ିବ''।

**ଚେତନା** – ଚୈତନ୍ୟର ପରିପ୍ରକାଶ । ଇଂରାଜୀରେ consciousness । ଆଧୁନିକ ବିଜ୍ଞାନରେ ଚେତନା ସମ୍ବନ୍ଧୀୟ ତତ୍ତ୍ୱ ହେଉଛି ମନସ୍ତତ୍ତ୍ୱ । ମଣିଷର କାର୍ଯ୍ୟକଳାପ ତାର ମାନସପ୍ରକିୟା ଦ୍ୱାରା ପରିଚାଳିତ ହୁଏ । ଚେତନ ମନ ମଣିଷର ଜାଗ୍ରତ ଅବସ୍ଥାରେ କ୍ରିୟାଶୀଳ ରହେ । ଏହାର ଇଗୋ (Ego) ଓ ସୁପରଇଗୋ (Super ego) ସହିତ ସମ୍ବନ୍ଧ ରହେ କିନ୍ତୁ ଇଡ଼ (Id) ପର୍ଯ୍ୟନ୍ତ ଯାଇପାରେ ନାହିଁ । ମନସ୍ତତ୍ତ୍ୱ ଅନୁସାରେ ଚେତନ ମାନସ୍ ଅବଚେତନ ମନର ବାହ୍ୟ ପ୍ରକାଶ । ପୁଣି ଚେତନ ମାନସ ଅବଚେତନର ଶକ୍ତିକୁ ଦମନକରି ରଖେ । ଭାରତୀୟ ଶାସ୍ତ୍ର ପୁରାଣରେ ଏହା ବିବେକ କୁହାଯାଏ ।

**ଚେତନା ପ୍ରବାହ** – ଏହା ମନସ୍ତତ୍ତ୍ୱର କଥା- ମଣିଷର କାର୍ଯ୍ୟକଳାପ ମୂଳରେ ଥାଏ ଅବଚେତନ ଓ ଚେତନ ମନର ନିର୍ଦ୍ଦେଶ । କାମ ଗୋଟିଏ ହେଲେ, ଚିନ୍ତା ଅନେକ ଏବଂ ଏହି ଚିନ୍ତାଗୁଡ଼ିକ ଅନେକସମୟରେ ବିକ୍ଷିପ୍ତ ଆକାରରେ ପ୍ରବାହିତ ହୋଇଥାଏ । ତାହାହିଁ ଚେତନାପ୍ରବାହ । ଜନ୍ମଠାରୁ ମୃତ୍ୟୁ ପର୍ଯ୍ୟନ୍ତ ମଣିଷ ମନରେ ଚେତନା ପ୍ରବାହ ଲାଗିରହିଛି, ଜାଗ୍ରତରେ ହେଉ ବା ସୁସୁପ୍ତିରେ ହେଉ । ସାହିତ୍ୟରେ ଚେତନା ପ୍ରବାହର ଦିଗ ଉନ୍ମୋଚନ ହେଲା ଫ୍ରୟଡ଼ଙ୍କ ଯୌନତତ୍ତ୍ୱରୁ ଓ ହେନେରୀ ଜେମ୍ସଙ୍କ ବାଣୀରୁ ''ଅନୁଭବ ସୀମିତ ନୁହେଁ କିମ୍ବା ସଂପୂର୍ଣ୍ଣ ନୁହେଁ । ଚେତନାର ଗନ୍ତାଘର ହିଁ ଅନୁଭବର ଗନ୍ତାଘର ।'' ଏହାହିଁ ଚେତନାପ୍ରବାହର (Stream of Consciousness) ଆଦିକଥା । ଉପନ୍ୟାସ ସାହିତ୍ୟରେ ଏହି ଚେତନାପ୍ରବାହର ପରୀକ୍ଷା ଉଲ୍ଲେଖଯୋଗ୍ୟ ।

**ଚିତ୍ରକଳ୍ପ** – ଓଡ଼ିଆରେ ବ୍ୟବହୃତ ଚିତ୍ରକଳ୍ପ ଇଂରାଜୀ Image ର ପ୍ରତିଶବ୍ଦ । ଯେତେବେଳେ ବାସ୍ତବ ଜଗତର ଦୃଶ୍ୟରାଜି ସାହିତ୍ୟିକ ପରିପ୍ରକାଶରେ ପାଠକ ଚିତ୍ତରେ ବର୍ଣ୍ଣିତ ଚିତ୍ରର ପ୍ରତୀତି ଆଣେ, ସେତେବେଳେ ତାହାକୁ ଚିତ୍ରକଳ୍ପ କୁହାଯାଏ । ଏହା ଏକ ଶବ୍ଦଚିତ୍ର ଯାହାକି ଆବେଗ ଓ ଜଟିଳଚେତନା ସହ ସମ୍ବନ୍ଧିତ କରିଥାଏ ।

**ଚିତ୍ରକଳ୍ପ ବାଦ** – ସାହିତ୍ୟ କ୍ଷେତ୍ରରେ ଏହା ଏକ ଅନ୍ଦୋଳନ । ଏହା ଯଥାର୍ଥରେ ବିଂଶ ଶତାବ୍ଦୀର ପ୍ରଥମ ପାଦରେ ଆରମ୍ଭ ହୋଇଥିଲା । କାବ୍ୟ ରଚନା କ୍ଷେତ୍ରରେ ଭାବପ୍ରବଣତା ଓ କଳ୍ପନାପ୍ରବଣତାର ବିରୋଧରେ ଗଢ଼ିଉଠିଥିଲା ଚିତ୍ରକଳ୍ପବାଦୀ ଆନ୍ଦୋଳନ । ପ୍ରଥମେ ଏଇ କାବ୍ୟିକ ଅନ୍ଦୋଳନ ଇଂଲଣ୍ଡରେ ଦେଖାଦେଇଥିଲା ଓ କ୍ରମେ ଏହା ଅନ୍ୟାନ୍ୟ ପାଶ୍ଚାତ୍ୟ ସାହିତ୍ୟକୁ ପ୍ରଭାବିତ କରିଥିଲା । ଟି:ଇ:ହ୍ୟୁମଙ୍କୁ ଏହି ଅନ୍ଦୋଳନର ପ୍ରଥମ ପ୍ରବକ୍ତା

କୁହାଯାଏ । ପ୍ରାଚୀନ ଓଡ଼ିଆ କାବ୍ୟ କବିତାରେ ଚିତ୍ରକଳ୍ପର ବହୁଳ ବ୍ୟବହାର ଲକ୍ଷ୍ୟ କରାଗଲେ ମଧ୍ୟ ପାଶ୍ଚାତ୍ୟ ଚିତ୍ରକଳ୍ପ ଅନ୍ଦୋଳନର ଆଭିମୁଖ୍ୟ ଓ ଲକ୍ଷଣ ସଚ୍ଚିଦାନନ୍ଦ ରାଉତରାୟଙ୍କ କବିତାରୁ ପ୍ରକୃତରେ ଆରମ୍ଭ ହୋଇଥିଲା ।

**ଚୋଖୀ** – ଏହା ଏକ ବୃତ୍ତ ବା ଛନ୍ଦ । ଏହାର ପ୍ରତ୍ୟେକ ପଦ ଚାରିପାଦ ବିଶିଷ୍ଟ । ପପ୍ରଥମ ଓ ଦ୍ୱିତୀୟ ପାଦ ର ଶେଷାକ୍ଷରର ମେଳ ଥାଏ । ତୃତୀୟ ଓ ଚତୁର୍ଥ ପଦର ଶେଷାକ୍ଷରର ମେଳ ଥାଏ । ପ୍ରଥମ ଓ ଦ୍ୱିତୀୟ ପାଦର ଅକ୍ଷର ସଂଖ୍ୟା ଅଣତିରିଶ ଲେଖାଏଁ । ତୃତୀୟ ପାଦରେ ନଅ ଅକ୍ଷର ଓ ଚତୁର୍ଥ ପାଦର ତେର ଅକ୍ଷର ଥାଏ । ପ୍ରଥମ ଓ ଦ୍ୱିତୀୟ ପାଦର ପ୍ରତ୍ୟେକ ଷଷ୍ଠ, ଅଷ୍ଟମ, ଚତୁର୍ଦ୍ଦଶ, ଷୋଡଶ, ଦ୍ୱିବିଂଶତି, ଚତୁର୍ବିଂଶତି ଓ ଶେଷ ଅକ୍ଷର ଉପରେ ଯତିପାତ ହୁଏ । ତୃତୀୟ ପାଦର ଷଷ୍ଠ ଓ ଶେଷ ଅକ୍ଷର ଉପରେ ଏବଂ ଚତୁର୍ଥ ପାଦର ଷଷ୍ଠ, ଅଷ୍ଟମ ଓ ଶେଷାକ୍ଷର ଉପରେ ଯତି ପଡ଼େ ।

ମଙ୍ଗଳେ ଅଇଲା'ଉଷା' ବିକଚ ରାଜୀବ' ଦୃଶା'
ଜାନକୀ ଦର୍ଶନ'ତୃଷା' ହୃଦୟେ ବହି
କର ପଲ୍ଲବେ ନୀ'ହାର' ମୁକ୍ତା ଧରି ଉପ'ହାର'
ସତୀଙ୍କ ବାସ' ବାହାର'ପ୍ରାଙ୍ଗଣେ ରହି'
କଳକଣ୍ଠ କଣ୍ଠେ କହିଲା'
ଦରଶନ ଦିଅ'ସତୀ' ରାତି ପାହିଲା ।' (ତପସ୍ୱିନୀ)

## ଛ

**ଛନ୍ଦ** – ଅନୁପାତ କ୍ରମିକ ଅଥବା ଅନୁକ୍ରମିକ ଶବ୍ଦର ପୁନରାବୃତ୍ତି କୁ ଛନ୍ଦ କୁହାଯାଇପାରେ । ସମପରିମିତ ସମପ୍ରାନ୍ତରେ ଯଦି ଗୋଟିଏ ଶବ୍ଦର, ଅକ୍ଷରର, ଧ୍ୱନିର ପୁନରାବୃତ୍ତି ପରେ ଏବଂ ତାହା ପଢ଼ି ଓ ବିଧିବଦ୍ଧ ତାଳ ସୃଷ୍ଟିକରେ, ତାହା କାବ୍ୟ କବିତାରେ ଛନ୍ଦ ବୋଲି କୁହାଯାଏ । ଛନ୍ଦଃ ଶବ୍ଦର ସାଧାରଣ ଅର୍ଥ ଧ୍ୱନି ବିନ୍ୟାସର ସମାନୁପାତିକତା । କାବ୍ୟରେ ଛନ୍ଦର ପ୍ରୟୋଗ କାବ୍ୟକୁ ରସମୟ ତଥା ଶ୍ରୁତିମଧୁର କରିଥାଏ । ଛନ୍ଦ ଯୋଜନାରେ ଅକ୍ଷର କୁ ଦଳ ନାମରେ ନାମିତ କରାଯାଏ ଏବଂ ହ୍ରସ୍ୱ ସ୍ୱରର ଉଚ୍ଚାରଣ କାଳକୁ କଳା (mora) ନାମରେ ପରିଚିତ କରାଯାଏ । କାବ୍ୟ ଛନ୍ଦ ପରି ଗଦ୍ୟ ଛନ୍ଦ ମଧ୍ୟ ଅଛି । ଅବଶ୍ୟ ପଦ୍ୟ ଛନ୍ଦ ପରି ଗଦ୍ୟ ଛନ୍ଦରେ କୌଣସି ଧରାବନ୍ଧା ନିୟମ ନାହିଁ । ଏହା କେବଳ ରସବୋଧରୁ ଅନୁଭୂତ ହୁଏ ।

**ଛଦ୍ମ**– ଏକ ନୂତନ ସଂଚାରୀ ଭାବ । ଅବମାନ, ବିପରୀତ ପକ୍ଷ ଏବଂ କୁତ୍ସିତ ଚେଷ୍ଟା ଏହାର ବିଭାବ ଅଟେ । ବକ୍ରୋକ୍ତି, ନିରନ୍ତରସ୍ମିତ ଏବଂ ଲୁଚିଛପି ଦେଖିବା ଏବଂ ନିଜର ବିକାରକୁ ଲୁଚାଇବା ଏହାର ଅନୁଭବ ଅଟେ । 'ରସତରଙ୍ଗିଣୀ'ରେ ଶୃଙ୍ଗାର ଓ ସଂଗ୍ରାମରେ ଛଦ୍ମ ଭାବର ପର୍ଯ୍ୟାପ୍ତ ଉଦାହରଣର ରହିଛି ।

**ଛନ୍ଦଶାସ୍ତ୍ର** – ଛନ୍ଦର ଉତ୍ପତ୍ତି ଆଦି ଆଚାର୍ଯ୍ୟ ପରଂପରା, ଭେଦ, ପ୍ରଭେଦ, ଜାତି, ଲକ୍ଷଣ, ରଚନା ବିଧି, ବିସ୍ତାର ସଂଖ୍ୟା, ବର୍ଗୀକରଣ ଇତ୍ୟାଦି ଛନ୍ଦ ସମ୍ବନ୍ଧି ବିବିଧ ପକ୍ଷର ନିରୂପଣ କରୁଥିବା ଶାସ୍ତ୍ରକୁ ଛନ୍ଦଶାସ୍ତ୍ର କୁହାଯାଏ । ଭାରତୀୟ ଛନ୍ଦଶାସ୍ତ୍ରର ଉଦ୍‌ଗମ ବୈଦିକ ସାହିତ୍ୟରେ ମିଳେ । ଛନ୍ଦ ବେଦାନ୍ତ ଅନ୍ତର୍ଗତ । ଏହାକୁ ବେଦର ଚରଣ ବୋଲି ଗ୍ରହଣ କରାଯାଇଥାଏ ।

**ଛନ୍ଦୌଚିତ୍ୟ** – କବିତାରେ ଉପଯୁକ୍ତ ଛନ୍ଦ ଯୋଜନାକୁ ଛନ୍ଦୋଚିତ୍ୟ ବା ବୃତ୍ତୌଚିତ୍ୟ କୁହାଯାଏ । ପ୍ରତ୍ୟେକ ଭାଷାରେ ଛନ୍ଦମାନଙ୍କର ସ୍ୱାତନ୍ତ୍ର୍ୟ ପରିଲକ୍ଷିତ ହୁଏ । ସଂସ୍କୃତରେ ମାତ୍ରାଛନ୍ଦର ପ୍ରୟୋଗ ଭାବାନୁସାରୀ ହୋଇଥାଏ । ଓଡ଼ିଆ ଛନ୍ଦ ବିଶେଷ କରି ଅକ୍ଷରେ ମୂଳକ । ଓଡ଼ିଆ ସାହିତ୍ୟରେ ନିର୍ଦ୍ଦିଷ୍ଟ ଭାବପାଇଁ ନିର୍ଦ୍ଦିଷ୍ଟ ଛାନ୍ଦର ପ୍ରୟୋଗ ଉଦ୍ଦେଶ୍ୟରେ କୌଣସି ଧରାବନ୍ଧା ଚଳଣି ନାହିଁ । ସବୁ ରସର ଭାବଦ୍ୟୋତନା ପାଇଁ ପ୍ରାୟ ଅଧିକାଂଶ ଛନ୍ଦ ରସଭାବରେ ପ୍ରଯୁକ୍ତ ହୁଅନ୍ତି ।

**ଛାନ୍ଦ** – ଓଡ଼ିଆ ଛନ୍ଦଯୁକ୍ତ ଏକ ପ୍ରକାର ପଦ୍ୟ ରଚନା । ପ୍ରାଚୀନ ଓଡ଼ିଆ ସାହିତ୍ୟରେ ଅନେକ ଛାନ୍ଦ ଦେଖିବାକୁ ମିଳିଥାଏ ।

**ଛାୟାବାଦ** – ଛାୟାବାଦ ଭାରତୀୟ ହିନ୍ଦୀ ସାହିତ୍ୟର ଏକ ଯୁଗକୁ ବୁଝାଏ । ଯାହାକି ନିରସ, ଉପଦେଶାତ୍ମକ, ଇତିବୃତ୍ତାତ୍ମକ ଅଥବା ସ୍ଥୁଳ ଆଦର୍ଶବାଦୀ କାବ୍ୟଧାରା ମଧ୍ୟରେ

ମୁଖ୍ୟତଃ ରୀତିକାଳୀନ କାବ୍ୟ ପ୍ରବୃତ୍ତିର ବିରୋଧରେ ଆରମ୍ଭ ହୋଇଥିଲା । ଏହା ଇଂରାଜୀ ସାହିତ୍ୟର ରୋମାଣ୍ଟିକ କବି ଏବଂ ବଙ୍ଗଳାର ରବୀନ୍ଦ୍ର କାବ୍ୟଧାରାର ସମତୁଲ ଅଟେ ।

**ଛେକାନୁପ୍ରାସ** – ଯେ କୌଣସି ବାକ୍ୟ ମଧ୍ୟରେ ଯଦି ବ୍ୟବହୃତ ଏକାଧିକ ବ୍ୟଞ୍ଜନବର୍ଣ୍ଣ ସ୍ଥିତିରେ କେବଳ ଦୁଇଥର ସ୍ୱରୂପ ଓ କ୍ରମ ରକ୍ଷା ହୋଇଯାଏ, ତେବେ ସେଠାରେ ଛେକାନୁପ୍ରାସ ହୁଏ । ବୃତ୍ତ୍ୟାନୁପ୍ରାସ ସହିତ ଏହାର ପାର୍ଥକ୍ୟ ଏହି ଯେ, ବ୍ୟବହୃତ ବର୍ଣ୍ଣମାନଙ୍କର ସେଥିରେ ବହୁବାର ଆବୃତ୍ତି ହୁଏ, ଏଥିରେ ଥରେ ମାତ୍ର ।

ଭୈରବ ଆରବେ ରେବା ଦେଇ ଲମ୍ଫ
ଜନମାଏ ଜନ ମାନସେ ପ୍ରକମ୍ପ । (ଚିଲିକା)

## ଜ

**ଜଗତ** – ସନ୍ଥ ସାହିତ୍ୟରେ ଥିବା ପିଣ୍ଡ ବ୍ରହ୍ମାଣ୍ଡ ତତ୍ତ୍ୱରେ ଶରୀର ହିଁ ଜଗତ ଓ ଜଗତ ହିଁ ଶରୀର । ତେଣୁ ବିରାଟ ଗୀତାରେ କୁହାଯାଇଛି ''ଜଗତ ବୋଲି ଶରୀର । ଶରୀରରୁ ଜଗତ ସାର ।

**ଜଗନ୍ନାଥ ତତ୍ତ୍ୱ** – ଶ୍ରୀ ଜଗନ୍ନାଥ ସନାତନ ଧର୍ମର ଦେବତା ଯେ କି ଓଡ଼ିଶାର ପୁରୀ ଶ୍ରୀମନ୍ଦିରରେ ବିରାଜିତ ଓ ପୂଜିତ । ଶ୍ରୀ ଜଗନ୍ନାଥ ଏହି ପାଞ୍ଚଟି ଅକ୍ଷର ତତ୍ତ୍ୱ ଉପରେ ଆଧାରିତ ।

ଶ୍ରୀ–ଲକ୍ଷ୍ମୀ, ଭକ୍ତି, ପ୍ରୀତି ଓ ଶୋଭା ପ୍ରଦାୟିନୀ ଶକ୍ତି, ଇ ସଂସାରର କାରିଣୀ ଶକ୍ତି ଭାବରେ ଖ୍ୟାତ ।

ଜ - 'ଜ'ର ଅର୍ଥ ସୃଷ୍ଟି ବା ଜନ୍ମର ସ୍ଥଳ । ଜ ଅର୍ଥ ଜଗନ୍ମ ଓ ଜ୍ୟୋତି ସ୍ୱରୂପ ।

ଗ - 'ଗ'ର ଅର୍ଥ ଗୁହ୍ୟ ବା ଗୁପ୍ତ । ଗୁରୁତର ଓ ସମୁଦ୍ର ପରି ଗଭୀର ଓ ଅନନ୍ତ । ସେ ଗର୍ବ ଗଞ୍ଜକ ଓ ଦୁଃଖ ନିବାରକ ।

ନ୍ନା - 'ନ'ର ଅର୍ଥ ନିର୍ବିକଳ୍ପ, ନିରୀହ, ନିରାକାର, ନିତ୍ୟ, ନିର୍ମାୟା, ନାମରୂପ ।

ଥ - 'ଥ' ଅର୍ଥ ସେ ସର୍ବଭୂତର ଆତ୍ମା, ସେ ସୁଦର୍ଶନ, ସ୍ଥିର ବୁଦ୍ଧି ...

**ଜଗନ୍ନାଥ ଧର୍ମ** – ପଞ୍ଚସଖା ସାହିତ୍ୟରେ ଜଗନ୍ନାଥ ଧର୍ମ ବିଷୟରେ ଅନେକ କଥା କୁହାଯାଇଛି । ଏହି ଧର୍ମ ହେଉଛି ସନାତନ ଧର୍ମ । ଏ ସଂପ୍ରଦାୟ ହେଉଛି ବ୍ରହ୍ମ ସଂପ୍ରଦାୟ । ଏହାର ପୁଣ୍ୟକ୍ଷେତ୍ର - ଶ୍ରୀପୁରୁଷୋତ୍ତମ, ଦେବତା - ଜଗନ୍ନାଥ, ମାଳା - ହରିନାମ, ତୀର୍ଥ - ତୀର୍ଥରାଜ ସମୁଦ୍ର ଓ ଧ୍ୟାନ - ପରବ୍ରହ୍ମଂ, ଜ୍ଞାନ - ଆତ୍ମଜ୍ଞାନ, ଭକ୍ତି- ନାମ ସ୍ମରଣ, ଭାବ - ସମଦର୍ଶୀ, ମଣୋହୀ - ନିର୍ମାଲ୍ୟ, ବିଳାସ - ରହସ୍ୟମୟ, ବିହାର - ବୈକୁଣ୍ଠ । ଏହିପରି ଏକ ସମଦର୍ଶୀ ବ୍ରହ୍ମ ଭାବାପନ୍ନ ଧର୍ମ ପୃଥିବୀରେ ବିରଳ ।

**ଜଗନ୍ନାଥ ସାହିତ୍ୟ** – ଜଗନ୍ନାଥ କ୍ଷେତ୍ର, ଧର୍ମ, ଲୋକକଥା ଉପରେ ଆଧାରିତ ଭଜନ, ଜଣାଣ, ଦର୍ଶନ ଇତ୍ୟାଦି ଜଗନ୍ନାଥ ସାହିତ୍ୟ ପରିସର ଭୁକ୍ତ ।

**ଜଟିଳ ବାକ୍ୟ** – ପରସ୍ପର ସାପେକ୍ଷ ଦୁଇ ବା ତତୋଽଧିକ ଖଣ୍ଡବାକ୍ୟର ମିଳନରେ ଯେଉଁ ବାକ୍ୟ ଗଢ଼ା ହୋଇଥାଏ ତାହାକୁ ଜଟିଳ ବାକ୍ୟ କୁହାଯାଏ ।

**ଜଣାଣ** – ଓଡ଼ିଆ ଗୀତିକବିତାର ମଧ୍ୟରେ ଜଣାଣ ଏକ ଲୋକପ୍ରିୟ ରଚନା । ଜଣେଇବା, ନିବେଦନ କରିବା ହେଲା ଜଣାଣର ଭାବ ଓ ତାହା ଭକ୍ତିମୂଳକ ରଚନା । ଏଥିରେ ଭକ୍ତିର ଅର୍ଥ ନିବେଦନ, ଦୁଃଖଦାରିଦ୍ର୍ୟର ମାର୍ମିକଚିତ୍ର ପ୍ରତିଫଳିତ ହୋଇଥାଏ । ଜଣାଣ ଗୁଡ଼ିକର ଭାଷା ସାଧାରଣତଃ ସରଳ, ସାବଲୀଳ କାରଣ ଏହା ଭିତରେ ହୃଦୟର ଭାବ ଯଥାର୍ଥରେ ପ୍ରତିବିମ୍ୱିତ ହୋଇଥାଏ । ଜଣାଣ ସାହିତ୍ୟଗୁଡ଼ିକ ଆତ୍ମଧର୍ମୀ କବିତା ଭାବରେ ଖ୍ୟାତ । ଜଣାଣ କ୍ଷୁଦ୍ର ବା କିଞ୍ଚିତ ଦୀର୍ଘ ରଚନା ହୋଇପାରେ । ବିଭିନ୍ନ ଦେବାଦେବୀଙ୍କ ଜଣାଣ, ଚଉତିଶା, ଚଉପଦୀ ଓ ଅନ୍ୟାନ୍ୟ ଛାନ୍ଦ ମାଧ୍ୟମରେ ଲିଖିତ ହୋଇଥାଏ ।

**ଜବନିକା** – 'ଜବନିକା' ଶବ୍ଦଟି ପରଦା ଅର୍ଥରେ ସଂସ୍କୃତ ନାଟ୍ୟ ସାହିତ୍ୟରେ ବହୁବାର ବ୍ୟବହୃତ । ଆର୍ଯ୍ୟା ସପ୍ତଶତୀର ଲେଖକ ଗୋବର୍ଦ୍ଧନାଚାର୍ଯ୍ୟ ମଧ ପରଦା ଅର୍ଥରେ ଜବନୀ ଶବ୍ଦର ବ୍ୟବହାର କରିଛନ୍ତି । ଶତ୍ୟର୍ଥକ ଜୁ ଧାତୁରୁ ଏହି ଶବ୍ଦ ନିଷ୍ପନ୍ନ ହୋଇଥିବାରୁ ଏହାର ଅର୍ଥ ଗତିଶୀଳ ଅର୍ଥାତ୍ ସହଜରେ ଯାହାର ପ୍ରସାରଣ ଓ ସଙ୍କୋଚନ କରାଯାଏ । ଏହା ନାଟ୍ୟକଳା ତଥା ରଙ୍ଗମଞ୍ଚ ଉପଲକ୍ଷ୍ୟେ ବ୍ୟବହୃତ ।

**ଜାତକ ଗଳ୍ପ** – ବୁଦ୍ଧଙ୍କର ଅବତାର ସମ୍ବନ୍ଧୀୟ କାହାଣୀ ସମୂହ । ବୌଦ୍ଧଧର୍ମାବଲମ୍ବୀମାନେ ଏ କାହାଣୀଗୁଡ଼ିକ ଗୌତମ ବୁଦ୍ଧଙ୍କ ଆତ୍ମଜୀବନୀର ଚିତ୍ର ବୋଲି ଗ୍ରହଣ କରନ୍ତି । ସେମାନେ ବିଶ୍ୱାସ କରନ୍ତି ଯେ ଏ କାହାଣୀଗୁଡ଼ିକ ବୌଦ୍ଧଧର୍ମର ଅଙ୍ଗବିଶେଷ । ଏ ଗୁଡ଼ିକ ଅତି ପୁରାତନ ଲୋକକଥା ।

**ଜାତୀୟତାବାଦ** – ସ୍ୱଦେଶାନୁରାଗ ପ୍ରଣୋଦିତ ସର୍ବୋତ୍ତମ ଅଭିଳାଷ; ସଚେତନ ଭାଷା ଓ ସଂସ୍କୃତିର ସମାବେଶରେ ଏକ ସାଂସ୍କୃତିକ ସଂହତି ପ୍ରତିଷ୍ଠା କରିବାର ଆକାଂକ୍ଷା ହିଁଜାତୀୟତାବାଦ । ଜାତିପ୍ରୀତି, ସ୍ୱଦେଶପ୍ରେମ ଏବଂ ବ୍ୟକ୍ତିଗତ ସ୍ୱାର୍ଥ ରହିତ ଗୋଟିଏ ଜାତିର ସର୍ବବିଧ ବିକାଶ ପାଇଁ ପ୍ରେରଣା ହିଁ ଜାତୀୟତାବାଦ । ଜାତିର ଉନ୍ନତି କରିବା, ଜାତୀୟ ସଂସ୍କୃତି, ସାହିତ୍ୟ, କଳା, ଐତିହ୍ୟ ଇତ୍ୟାଦିକୁ ରକ୍ଷା କରିବା ସହିତ ଜାତୀର ସାମାଜିକ, ଅର୍ଥନୈତିକ ଉନ୍ନତି ସହିତ ତାହାର ଐକ୍ୟ, ଅଖଣ୍ଡତା ଓ ସଂହତି ବଜାୟ ରଖିବା ଜାତୀୟତାବାଦର ମୂଳମନ୍ତ୍ର ।

**ଜୀବନ ଦର୍ଶନ** – ଜୀବନ ମଣିଷର ଅସ୍ତିତ୍ୱର ପରିଚୟ । ଅସ୍ତିତ୍ୱର ବ୍ୟାପକ ଅବବୋଧ ଭିତରେ ପ୍ରତ୍ୟେକ ମଣିଷ ତା'ର ଜୀବନ ପାଇଁ ଏକ ଅନ୍ତର୍ଦୃଷ୍ଟି ଗ୍ରହଣ କରିଥାଏ । ତାହା ତା'ର ଜୀବନ ଦର୍ଶନ । ସଚେତନ ଭାବରେ ହେଉ ବା ଅସଚେତନ ଭାବରେ ହେଉ ଜଗତ ପାଇଁ ଏବଂ ତ' ନିଜପାଇଁ ମନୁଷ୍ୟ ଏକ ସ୍ୱତନ୍ତ୍ର ମାନସିକତାରେ ତିଷ୍ଠିଥାଏ । ଏହାର ସପକ୍ଷରେ ମତ ଦେବା କିମ୍ବା ବିପକ୍ଷରେ ମତ ଦେବା ଉଭୟ ତା'ର ଜୀବନ ଦର୍ଶନର ଅନ୍ତର୍ଭୁକ୍ତ ।

**ଜୀବପରମ** – ସନ୍ଥ ସାହିତ୍ୟରେ ରଜ ଓ ବୀର୍ଯ୍ୟକୁ ଜୀବ ପରମ ବର୍ଣ୍ଣନା କରାଯାଇଛି ।

**ଜୈନ ସାହିତ୍ୟ** – ଜୈନଧର୍ମ ଓ ଦର୍ଶନ ସମ୍ବନ୍ଧୀୟ ସମସ୍ତ ରଚନାବଳୀ । ଜୈନଧର୍ମ ବିଶ୍ୱର ସର୍ବପ୍ରାଚୀନ ସଂସ୍କାରବାଦୀ ଧର୍ମ । ସାଧନାରେ ସିଦ୍ଧି ଲାଭ କଲେ ସାଧକ ଜୀବତ୍ୱ ବା ଜିତେନ୍ଦ୍ରିୟ ପ୍ରାପ୍ତ ହୁଏ । ଜୀନତ୍ୱ ପ୍ରାପ୍ତ ସାଧକ ହିଁ କୈବଲ୍ୟ ମୋକ୍ଷର ଅଧିକାରୀ ହୁଏ । ଜୈନଧର୍ମର ତ୍ରିରତ୍ନ ହେଉଛି ସମ୍ୟକ୍ ଦର୍ଶନ, ସମ୍ୟକ୍ ଜ୍ଞାନ, ସମ୍ୟକ୍ ଚରିତ୍ର ଉପରେ ପ୍ରତିଷ୍ଠିତ । ଜୈନଧର୍ମର ପ୍ରଚାରକ ଥିଲେ ବର୍ଦ୍ଧମାନ । ଏହାଙ୍କ ପୂର୍ବରୁ ଜୈନଧର୍ମର ୨୩ ଜଣ ପ୍ରଚାରକ ଥିଲେ । ସତ୍ୟ, ଅହିଂସା, ଆସ୍ତେୟ, ଅପରିଗ୍ରହ ଓ ବ୍ରହ୍ମଚର୍ଯ୍ୟ ଏହି ତତ୍ତ୍ୱଜ୍ଞାନ ଜୈନଧର୍ମର ମୂଳନୀତି ।

## ଟ

**ଟୀକା***(Footnote)* – ପ୍ରାଚୀନ ସାହିତ୍ୟରେ ଉଲ୍ଲିଖିତ ଧର୍ମ ଦର୍ଶନର ସାରତତ୍ତ୍ୱ ର ନିର୍ଯ୍ୟାସକୁ ସରଳ ତଥା ସଂକ୍ଷିପ୍ତ ଭାଷାରେ ସୂଚନା ପ୍ରଦାନକୁ ଟୀକା କୁହାଯାଏ । ଟିକ୍ ଗତୌ + ଅଃ + ସ୍ତ୍ରୀ ପ୍ରତ୍ୟୟ ଟାପ୍ ଟିକ୍ୟତେ ଗମ୍ୟତେଽର୍ଥୋ ଯୟା ସା । ସାମାନ୍ୟ ଅର୍ଥ ବ୍ୟାଖ୍ୟାନ ଗ୍ରନ୍ଥ, ବ୍ୟାଖ୍ୟା, ବିବୃତ୍ତିକୁ ଟୀକା ବୁଝାଏ । ବିଶେଷ ଅର୍ଥ, ବିଷମ ପଦବ୍ୟାଖ୍ୟା, ବିଷମ ପଦ ବ୍ୟାଖ୍ୟାନୁପଦବୃତ୍ତି ଇତ୍ୟାଦି ଏହାର ଅନ୍ତର୍ଭୁକ୍ତ ।

**ଟୀପପ୍ପଣୀ** – ସାହିତ୍ୟ ସଂପର୍କୀୟ ତଥ୍ୟାବଳୀର ସୂଚନା ପ୍ରଦାନକୁ ଟୀପପ୍ପଣୀ କୁହାଯାଏ । ବିଷମ ସ୍ଥଳରେ ବ୍ୟାଖ୍ୟାକୁ ଟୀପପ୍ପଣୀ କୁହାଯାଏ । ଟୀକାର ଟୀକାକୁ ମଧ୍ୟ ଟୀପପ୍ପଣୀ କୁହାଯାଏ । ଟୀପପ୍ପଣୀ ଶବ୍ଦର ଇଂରାଜୀ 'ନୋଟ୍' ର ସମାନାର୍ଥକ । ଟୀକା ସହିତ ଆଲୋଚନା, ଦୋଷ ପ୍ରଦର୍ଶନ, ଛିଦ୍ରାନ୍ୱେଷଣର ଅର୍ଥ ଇତ୍ୟାଦି ଏହି ଟୀପପ୍ପଣୀରେ ଦିଆଯାଇଥାଏ । ଟୀପପ୍ପଣୀ ଟୀକାର ଅସ୍ପଷ୍ଟ କ୍ଷେତ୍ରକୁ ସ୍ପଷ୍ଟ ତଥା ସରଳ କରିଥାଏ ।

**ଟ୍ରାଜେଡ଼ି** – ବିଷାଦାତ୍ମକ ରଚନା ହିଁ ଟ୍ରାଜେଡ଼ି । ଏହା ମୁଖ୍ୟତଃ ଦୁଃଖଦ ନାଟକକୁ ବୁଝାଇଥାଏ । ଟ୍ରାଜେଡ଼ି ନାଟକ ମୁଖ୍ୟତଃ କୌଣସି ସ୍ୱୟଂସମ୍ପୂର୍ଣ୍ଣ ଗୁରୁତର ଘଟଣା ଉପସ୍ଥାପନ କରେ ଏବଂ ଆବେଗର ବିରୋଚନ ବା ବିଶୋଧନ ଦ୍ୱାରା ଦର୍ଶକକୁ ଏକ ଗମ୍ଭୀର ତଥା ଗୁରୁତ୍ୱପୂର୍ଣ୍ଣ ଜୀବନବୋଧକୁ ଉପସ୍ଥାପନ କରିଥାଏ । ଟ୍ରାଜେଡ଼ି ନାଟକ ଦର୍ଶକ ମନରେ ଆଦିଭୌତିକ ଚେତନା ସୃଷ୍ଟି କରେ । ଟ୍ରାଜେଡ଼ି ଗୋଟିଏ ସୁନ୍ଦର ଦୁଃଖଦାୟକ ଓ ବିସ୍ମୟଜନକ ସଂସାର ସହିତ ମଣିଷ ସଂପର୍କର କଥା କହେ । ଏଥିରେ ଚରିତ୍ର, ସଂଳାପ, ବିଷୟବସ୍ତୁ ମିଶି ଦର୍ଶକ ବା ପାଠକକୁ ଅଭିଭୂତ କରେ । ତାହାର ମନ କରୁଣା ଓ ଭୟ ପରି ଦୁଇଟି ବିପରୀତ ଆବେଗର ସଂଘାତରେ ପଡ଼ିଥାଏ । ଟ୍ରାଜେଡ଼ିର ମୁଖ୍ୟ ଚରିତ୍ରକୁ ନାୟକ ବା ପ୍ରୋଟାଗୋନିଷ୍ଟ ଓ ତାହାର ବିରୋଧି ଚରିତ୍ରକୁ ଖଳ ନାୟକ ବା ଆଣ୍ଟାଗୋନିଷ୍ଟ କୁହାଯାଏ । ତେବେ ଆଧୁନିକ ଟ୍ରାଜେଡ଼ି ନାଟକରେ ଗୁରୁତ୍ୱପୂର୍ଣ୍ଣ ବିଷୟବସ୍ତୁ, ଗୁରୁଗମ୍ଭୀର ଭାଷା ଏବଂ କରୁଣା, ଭୟ ରହିଥାଏ ।

**ଟୋଟେମିଜିମ୍** – ଟୋଟେମ୍‌ବାଦ ଆଦିମ ଜାତିଙ୍କର ଏକ ବିଶେଷ ବିଶ୍ୱାସ ପ୍ରବୃତ୍ତିକୁ ବୁଝାଏ । ତାଙ୍କର ବିଶ୍ୱାସ ଯେ କୌଣସି ଅପୌରେଷେୟ ପୂର୍ବଜ ଯଥା - ପକ୍ଷୀ, ନାଗ ଆଦିଙ୍କର ବଂଶଧର ସେମାନେ । ଫଳତଃ ତାଙ୍କର ପୂଜା କରିବା ସଙ୍ଗେ ସଙ୍ଗେ ତାଙ୍କର ନାମ ଓ ଚିହ୍ନରେ ସେମାନେ ଚିହ୍ନିତ ହେବାକୁ ଶ୍ରେଷ୍ଠ ମଣିଥାନ୍ତି । କାରଣ ଏହି ପୂର୍ବଜମାନେ ତାଙ୍କୁ ରକ୍ଷା କରିଥାନ୍ତି । ଏହି ବିଶ୍ୱାସବୋଧରେ ଲୋକସାହିତ୍ୟ ଗଢ଼ି ଉଠିଥାଏ ।

## ଠ

**ଠୂଳଶୂନ୍ୟ** – ଠୂଳ, ସ୍ଥୂଳର ଅପଭ୍ରଷ୍ଟ ରୂପ । ଏହା ଶୂନ୍ୟର ସ୍ଥୂଳ ବା ସାକାର ରୂପ । ଠୂଳ-ଶୂନ୍ୟର ଅନ୍ୟନାମ ବିନ୍ଦୁ । ବିନ୍ଦୁ ବ୍ରହ୍ମ ସ୍ଥାନ ଅଟେ । ଠୂଳ ବ୍ରହ୍ମାଣ୍ଡ କର୍ତ୍ତା ଓ ଠୂଳ ହିଁ ମୂଳ ।

''ରୂପ ବର୍ଣ୍ଣ ଜ୍ୟୋତି ଶବଦ ସହିତେ ଠୂଳରୁ ହୁଅନ୍ତେ ଜାତ
ଅନ୍ତଃକାଳେ ଯାଇ ଠୂଳରେ ମିଶନ୍ତି ଠୂଳ ଅଟଇ ତତ୍ତ୍ୱ ।
ଏଣୁକରି ମନ ବୁଝାଇ କହୁଛି ଠୂଳ ଶୂନ୍ୟେ ବ୍ରହ୍ମପାଇ
ସେଇଠୂଳ ଶୂନ୍ୟ ବ୍ରହ୍ମାଣ୍ଡ କରତା ପାଳଇ ସଂସାର ସେହି
ଠୂଳଶୂନ୍ୟ ଗୋଟି ଯାହାକୁ ବୋଲିବା ବିନ୍ଦୁ ରୂପ ଗୋଟି ସେହି''
(ସୁଧାସାର ଗୀତା, ପୃ-୮୩)

## ଡ

**ଡାଡାବାଦ** – ଏହା ଏକ ପାଶ୍ଚାତ୍ୟ ସାହିତ୍ୟିକ ଆନ୍ଦୋଳନ । ୧୯୧୬ ମସିହାରେ ଏହି ସାହିତ୍ୟିକ ବାଦଟି ପ୍ରଥମେ ପ୍ୟାରିସ୍‌ରେ ଉତ୍ପତ୍ତି ଲାଭ କରିଥିଲା । ପରମ୍ପରା ପ୍ରତି ବିମୁଖ ଓ ଗତାନୁଗତିକ କ୍ଷେତ୍ରରେ କିଛି ନୂତନତ୍ୱ ସୃଷ୍ଟି କରିବା ପ୍ରୟାସରୁ 'ଡାଡ଼ା' ଶବ୍ଦର ଉତ୍ପତ୍ତି ଯାହାର କୌଣସି ନିର୍ଦ୍ଦିଷ୍ଟ ଅର୍ଥ ନାହିଁ । 'ଡାଡ଼ା' ଶବ୍ଦଟି ସ୍ୱାଧୀନ ଅର୍ଥବାଚୀ । ଏକ ପକ୍ଷରେ ଏହା ସମସ୍ତ ପଦାର୍ଥ କୁ ବୁଝାଏ, ପୁଣି ବୁଝାଏ ନାହିଁ ।

ପ୍ରଥମ ବିଶ୍ୱଯୁଦ୍ଧର ଭୟବହତା ଓ ଭୀଷଣତାରୁ ଡାଡ଼ାବାଦ ସୃଷ୍ଟିଲାଭ କରିଥିଲା । ଜୀବନର ନିରର୍ଥକତା ବୋଧକୁ ନେଇ ଏମାନେ ସାହିତ୍ୟ, କଳା ଓ ସଙ୍ଗୀତାଦି କ୍ଷେତ୍ରରେ ପ୍ରବେଶ କଲେ । ଏସବୁକୁ ନେତି ସୂଚକ ଶବ୍ଦ ନଥିଙ୍ଗ *(Nothing)* ଭାବରେ ଗ୍ରହଣ କରାଗଲା । ସମାଜର ଧର୍ମ, ଦର୍ଶନ ଓ ଚଳଣୀକୁ ବିରୋଧ କରିଥିଲେ ଡାଡ଼ାବାଦୀମାନେ । ଅର୍ଥହୀନ ଶବ୍ଦ, ଜ୍ଞାତସାର ତ୍ରୁଟି ଓ କେଲୁଭ୍ରଷ୍ଟ ଚିତ୍ରକଳ୍ପ ପ୍ରୟୋଗ ଯୋଗୁ ଡାଡ଼ାବାଦୀ ସାହିତ୍ୟ କିମ୍ଭୁତକିମାକାର ରୂପ ଧାରଣ କରୁଥିଲା । ଏମାନଙ୍କ ମତରେ ଥ୍ରୀ ଆର *Religion* (ଧର୍ମ) *Reason*(ଯୁକ୍ତି) ଓ *Reverence* (ଶ୍ରଦ୍ଧା) ହେଉଛି ପୃଥିବୀର ସବୁ ଅନର୍ଥର ମୂଳ । ତେଣୁ ଏମାନେ କଳା ଓ ସାହିତ୍ୟରେ ଏହି ତିନୋଟିର ପୂର୍ଣ୍ଣ ବିରୋଧ କରି ପ୍ରଚାର କଲେ ପୃଥିବୀ ଅସ୍ଥିର, ଭଲ-ମନ୍ଦ ଆପେକ୍ଷିକ ଓ ସବୁକିଛି ନୀତି ଅନୀତି ମନଗଢ଼ା । ଫଳତଃ ଏମାନଙ୍କ ସାହିତ୍ୟକ ବ୍ୟଙ୍ଗଧର୍ମିତା ଓ ଉଭଟତା ର ସମନ୍ୱୟ ଘଟିଥିଲା । ବାଚାଳମନର ଅସଙ୍ଗତ ଅଭିବ୍ୟକ୍ତି ହେଉଛି ଡାଡ଼ାବାଦୀ ସାହିତ୍ୟ ।

**ଡିମ** – ପ୍ରାଚୀନ ସାହିତ୍ୟ ତତ୍ତ୍ୱରେ ରୂପକର ଦଶଟି ବିଭିନ୍ନ ରୂପ, ବସ୍ତୁ, ନେତା ଓ ରସଯୋଜନା ଦୃଷ୍ଟିରୁ ନିର୍ଦ୍ଦିଷ୍ଟ ହୋଇଅଛି । ସେଥିମଧ୍ୟରୁ 'ଡିମ' ଅନ୍ୟତମ । ଏଥିରେ ପୌରାଣିକ କଥାବସ୍ତୁ, ଚାରିଅଙ୍କ, ବିମର୍ଶ ବ୍ୟତୀତ ଚାରି ସନ୍ଧି, ଧୀରୋଦ୍ଧତ ଶ୍ରେଣୀୟ ଷୋହଳ

ନାୟକ, ରୌଦ୍ରରସ, ସାତ୍ୱତୀ ତଥା ଆରଭଟୀ ବୃତ୍ତି, ସଂଗ୍ରାମ ମାୟା ଓ ଇନ୍ଦ୍ରଜାଲ ର କାରସାଦିର ବର୍ଣ୍ଣନା ମିଳେ କିନ୍ତୁ ବିଷ୍କମ୍ଭକ ତଥା ପ୍ରବେଶକର ଆବଶ୍ୟକତା ନଥାଏ ।

**ଡୋମ୍ବୀ** – ମହାମୁଦ୍ରା, ହଠଯୋଗରେ ଡୋମ୍ବୀ ଶବ୍ଦ ଲକ୍ଷ୍ୟ କରାଯାଏ ।

## ଢ଼

**ଢଗଢ଼ମାଳି** – ଆଭିଧାନିକ ଅର୍ଥରେ ଢଗ ମିତ୍ରାକ୍ଷର ମିଳିତ ବଚନ । ସେହିପରି ଢମାଳି କବିତ୍ୱହୀନ ବ୍ୟଙ୍ଗ ବା ପରିହାସ ବଚନ । ଏହାର ଶେଷ ପଦରେ ମେଳ ନଥାଏ । କିନ୍ତୁ ଏହା ଢଗର ସହଚର । ଗୋପାଳଚନ୍ଦ୍ର ପ୍ରହରାଜଙ୍କ ମତରେ ''ଢଗମାନଙ୍କର ଯତିପାତ ଓ ଉପଧା ମିଳେଇବାର ଚେଷ୍ଟା କରାଯାଇଥାଏ । ଏମନ୍ତ କି ଶେଷ ପଦର ଯତି ଓ ଉପଧା ମିଳେଇବା ଗୋଟାଏ ନିରର୍ଥକ ପ୍ରଥମପାଦ ମଧ୍ୟ ଢଗରେ ବୋଲାଯାଇଥାଏ । ସେହିପରି ଢମାଳିରେ ଯତି ବା ଶେଷ ବର୍ଣ୍ଣ ମେଳ ନ ହୋଇ ବାକ୍ୟ ବ୍ୟବହାର କରାଯାଥାଏ । ମତାନ୍ତରରେ ଢଗ ଛନ୍ଦବଦ୍ଧ ଏବଂ ଗଦ୍ୟାଂଶ ଅଟେ । ଯେତେବେଳେ ଢ଼ଗ ରହସ୍ୟପୂର୍ଣ୍ଣ ଏବଂ କୌତୂକସଂପନ୍ନ ହୁଏ ସେତେବେଳେ ଢମାଳି ହୁଏ । ପୁନଶ୍ଚ ସ୍ଥଳ ବିଶେଷରେ ଢମାଳି ଏକାଧିକ ପାଦବିଶିଷ୍ଟ ପଦ । ଏଥିରେ ପଚାଶରୁ ମଧ୍ୟ ଊର୍ଦ୍ଧ୍ୱ ଶବ୍ଦ ମଧ୍ୟ ବ୍ୟବହାର ହୋଇଥିବା ପରିଲକ୍ଷିତ ହୁଏ । ଲୋକସାହିତ୍ୟରେ ଢ଼ମ୍ପା, କବାଡ଼ିଆ ଗୀତଗୁଡ଼ିକ ମଧ୍ୟ ଢ଼ମାଳି ଭାବେ କଥିତ । ଅପରନ୍ତୁ ଢଗ ସଂକ୍ଷିପ୍ତତମ ପଦ ଯଦିଚ ଏଥିରେ କବିତ୍ୱ ଅଛି ଏହା କବିତା ନୁହେଁ । ଅନ୍ୟ ଭାଷାରେ ଢଗ ଅଗଣିତ ପ୍ରତ୍ୟୁତ୍ପନ୍ନମତି କବିଙ୍କ ନିବିଡ଼ତମ ଅନୁଭୂତିର ସ୍ୱଚ୍ଛତମ ଶାବ୍ଦୀକ ରୂପ ।

## ଣ

**ଣତ୍ୱବିଧି** – ଏହା ଏକ ବ୍ୟାକରଣ ନିୟମ: (୧) ପଦମଧ୍ୟରେ ଋ, ର, ଷ ପରେ 'ନ' ଥିଲେ 'ନ' ସ୍ଥାନରେ 'ଣ' ହୁଏ । ଯଥା ଘୃଣା, ବର୍ଣ୍ଣ, ବିଷ୍ଣୁ ।

(୨) ଋ, ର, ବା ଷ ପରେ ସ୍ୱରବର୍ଣ୍ଣ, କ ବର୍ଗ, ପ ବର୍ଗ, ଯ, ବ, ହ, ଓ ଅନୁସ୍ୱାର ମଧ୍ୟରୁ ଏକ ବା ଏକାଧିକ ବର୍ଣ୍ଣ ବ୍ୟବଧାନ ଥିଲେ 'ନ' 'ଣ' ହୋଇଥାଏ । ଯଥା - ମରଣ, ପାଷାଣ, କରୁଣ, ଭ୍ରମଣ ଇତ୍ୟାଦି ।

## ତ

**ତର୍କ ଶାସ୍ତ୍ର** – ନ୍ୟାୟ ଦର୍ଶନରେ ସିଦ୍ଧାନ୍ତ ନେବାପାଇଁ ଆବଶ୍ୟକୀୟ ଯୁକ୍ତି, ତର୍କ, ନିୟମ ଆଦିକୁ ତର୍କ କୁହାଯାଏ ।

**ତଦ୍ଧିତ** – ନୂତନ ଶବ୍ଦ ଗଢ଼ିବା ଲାଗି ଶବ୍ଦରୁ ଉତ୍ତର ଭିନ୍ନ ଭିନ୍ନ ଅର୍ଥରେ ଯେଉଁସବୁ ପ୍ରତ୍ୟୟ କରାଯାଏ, ସେସବୁକୁ ତଦ୍ଧିତ ବୋଲାଯାଏ । ଏହି ତଦ୍ଧିତ ପ୍ରତ୍ୟୟ ଦୁଇ ପ୍ରକାର ।

**ତନ୍ତ୍ର** – ତନ୍ ବିସ୍ତାର ଧାତୁରୁ ଔଣାଦିକଷ୍ଟ୍ରନ ପ୍ରତ୍ୟୟ ଯୋଗରେ ନିଷ୍ପନ୍ନ ତନ୍ତ୍ର ଶବ୍ଦ ଶାସ୍ତ୍ର, ସିଦ୍ଧାନ୍ତ, ବିଜ୍ଞାନ ବିଷୟକ ସମ୍ମଳିତ ଗ୍ରନ୍ଥକୁ ବୁଝାଏ । ତନ୍ତ୍ରର ଅନ୍ୟନାମ ଆଗମ । ଦେବତାର ସ୍ୱରୂପ, ଗୁଣ, କର୍ମ ଆଦିର ଚିନ୍ତନ ପଦ୍ଧତି ତନ୍ତ୍ରରେ ଥାଏ ଏବଂ ତାହା ଉପାସନାର ପାଞ୍ଚଅଙ୍ଗ ଯଥା- ପଟଳ, ପଦ୍ଧତି, କବଚ, ସହସ୍ରନାମ ଓ ସ୍ତୋତ୍ର ପାଳନ କରି ଦେବତାଙ୍କୁ ଅଧୀନକୁ ଆଣିବାର ଉପାୟ ଏହି ତନ୍ତ୍ର ବା ଆଗମରେ ଥାଏ । ତନ୍ତ୍ର ଦୁଇ ଭାଗରେ ବିଭକ୍ତ ଯଥା - ବେଦାନୁକୂଳ ଓ ବେଦବାହ୍ୟ ।

**ତଦ୍ଭବ** – ଅନେକ ସଂସ୍କୃତ ଶବ୍ଦ କାଳକ୍ରମେ ରୂପାନ୍ତରିତ ହୋଇ ଓଡ଼ିଆରେ ପ୍ରଚଳିତ ହୋଇ ଆସୁଛି । ଏମାନଙ୍କୁ ତଦ୍ଭବ ଶବ୍ଦ କୁହାଯାଏ । କାରଣ ଏହି ଶବ୍ଦଗୁଡ଼ିକ ସଂସ୍କୃତରୁ ଉଦ୍ଭବ ହୋଇଛି । ଯଥା- ନଈ (ନଦୀ), ପୋଖରୀ (ପୁଷ୍କରିଣୀ) ।

**ତତ୍ସମ** – ସଂସ୍କୃତ ଭାଷାରେ ଅନେକ ଶବ୍ଦ ଅବିକୃତ ଭାବରେ ଓଡ଼ିଆରେ ବ୍ୟବହୃତ ହୁଅନ୍ତି, ସେମାନଙ୍କୁ ତତ୍ସମ ଶବ୍ଦ କୁହାଯାଏ । ଯଥା- ନଦୀ, ଅରଣ୍ୟ, ସୂର୍ଯ୍ୟ ଇତ୍ୟାଦି ।

**ତିନି ଅଙ୍ଗ** – ସନ୍ଥ ସାହିତ୍ୟରେ ଗୁରୁ, ଶିଷ୍ୟ ଓ ଜଗନ୍ନାଥ ତିନି ଅଙ୍ଗ ନାମରେ ଖ୍ୟାତ । ଏହି ତତ୍ତ୍ୱ ଜାଣିଲେ ନାମ ପ୍ରଚ୍ଛନ୍ନ ହୋଇଯାଏ ବୋଲି କୁହାଯାଇଛି ।

**ତିନି ତିହୁଡ଼ି** – ଦୁଇ 'ଭ୍ରୂ' ମଧ୍ୟସ୍ଥାନ ତ୍ରିକୂଟ । ଏହାକୁ ତ୍ରିବେଣୀ, ତିନିତିହୁଡ଼ି ବୋଲି କୁହାଯାଇଥାଏ । ଇଳା, ପିଙ୍ଗଳା, ଓ ସୁଷୁମ୍ନା ନାଡ଼ିର ମିଳନ ସ୍ଥଳ ଅଟେ । ତ୍ରିକୂଟ ସ୍ଥାନକୁ ଫୁଙ୍କାଫୁଙ୍କି ବାଟ ବୋଲି କୁହାଯାଇଛି ।

> ''ସତ ରଜ ତମ ଏହି ତିନି ଗୁଣକୁ ବୋଲନ୍ତି ତିନି ତିହୁଡ଼ି
> ତ୍ରିବେଣୀ ତ୍ରିକୂଟ ଏହାକୁ ହିଁ ବୋଲି ସଂଶୟ ଦେଇଲ ଫେଡ଼ି ।''(ସୁଧାରସ ଗୀତା)

**ତ୍ରିପୁରା** – ତ୍ରିପୁରା ଦେବୀ । ଏ ପ୍ରେମରୂପା ଭାବରେ କଥିତ । ଗୋଲକମୂଳରେ ଦ୍ୱାରଦେଶରେ ତ୍ରିପୁରାଙ୍କ ଅଧିଷ୍ଠାନ ବୋଲି ସିଦ୍ଧ ସାହିତ୍ୟରେ କଥିତ ।

**ତୁଳନାତ୍ମକ ସମାଲୋଚନା** *(Comparative Criticism)* – ପାଶ୍ଚାତ୍ୟ ସମାଲୋଚକଙ୍କ ମତରେ ''ଏହା ଏକ ନିର୍ଭୁଲ, ନିଷ୍ପାପର ପଠନକଳା ତଥା ମୌଖିକ ବା ଲିଖିତ ସାହିତ୍ୟ / ଭାଷାକୃତିର ଶ୍ରବଣ ଶୈଳୀ । ପଠନ ଓ ଶ୍ରବଣରେ ଯେ ସାହିତ୍ୟ ସମାଲୋଚନାର ଅନ୍ୟ ମାଧ୍ୟମଗୁଡ଼ିକରେ ନାହିଁ ତାହା ନୁହେଁ ବରଂ ତୁଳନାତ୍ମକ ସାହିତ୍ୟ ସମାଲୋଚନାର ଏ ଦୁଇଟି ପଦ୍ଧତି ବେଶି ଗୁରୁତ୍ୱ ଦିଆଯାଏ । ତୁଳନାତ୍ମକ ସାହିତ୍ୟ ସମାଲୋଚନା ମନୁଷ୍ୟର ଯେକୌଣସି ଭାଷା ଉପରେ ଆମ ଜାଗତିକ, ଐତିହାସିକ ନିର୍ଯ୍ୟାସର ଉଦ୍‌ଘାଟନ କରିବା

ସହ ବିଭିନ୍ନ ଭାଷା ଭିତରେ ଥିବା ପାରସ୍ପରିକ ବିନିମୟର ସାମ୍ଭାବ୍ୟ ସୀମା ନିର୍ଦ୍ଧାରଣ କରିଥାଏ । ଏହା ଏକ ସାମ୍ପ୍ରତିକ ସାରସ୍ୱତ ଜିଜ୍ଞାସା ।

**ତୁଲ୍ୟପ୍ରାଧାନ୍ୟ ବ୍ୟଙ୍ଗ୍ୟ** – ଯେଉଁଠି ବାଚ୍ୟାର୍ଥ ଓ ବ୍ୟଙ୍ଗାର୍ଥ ସମାନ ଭାବରେ ଚମତ୍କାର କାରୀ ହୋଇଥାନ୍ତି, ସେଠାରେ ତୁଲ୍ୟପ୍ରାଧାନ୍ୟ ବ୍ୟଙ୍ଗ୍ୟ ହୁଏ ।

''ପୁଣି ଦେଖ ଆଜି ଗାରିମାର ଘଟା
ଲୁଚି ବସି କାଳ କରେ ଯାକୁ ଥଟ୍ଟା ।'' (ଦରବାର)

**ତୁଲ୍ୟଯୋଗିତା ଅଳଙ୍କାର** – କେବଳ ପ୍ରାସଙ୍ଗିକ ବସ୍ତୁମାନଙ୍କର ଅଥବା କେବଳ ଅପ୍ରାସଙ୍ଗିକ ବସ୍ତୁମାନଙ୍କର ଗୋଟିଏ ଧର୍ମ ସହିତ ସମ୍ବନ୍ଧ ସ୍ଥାପିତ ହେଲେ ତୁଲ୍ୟ ପ୍ରତିଯୋଗିତା ଅଳଙ୍କାର ହୁଏ ।

''ପୁଣି ତିନିଙ୍କର ସମରୂପ ବୟଃ
ଅମାୟିକ ବ୍ୟବହାର
କରୁଅଛି ଏଇ ପବିତ୍ର ବନକୁ
ମୁଦମୟ ପ୍ରେମାଗାର ।

ଏଠାରେ ପ୍ରାସଙ୍ଗିକ ରୂପ, ବୟଃ ଓ ବ୍ୟବହାର ପ୍ରାସଙ୍ଗିକ । ସେମାନଙ୍କର ଗୋଟିଏ ମାତ୍ର ଧର୍ମ 'ମୁଦମୟ କରୁଅଛି' ସହିତ ସମ୍ବନ୍ଧ ସ୍ଥାପିତ ହୋଇଥିବାରୁ ତୁଲ୍ୟଯୋଗିତା ଅଳଙ୍କାର ହୋଇଛି ।

**ତ୍ରୈମାସିକ ପତ୍ରିକା** – ତିନିମାସରେ ଯେଉଁ ପତ୍ରିକା ପ୍ରକାଶପାଏ । ପତ୍ର ପତ୍ରିକା ପ୍ରକାଶନର ସମୟ ସୀମା ଭିନ୍ନ ଭିନ୍ନ ଯଥା : ବାର୍ଷିକ, ଷଡ଼୍‌ମାସିକ, ତ୍ରୈମାସିକ, ମାସିକ, ପାକ୍ଷିକ ଓ ସାପ୍ତାହିକ ଇତ୍ୟାଦି ।

## ଦ

**ଦଣ୍ଡନାଚ ଗୀତ** – ଦଣ୍ଡନାଚର ଆରାଧ୍ୟ ଦେବତା ଶିବ । ଦଣ୍ଡନାଚ ଗୀତରେ ଘଟ ଓ ବେତ ମଧ୍ୟରେ ଶିବ ଓ ଦେବୀ ବିଜେ କରିବାପାଇଁ ଦଣ୍ଡୁଆ ସ୍ତୁତି କରେ । ଏହି ସ୍ତୁତିରେ ଶିବଙ୍କର କାମନା ଘଟ ସହ ଗୌରୀ ବେତର ପୂଜା କରାଯାଇଥାଏ ।

**ଦଳିତ ସାହିତ୍ୟ** – ସମାଜରେ ନିମ୍ନବର୍ଗ ଯଥା- ଦାସ, କିଶାନ, ମଜଦୁର, ଶ୍ରମିକ ସବୁ ଦଳିତ ଶ୍ରେଣୀର । ଏମାନଙ୍କ ଜୀବନ, ଜୀବିକା, ଦର୍ଶନ, ମନସ୍ତତ୍ତ୍ୱ ଉପରେ ଆଧାରିତ ସାହିତ୍ୟ କୁ ଦଳିତ ସାହିତ୍ୟ କୁହାଯାଏ । ଦଳିତ ସାହିତ୍ୟ ସାଂପ୍ରତିକ ନବ ଉପନିବେଶବାଦ ଓ ଜାତିକରଣ ବିଷୟରେ ଏକ ପ୍ରତିକ୍ରିୟା ମାତ୍ର ।

**ଦଶଦ୍ୱାର** – ଶରୀରର ଦଶଗୋଟି ଦ୍ୱାର ସଂପର୍କରେ ସୂଚନା ସନ୍ଥସାହିତ୍ୟରେ ପ୍ରଚୁର । ମୁଖଛିଦ୍ର - ଏକ, ନାସିକା ଛିଦ୍ର - ଦୁଇ, ଦୁଇଆଖି - ଦୁଇ, ପାୟୁ - ଏକ, ଉପସ୍ଥ - ଏକ, କର୍ଣ୍ଣ - ଦୁଇ, ବ୍ରହ୍ମଛିଦ୍ର - ଏକ - ଏହିପରି ଦଶଦ୍ୱାର ଭାବରେ ଲିଖିତ ।

**ଦଶମହାବିଦ୍ୟା** – ତନ୍ତ୍ର ସାହିତ୍ୟରେ ଶକ୍ତିକୁ ଦଶମାହବିଦ୍ୟା ରୂପେ କଳ୍ପନା କରାଯାଇଛି । ଶିବଙ୍କ ଦଶମହାରୂପରେ ସତୀ ଦର୍ଶାଇଥିଲେ ଯଥା - 'ସମ୍ମୁଖରେ କାଳୀ, ପଶ୍ଚାତରେ ବଗଳା, ଦକ୍ଷିଣରେ ଛିନ୍ନହସ୍ତା, ବାମରେ ଭୁବନେଶ୍ୱରୀ, ଅଗ୍ନିକୋଣରେ ଧୂମାବତୀ, ନୈରିତରେ କମଳା, ବାୟୁକୋଣରେ ମାତଙ୍ଗୀ, ଐଶାନରେ ଷୋଡ଼ଶୀ, ଊର୍ଦ୍ଧ୍ୱରେ ତାରା ଓ ଅଧଃ ଉପରେ ଭୈରବୀ -ଏହିପରି ଦଶବିଧ ଭୟଙ୍କର ରୂପ ହେଉଛି ମହାଜ୍ଞାନୀ ଶିବ ଉପରେ ନତମସ୍ତକ ପୂର୍ବକ ଦଶମହାବିଦ୍ୟାକୁ ସ୍ତୁତି କରିଥିଲେ ।

**ଦର୍ଶନ** – ଦର୍ଶନ କହିଲେ ଆମେ ଜଗତ ଓ ଜୀବନ ସଂପର୍କରେ ଏକ ଯୁକ୍ତି ସମ୍ମତ, ପ୍ରମାଣସିଦ୍ଧ ବା ବିଜ୍ଞାନ ସମ୍ମତ ଏକ ଉନ୍ନତ ଦୃଷ୍ଟିଭଙ୍ଗୀ କଥା ବୁଝିଥାଉ । ଦର୍ଶନ ହେଉଛି ଆତ୍ମିକ, ବୌଦ୍ଧିକ ଓ ସାମାଜିକ ଚେତନାର ତତ୍ତ୍ୱକୁ ବୁଝାଏ ।

**ଦର୍ଶନ ଶାସ୍ତ୍ର** – ବୈଦିକ ସାହିତ୍ୟର ଅନ୍ତର୍ଗତ । ଭାରତୀୟ ଦର୍ଶନ ଶାସ୍ତ୍ର ଛଅ ଭାଗରେ ବିଭକ୍ତ ଯଥା (୧) କପିଳଙ୍କ ସାଂଖ୍ୟ, (୨) ପାତଞ୍ଜଳିଙ୍କ ଯୋଗ, (୩) ଗୌତମଙ୍କ ନ୍ୟାୟ, (୪) କଣାଦଙ୍କ ବୈଶେଷିକ, (୫) ଜୈମିନିଙ୍କ ମୀମାଂସା ଏବଂ (୬) ବ୍ୟାସଙ୍କ ବେଦାନ୍ତ । ପ୍ରକୃତି, ଆତ୍ମା, ପରମାତ୍ମା ଓ ଜଗତର ନିୟାମକ ଧର୍ମ, ଜୀବନର ଅର୍ନ୍ତଚାଳନା ଇତ୍ୟାଦି ଯେଉଁ ଶାସ୍ତ୍ରରେ ନିରୂପିତ ହୁଏ ତାକୁ ଦର୍ଶନ ଶାସ୍ତ୍ର ବୋଲାଯାଏ ।

**ଦଶାକ୍ଷର ମନ୍ତ୍ର** – ସନ୍ଥ ସାହିତ୍ୟରେ ଓଁ ଗୋପୀଜନ ବଲ୍ଲଭାୟ ସ୍ୱାହା'' । ଏହି ଦଶାକ୍ଷର ମନ୍ତ୍ର ସାଧନାର ସିଦ୍ଧି ପାଇଁ ଗୁରୁତ୍ୱ ବହନ କରିଥାଏ ।

**ଦ୍ୱନ୍ଦ୍ୱମୂଳକ ବସ୍ତୁବାଦ** – ଏହା ମାର୍କସ ବାଦର ଏକ ସ୍ୱରୂପ । ଦ୍ୱନ୍ଦ୍ୱାତ୍ମକ ବସ୍ତୁବାଦ ନୀତିକୁ ମାର୍କସ ହେଗେଲଙ୍କର ଦ୍ୱନ୍ଦ୍ୱାତ୍ମକ ଆଦର୍ଶବାଦ *(Dialectical Idealism)* ରୁ ଗ୍ରହଣ କରିଥିଲେ । ହେଗେଲେ ସର୍ବଦା ଦ୍ୱନ୍ଦ୍ୱାତ୍ମକ ଆଦର୍ଶବାଦକୁ ମନୁଷ୍ୟର ଇତିହାସ ସହିତ ସଂଶ୍ଳିଷ୍ଟ କରି ବିଚାର କରୁଥିଲେ । ପରସ୍ପର ବିରୋଧୀ ଚିନ୍ତା ଓ ଯୁକ୍ତିର ସଂଘର୍ଷରୁ ନୂତନତ୍ୱ ସୃଷ୍ଟି ହୁଏ ଓ ନୂତନ ଦିନେ ପୁରାତନରେ ପରିଣତ ହୁଏ । ପୁନର୍ବାର ଦ୍ୱନ୍ଦ୍ୱ ଆସେ ଓ ପୁଣି ନୂତନତତ୍ୱ ସମ୍ଭବ ହୁଏ ବୋଲି ହେଗେଲେ ବିଶ୍ୱାସ କରୁଥିଲେ । ମାତ୍ର ମାର୍କସ ଏହି ଚିନ୍ତାଧାରାରୁ ଆଦର୍ଶବୋଧକୁ ବାଦ୍ ଦେଇ ଏହା ସହିତ ବସ୍ତୁବାଦର ସଂଯୋଗ ଘଟାଇଲେ । ସେ ପ୍ରକାଶ କଲେ ଯେ ମଣିଷର ଐତିହାସିକ ପରିବର୍ତ୍ତନ ମୂଳରେ ବସ୍ତୁର ଭୂମିକା ଗୁରୁତ୍ୱପୂର୍ଣ୍ଣ । ପ୍ରଥମେ ମାର୍କସ ମଣିଷର ଆର୍ଥନୀତିକ ସ୍ଥିତିକୁ ବିଚାରକୁ ନେଇ ଏହା ଉପରେ ସାମାଜିକ ପ୍ରଗତି ସମ୍ଭବ ବୋଲି ମତ ଦେଇଥିଲେ । ତାଙ୍କ ମତରେ ଦାସତ୍ୱ ପ୍ରଥା, ସାମନ୍ତବାଦ, ପୁଞ୍ଜିବାଦ ଏ ସବୁ ସ୍ତରଗୁଡ଼ିକର ପରସ୍ପର ବିରୋଧ ପ୍ରତିକ୍ରିୟା ସଂଘର୍ଷ ସୃଷ୍ଟି କରେ ଓ ପରେ ସମନ୍ୱୟ ଆଣେ । ତେଣୁ ସମାଜରେ ଶ୍ରେଣୀହୀନତା ନ ଆସିଲେ, ଦ୍ୱନ୍ଦ୍ୱାତ୍ମକ ପ୍ରଣାଳୀର ଅବସାନ ଆସି ପାରିବ ନାହିଁ । ମାର୍କସ୍‌ଙ୍କ ପ୍ରବର୍ତ୍ତିତ ଦ୍ୱନ୍ଦ୍ୱାତ୍ମକ ବସ୍ତୁବାଦ ହିଁ ସମାଜବାଦ ଚେତନା ପ୍ରକାଶ କରିବାରେ ମୁଖ୍ୟ ଦାୟିତ୍ୱ ନେଇଥିଲା ।

**ଦୃଷ୍ଟିଭଙ୍ଗୀ** – ସାରସ୍ୱତ ମାନସିକ କ୍ରିୟାକୁ ବୁଝାଏ । କବି ବା ଲେଖକ ଜୀବନ ଓ ଜଗତ ପାଇଁ ଯେଉଁ ମାନସିକତାରେ ତିଷ୍ଠି ରହେ ତାହାହିଁ ତା'ର ଦୃଷ୍ଟିଭଙ୍ଗୀ ବୋଲି କୁହାଯାଏ ।

**ଦୃଶ୍ୟକାବ୍ୟ** – ଭାରତୀୟ ସାହିତ୍ୟ ଶାସ୍ତ୍ରରେ କାବ୍ୟକୁ ଦୁଇ ଭାଗରେ ବିଭକ୍ତ କରାଯାଇଛି । ଯଥା (୧) ଶ୍ରାବ୍ୟ କାବ୍ୟ (୨) ଦୃଶ୍ୟକାବ୍ୟ । ଶ୍ରାବ୍ୟ କାବ୍ୟ ହେଉଛି ଯାହାକୁ ଶୁଣି ବା ପଢ଼ି କାବ୍ୟାନନ୍ଦ ଉପଲବ୍ଧି ହୁଏ । ଦୃଶ୍ୟକାବ୍ୟ ଅର୍ଥ ଦର୍ଶନଯୋଗ୍ୟ ସାହିତ୍ୟ । ଅର୍ଥାତ୍ ଯେଉଁ ପର୍ଯ୍ୟାୟରେ ସାହିତ୍ୟକୁ ଦେଖି ଦର୍ଶକ ବିମଳ ଆନନ୍ଦ ଲାଭ କରିଥାନ୍ତି । ଦୃଶ୍ୟ କାବ୍ୟର ଦୁଇଟି (୧) ରୂପକ (୨) ଉପରୂପକ । ସମସ୍ତ ନାଟକୀୟ ଲକ୍ଷଣରେ ସମୃଦ୍ଧ ରଚନାକୁ ରୂପକ କୁହାଯାଏ ।

**ଦୃଷ୍ଟାନ୍ତ ଅଳଙ୍କାର** – ଦୁଇଟି ବାକ୍ୟରେ ଦୁଇଟି ଭିନ୍ନାର୍ଥବୋଧକ ଧର୍ମଥିଲେ ମଧ୍ୟ ବାକ୍ୟ ଦୁଇଟି ଯଦି ସାଦୃଶ୍ୟଗର୍ଭକ ହୋଇଥାଏ, ତେବେ ଦୃଷ୍ଟାନ୍ତ ଅଳଙ୍କାର ହୁଏ ।

''ବିତରେ ଅକାତରେ ଜୀବନ ଘନ
ଧନ୍ୟ ଯେ ଦାତା ଜାଣେ ଯାଚକମନ'' (ବର୍ଷା)

**ଦାରିକପାଦ** – ଦାରିକପାଦ ଓଡ଼ିଶାର ରାଜା ଥିଲେ । ସେ ଲୁଇପାଦଙ୍କ ଶିଷ୍ୟତ୍ୱ ଗ୍ରହଣ କରିଥିଲେ । ଗୁରୁଙ୍କ ଆଦର୍ଶରେ ଦାରିକପାଦ ବହୁ ବର୍ଷ ପର୍ଯ୍ୟନ୍ତ ଜଣେ ଗଣିକାର ସେବା

କରି ସିଦ୍ଧ ଲାଭ କରିଥିଲେ । ଗଣିକା ବା ଦାରୀର ସଂଯୋଗରେ ସେ ସିଦ୍ଧିଲାଭ କରିଥିବାରୁ ତାଙ୍କର ନାମକରଣ ହୋଇଥିଲା ଦାରିକପାଦ । ଦାରିକପାଦ ସଂସ୍କୃତରେ ସୁପଣ୍ଡିତ ଥିଲେ । 'ତାଙ୍ଗୁର' ତାଲିକାରେ ତାଙ୍କ ନାମରେ 'ଶ୍ରୀ କାଳଚକ୍ରତନ୍ତ୍ରରାଜ' ଓ 'ସେକପ୍ରକ୍ରିୟା ବୃତ୍ତି' ନାମକ ଦୁଇଟି ଗ୍ରନ୍ଥର ଉଲ୍ଲେଖ ଅଛି । ଏହା ବ୍ୟତୀତ ସେ ଶ୍ରୀଚକ୍ରସମ୍ବର ସାଧନ ସଂପର୍କୀୟ କେତେକ ଗ୍ରନ୍ଥର ରଚୟିତା । ଚର୍ଯ୍ୟାଗୀତିକୋଷରେ ତାଙ୍କର ଗୋଟିଏ ମାତ୍ର ଗୀତି(ସଂଖ୍ୟା ୩୪) ସ୍ଥାନିତ ହୋଇଛି ।

**ଦାସକାଠିଆ** – ଓଡ଼ିଆ ଗଣନାଟ୍ୟ ପରମ୍ପରାରେ ପାଲା ଓ ଦାସକାଠିଆର ସ୍ଥାନ ଅତ୍ୟନ୍ତ ଉଚ୍ଚରେ । ପାଲାଭଳି ଦାସକାଠିଆ ଗାୟକ ଓ ପାଳିଆଙ୍କୁ ନେଇ ହୋଇଥାଏ ।  ଏଥିରେ ଗାୟକ ଜଣେ ଓ ପାଳିଆଭାବେ ସହକାରୀ ଜଣେ କିମ୍ବା ଦୁଇଜଣ ଥା'ନ୍ତି । ଝାଞ୍ଜ ମୃଦଙ୍ଗ ପରିବର୍ତ୍ତେ ଗୋପୀଯନ୍ତ୍ର ଭଳି ଦୁଇଟ କାଠି ବ୍ୟବହାର କରିଥା'ନ୍ତି । ଏମାନେ ପ୍ରଥମେ ରାମଚନ୍ଦ୍ରଙ୍କ ବର୍ଣ୍ଣନା କରି ତା'ପରେ ବିଷୟବସ୍ତୁ ଅବତାରଣା କରିଥା'ନ୍ତି ।

**ଦାଣ୍ଡିବୃତ୍ତ** – ଏହି ବୃତ୍ତରେ ଦୁଇପାଦ ମିଳି ଏକ ପଦ ହୁଏ । ଏଥିରେ କୌଣସି ପାଦର ଅକ୍ଷର ସଂଖ୍ୟା ସମାନ ନଥାଏ । ତଥାପି ମିତ୍ରାକ୍ଷର କବିତା ପରି ଶେଷ ଅକ୍ଷର ମେଳଥାଏ । ଏହା ଏକ ଦାଣ୍ଡିରେ ଗାନ କରାଯାଇଥାଏ ବୋଲି ଏହା ଦାଣ୍ଡୀବୃତ୍ତ କୁହାଯାଏ । ସାରଳା ଦାସଙ୍କ ମହାଭାରତ ଦାଣ୍ଡିବୃତ୍ତରେ ଲିଖିତ ।

**ଦାସ୍ୟ** – ଭକ୍ତିରସ ଅନ୍ତର୍ଭୁକ୍ତ । ସବୁଧର୍ମରେ ଦାସ୍ୟଭକ୍ତି ଭଗବତ୍ ଉପଲବ୍ଧିର ଏକ ଉଚ୍ଚତର ସୋପାନ । ଶାସ୍ତ୍ରରେ କୁହାଯାଇଛି ''ଦାସ୍ୟଂ କର୍ମାର୍ପଣଂ ତସ୍ୟ କୈଙ୍କର୍ଯ୍ୟମପି ସର୍ବଥା''। ନିଜକୁ ଭଗବାନଙ୍କର ଆଜ୍ଞା ପାଳନକାରୀ ଭାବରେ ଭକ୍ତଜନର ଯେଉଁ ପବିତ୍ର ଭାବନା ତାହା ହିଁ ଦାସ୍ୟ ଭକ୍ତିର ଲକ୍ଷଣ । ଗୀତାରେ କୁହାଯାଇଛି –

''ଅଭ୍ୟାସେଽପ୍ୟସମର୍ଥୋସି ମତ୍କର୍ମ ପରମୋଭବ
ମଦର୍ଥମପି କର୍ମାଣି କୁର୍ବନ୍ ସିଦ୍ଧିମ ବାପସ୍ୟସି'' (୧୨/୧୦)

ଅର୍ଥାତ୍ ''ହେ ଅର୍ଜୁନ ! ଯଦି ତୁମେ ଅଭ୍ୟାସ ମଧ କରିପାରିବ ନାହିଁ, ତେବେ କେବଳ ମୋର ଉଦ୍ଦେଶ୍ୟରେ ସକଳ କର୍ମ କରିବାରେ ପ୍ରବୃତ୍ତ ହୁଅ । ତାହାହେଲେ ତୁମେ ସିଦ୍ଧି ଲାଭ କରିବାକୁ ସମର୍ଥ ହେବ । ଏହା ଦାସଭକ୍ତିର ସୂଚନା ଦିଏ । ଅନ୍ୟ ଭାଷାରେ ଯେଉଁମାନେ ଭଗବାନଙ୍କର ଯଥାର୍ଥ ଭକ୍ତ, ସେମାନଙ୍କର ସଙ୍ଗଲଭରୁ ମଧ ଦାସଭକ୍ତି ଜାଗରିତ ହୋଇଥାଏ ।

**ଦେତଶ୍ଶୁର** – ସୂର୍ଯ୍ୟଙ୍କୁ ଦେତଶ୍ଶୁର କହି ଅର୍ଥାତ୍ ସୂର୍ଯ୍ୟ ନାଡ଼ିକୁ ଚୈଗୁଲ୍ୟ ଗୀତାରେ କୁହାଯାଇଛି । ଏହା ସନ୍ଧାଭାଷାର ନମୂନା ।

**ଦୀର୍ଘସ୍ୱର** – ଯେଉଁ ସ୍ୱରବର୍ଣ୍ଣ ଉଚ୍ଚାରଣ କରିବାପାଇଁ ଦୀର୍ଘସମୟ ପ୍ରୟୋଜନ ହୁଏ, ସେଗୁଡ଼ି ଦୀର୍ଘସ୍ୱର । ଓଡ଼ିଆରେ ଆଠଟି ଦୀର୍ଘସ୍ୱର ଆ, ଈ, ଊ, ୠ, ୡ, ଏ, ଐ, ଓ, ଔ

**ଦୀପକ ଅଳଙ୍କାର** – ଯେଉଁଠାରେ ପ୍ରାକରଣିକ (ପ୍ରସ୍ତୁତ) ତଥା ଅପ୍ରାକରିଣକ(ଅପ୍ରସ୍ତୁତ) ପଦାର୍ଥର କ୍ରିୟା ବା ଗୁଣର ସାମ୍ୟ ପ୍ରଦର୍ଶନ କରାଯାଇଥାଏ ସେଠାରେ ଦୀପକ ଅଳଙ୍କାର ହୁଏ । ଅନ୍ୟ ଭାଷାରେ ପ୍ରକୃତ ପଦାର୍ଥର ଧର୍ବ ଅପ୍ରକୃତ ପଦାର୍ଥକୁ ପ୍ରକାଶିତ କଲେ ଉକ୍ତ ଅଳଙ୍କାର ହୁଏ । ଉଦାହରଣ -

ଚେତି ଚତୁରୀ ଚାହିଁଲା ନିଶି ନାଶେ
ପାଶେ ନାହିଁ ଦିବ୍ୟ ତରୁଣ
ମାରିହୃଦେ ହାତ ନାଥ ନାଥ ବୋଲି
ଅତି ଉଚ୍ଚେ କଲା କାରୁଣ୍ୟ ।

**ଦୋମୁହାଁ ସର୍ପ** – ଗୂଢ଼ାର୍ଥବାଚକ ଶବ୍ଦ । କର୍ଣ୍ଣକୁ ଦୋମୁହାଁସର୍ପ କୁହାଯାଇଛି । ଯେପରି

କଲାଟି ଜୀବ ଧଲାଟି ପରମ
ଦୋମୁହଁ ସର୍ପ କର୍ଣ୍ଣକୁ କହ ।

**ଦୋହା** – ପ୍ରାକୃତ ସାହିତ୍ୟରେ ଯେଉଁ ସ୍ଥାନ ଗାଥାରେ ଅଛି, ପ୍ରୟୋଗ ଦୃଷ୍ଟିରୁ ଆପ୍ରଭଂଶରେ ସେହିସ୍ଥାନ ଦୋହାରେ ଅଛି । ମାତ୍ରିକ ଅର୍ଦ୍ଧସମ ଛନ୍ଦକୁ ଦୋହା କୁହାଯାଏ ।

# ଧ

**ଧର୍ମ** – 'ଧାରୟତେ ଇତି ଧର୍ମଃ' । ଯାହା ଧରି ରଖେ ଅର୍ଥାତ୍ ଯେଉଁ ନୀତି ନିୟମରେ ମଣିଷ ଜୀବନ ପରିଚାଳିତ ହୋଇ ସୁନ୍ଦର ସୁଖରେ ଓ ସୁସ୍ଥ ପରିବେଶ ମଧ୍ୟରେ ଜୀବନ ଅତିବାହିତ କରିବାକୁ ସୁଯୋଗ ଦିଏ ଧର୍ମ । ପ୍ରାଚୀନ ସାହିତ୍ୟ ମୂଳତଃ ଧର୍ମ ବିଶ୍ୱାସ ପ୍ରତିଷ୍ଠିତ ଥିଲା । ଭାରତୀୟ ସାହିତ୍ୟର ମୂଳ ଆଧାର ବୈଦିକ ହିନ୍ଦୁ ଧର୍ମ । ଏଣୁ ମାନବିକ ଧର୍ମର ଉଦ୍‌ଘୋଷଣା ବିଶ୍ୱସାହିତ୍ୟ ପାଇଁ ଭାରତର ଅବଦାନ କହିଲେ ଅତ୍ୟୁକ୍ତି ହେବ ନାହିଁ ।

**ଧର୍ମଗ୍ରନ୍ଥ** – ଭିନ୍ନ ଭିନ୍ନ ସଂପ୍ରଦାୟର ଭିନ୍ନ ଭିନ୍ନ ଧର୍ମଗ୍ରନ୍ଥ ଅଛି । ଯାହା ସେମାନଙ୍କର ଆଦି ସାହିତ୍ୟ ଭାବରେ ପରିଗଣିତ । ହିନ୍ଦୁମାନଙ୍କର ବେଦ, ସ୍ମୃତି, ପୁରାଣ, ମୁସଲମାନଙ୍କର କୋରାନ୍, ବୌଦ୍ଧମାନଙ୍କର ତ୍ରିପିଟକ, ଶିଖ୍ ମାନଙ୍କର ଗ୍ରନ୍ଥ ସାହେବ, ପାରସୀମାନଙ୍କର ଜେନ୍ଦାଭେସ୍ତା, ଜୈନମାନଙ୍କର କଳ୍ପସୂତ୍ର, ଖ୍ରୀଷ୍ଟିୟାନ୍‌ମାନଙ୍କର ବାଇବେଲ ଇତ୍ୟାଦି ।

**ଧନୁର୍ବେଦ** – ଯଜୁର୍ବେଦର ଉପବେଦ ଧନୁର୍ବେଦ ଅଟେ । ଏହାକୁ ବିଶ୍ୱାମିତ୍ର ଲେଖିଛନ୍ତି । ଏଥିରେ ଦୀକ୍ଷାପାଦ, ସଂଗ୍ରହପାଦ, ସିଦ୍ଧିପାଦ ଓ ପ୍ରୟୋଗପାଦ ଭାବରେ ଚାରିପାଦ ଅଛି । ଏଗୁଡ଼ିକରେ ଧନୁର ଲକ୍ଷଣ ଓ ତା ଅଧୀକାରୀର ତା'ର ପ୍ରୟୋଗ, ପଦ୍ଧତି, ମନ୍ତ୍ର, ନିର୍ମାଣବିଧାନ, ସଂଚାଳନ, ନିୟମ, ପ୍ରୟୋଜନ ଗୁଡ଼ିକ ରହିଛି ।

**ଧ୍ୱନି** – ସାହିତ୍ୟ ତତ୍ତ୍ୱରେ ଗୋଟିଏ ବାକ୍ୟରୁ ପ୍ରସଙ୍ଗକ୍ରମେ ବିଭିନ୍ନ ଅର୍ଥଦ୍ୟୋତନାକୁ ବ୍ୟଙ୍ଗାର୍ଥ କୁହାଯାଏ, ଯାହାର ଅନ୍ୟ ନାମ 'ଧ୍ୱନି'। ସର୍ବ ପ୍ରଥମେ ବୈୟାକରଣିକମାନେ 'ଧ୍ୱନି' ଶବ୍ଦଗୁଡ଼ିକୁ 'ଅଭିବ୍ୟଞ୍ଜକ ଶବ୍ଦ' ଭାବରେ ବ୍ୟବହାର କରିଥିଲେ । ଆଳଙ୍କାରିକମାନେ 'ଧ୍ୱନି' ଶବ୍ଦର ଅର୍ଥ ବିସ୍ତାର ଘଟାଇ ତାହା 'ଅଭିବ୍ୟଞ୍ଜକ ଅର୍ଥ' ଭାବରେ ବ୍ୟବହାର ମଧ୍ୟ କରିଥିଲେ । ତେଣୁ ସାହିତ୍ୟରେ କାବ୍ୟକୃତିର ଉତ୍କର୍ଷ ଓ ଅପକର୍ଷର ବିଚାର ପାଇଁ 'ଧ୍ୱନି' କୁ ମାନଦଣ୍ଡ ଭାବରେ ଗ୍ରହଣ କରାଯାଇଛି । ଆନନ୍ଦବର୍ଦ୍ଧନ ଧ୍ୱନିକୁ କାବ୍ୟର ଆତ୍ମା ଭାବରେ ପ୍ରତିପାଦନ କଲେ । ଧ୍ୱନି ତିନି ପ୍ରକାର ଯଥା -ବସ୍ତୁ ଧ୍ୱନି, ଅଳଙ୍କାର ଧ୍ୱନି ଓ ରସଧ୍ୱନି । ଯେଉଁଥିରୁ ଯଥାର୍ଥ ଅର୍ଥ ପ୍ରତୀତି ଆସେ ଏବଂ ସେହି ଅର୍ଥ ପ୍ରକାଶରେ ଅଭିବ୍ୟଞ୍ଜନା ଦେଖାଦିଏ ତାହାକୁ ବସ୍ତୁଧ୍ୱନି କୁହାଯାଏ । ଯେଉଁଠି ଅଭିବ୍ୟଞ୍ଜିତ ପଦାର୍ଥ ଇତିବୃତ୍ତାତ୍ମକ ନହୋଇ କଳ୍ପନା ପ୍ରସୂତ ହୋଇଥାଏ ଏବଂ ତାହା ଅନ୍ୟ ଶବ୍ଦଦ୍ୱାରା କଥିତ ହେଲେ ଗୋଟିଏ ଅଳଙ୍କାର ରୂପ ଗ୍ରହଣ କରେ ଏପରି ବର୍ଣ୍ଣନା ଅଳଙ୍କାର ଧ୍ୱନି ହୁଏ ।

ଧ୍ୱନ୍ୟାତ୍ମକ ଶବ୍ଦ ଅଖଣ୍ଡରୂପରେ ପଦ ଅଖଣ୍ଡ ରୂପରେ ପଦ ବା ବାକ୍ୟାର୍ଥର ପ୍ରତୀତି ଜନ୍ମିଥାଏ । ଧ୍ୱନି ଯେଉଁ ଅଖଣ୍ଡ ତତ୍ତ୍ୱ ବ୍ୟଞ୍ଜିତ କରେ ତାହାକୁ ସ୍ଫୋଟ କୁହାଯାଏ । ସ୍ଫୋଟ

ହେଉଛି ପୂର୍ବାପର କ୍ରମ ବିହୀନ ରସ । ବର୍ଣ୍ଣ, ପଦ ଓ ପଦାଂଶ ଏହି ସ୍ଫୋଟର ବ୍ୟଞ୍ଜକ ।

**ଧ୍ୱନିଭେଦ** – ଚମତ୍କାରକାରୀ ବ୍ୟଙ୍ଗ୍ୟାର୍ଥ ଉପରେ ଆଧାରିତ ଧ୍ୱନିସିଦ୍ଧାନ୍ତ ଅନୁସାରେ କବିକର୍ମ କାବ୍ୟର ତିନୋଟି ଶ୍ରେଣୀ କଳ୍ପନା କରାଯାଇଛି - ଧ୍ୱନି, ଗୁଣୀଭୂତ ବ୍ୟଙ୍ଗ ଓ ଚିତ୍ର । ଯେଉଁ କବିବୃତ୍ତିରେ ବ୍ୟାଚାର୍ଥ ଅପେକ୍ଷା ଅଧିକ ଚମତ୍କାର ପୂର୍ଣ୍ଣ ବ୍ୟାଙ୍ଗାର୍ଥ ଥାଏ, ତାହାକୁ ଧ୍ୱନିକାବ୍ୟ କୁହାଯାଏ । ଏହାର ନାମାନ୍ତର ଉତ୍ତମ କାବ୍ୟ । ଯେଉଁଠି ବାଚ୍ୟାର୍ଥ ଅପେକ୍ଷା ବ୍ୟଙ୍ଗାର୍ଥ ଗୌଣ ତଥା କମ୍ ଚମତ୍କାରୀ ସେଠାରେ ଗୁଣୀଭୂତ ବ୍ୟଙ୍ଗକାବ୍ୟ ହୁଏ । ଏହାକୁ ମଧ୍ୟମ କାବ୍ୟ ମଧ୍ୟ କୁହାଯାଏ । ଯେଉଁଠି ବ୍ୟଙ୍ଗାର୍ଥ ନଥାଏ, ଥିଲେ ମଧ୍ୟ ନଥିବା ସହିତ ସମାନ ସେପିର କବିକୃତିକୁ ଚିତ୍ରକଳା ବା ଅପରକାବ୍ୟ କୁହାଯାଏ । ଏହିପରି ଧ୍ୱନି, ଉତ୍ତମ ବ୍ୟଙ୍ଗ୍ୟାର୍ଥ ଉପରେ ନିର୍ଭରଶୀଳ ।

ଧ୍ୱନି ଅଭିଧେୟାର୍ଥ ଓ ଲକ୍ଷ୍ୟାର୍ଥ ଦ୍ୱାରା ଅଭିବ୍ୟଞ୍ଜିତ ହେଉଥିବାରୁ ଧ୍ୱନିର ଦୁଇଟି ମୁଖ୍ୟଭେଦ ସ୍ଥିର କରାଯାଇଛି- ଲକ୍ଷଣାମୂଳା ଧ୍ୱନି ଓ ଅଭିଧାମୂଳା ଧ୍ୱନି ।

**ଧାତୁ** – ବ୍ୟାକରଣ ନିୟମ । କ୍ରିୟାମୂଳକ ବର୍ଣ୍ଣ ବା ବର୍ଣ୍ଣ ସମଷ୍ଟିକୁ ଧାତୁ କୁହାଯାଏ । କ୍ରିୟାର ମୂଳପିଣ୍ଡକୁ ଧାତୁ କୁହାଯାଏ । ଉତ୍ପତ୍ତି ଦୃଷ୍ଟିରୁ ଧାତୁ ୨ ଭାଗରେ ଯଥା - ମୌଳିକ ଓ ବୈକୃତିକ । ମୌଳିକ ଧାତୁ ପୁଣି ଚାରିଭାଗରେ ଯଥା - ତତ୍ସମ, ତଦ୍ଭବ, ଦେଶଜ ଓ ବୈଦେଶିକ । ବୈକୃତିକ ଧାତୁ ପୁଣି ୪ ଭାଗରେ ଯଥା - ପ୍ରଯୋଜକ ଧାତୁ, ନାମ ଧାତୁ, ସନନ୍ତ ଧାତୁ ଓ ହଙନ୍ତ ଧାତୁ ।

**ଧାମତତ୍ତ୍ୱ** – ଓଡ଼ିଆ ସନ୍ଥ ସାହିତ୍ୟରେ ଧାମତତ୍ତ୍ୱର ବର୍ଣ୍ଣନା ଅଛି । ପଞ୍ଚସଖାଙ୍କ କଳ୍ପନାରେ ବୃନ୍ଦାବନ ଶ୍ରୀକୃଷ୍ଣଙ୍କର ନିତ୍ୟଧାମ ଯେଉଁ ନିତ୍ୟଧାମ ନୀଳାଚଳ । ବେଦାନ୍ତସାରଗୁପ୍ତ ଗୀତାରେ ବଳରାମ ଦାସ, ଷୋଳଚଉପଦୀରେ ଜଗନ୍ନାଥ ଦାସ, ଶୂନ୍ୟସଂହିତାରେ ଅଚ୍ୟୁତାନନ୍ଦ ଦାସ, ଶିବସ୍ୱରୋଦୟରେ ଯଶୋବନ୍ତ ଦାସ ନିତ୍ୟଧାମ ଭାବରେ ନୀଳାଚଳ ପୀଠର ମାହାତ୍ମ୍ୟ ପ୍ରଖ୍ୟାପନ କରିଛନ୍ତି ।

**ଧାରଣା** – ଭାବର ସ୍ଥିର ରୂପହିଁ କାବ୍ୟ ସୃଷ୍ଟି ପାଇଁ ପ୍ରୟୋଜନ । କୌଣସି ଏକ ନିର୍ଦ୍ଦିଷ୍ଟ ମୁହୂର୍ତ୍ତରେ କୌଣସି ବସ୍ତୁବିଶେଷ କବିର ମନରେ ବିଭିନ୍ନ ଭାବ ସଞ୍ଚାର କରିଥାଏ । କାବ୍ୟ ସୃଷ୍ଟିର ଅନୁକୂଳ ସ୍ଥିର ମନୋଭାବ 'ଧାରଣା' ପଦବାଚ୍ୟ । ଏହାକୁ ଅନୁବୋଧ କୁହାଯାଇପାରେ ।

## ନ

**ନଟ** – ସଂସ୍କୃତରେ ନଟ୍ ଧାତୁରୁ ଏହି 'ନଟ' ଶବ୍ଦ ଆସିଛି । ନଟ୍ ର ଅର୍ଥ ହଲଚଲ ହେବା ବା ଅଙ୍ଗଭଙ୍ଗୀ ପ୍ରଦର୍ଶନ କରିବା । ତେଣୁ ନଟ କହିଲେ ନଟକାରୀ ବା ବହୁରୂପୀ କୁ ବୁଝାଏ । ସାଧାରଣ ଅର୍ଥରେ ଯେ ନାଟ ପ୍ରଦର୍ଶନ କରେ ସେ ନଟ । ପ୍ରାଚୀନ ସାହିତ୍ୟତତ୍ତ୍ୱରେ ନଟନଟୀ ସ୍ୱତନ୍ତ୍ର ଚରିତ୍ରକୁ ବୁଝାଇଥିଲେ ମଧ୍ୟ ସଂପ୍ରତି ନାଟକୀୟ ନଟସତ୍ତା ସହିତ ସଂପର୍କିତ ।

**ନନ୍ଦନତତ୍ତ୍ୱ** – ଇଂରାଜୀ Aesthetics ଶବ୍ଦ ପାଇଁ ଗୃହୀତ ହୁଏ । ଏହାକୁ ରୁଚି ବିଜ୍ଞାନ ମଧ୍ୟ କୁହାଯାଏ । ନନ୍ଦନତତ୍ତ୍ୱ ଅର୍ଥ ଆନନ୍ଦ ଓ ସୌନ୍ଦର୍ଯ୍ୟବୋଧ ସମ୍ବନ୍ଧୀୟ ତାତ୍ତ୍ୱିକ ବ୍ୟାଖ୍ୟା ବା ଦିଗ । Aesthetics ର ଅର୍ଥ ତେଣୁ ରୁଚି ବିଷୟକ, ସୌନ୍ଦର୍ଯ୍ୟ ଓ ଆନନ୍ଦ ମିଶାମିଶି ଭାବ । ତୈତ୍ତିରିୟ ଉପନିଷଦରେ ଲେଖାହୋଇଛି - ''ଆନନ୍ଦୋ ବ୍ରହ୍ମେତି ବ୍ୟଜନାତ୍'' ଅର୍ଥାତ୍ ସମଗ୍ର ସୃଷ୍ଟି ଆନନ୍ଦମୟ । ରୁଚି ବିଜ୍ଞାନ୍ ଆଲୋଚନା ପ୍ରସଙ୍ଗରେ ପାଶ୍ଚାତ୍ୟ ଦାର୍ଶନିକ ପ୍ଲୋଟିନସ୍ (Plotinus, 205-270) Neoplatonic ଦର୍ଶନର ପ୍ରତିଷ୍ଠାତା ଭାବରେ ଅନେକ କଥା ରୁଚି ବିଜ୍ଞାନ ଉପରେ କହିଛନ୍ତି । ଯେ ସମସ୍ତ ମଣିଷ ସମାଜକୁ ତିନୋଟି ବର୍ଗରେ ବିଭକ୍ତ କରିଛନ୍ତି ଯଥା - ଦାର୍ଶନିକ, ସଂଗୀତଜ୍ଞ ଓ ପ୍ରେମିକ ଏବଂ ଏହିମାନେ ସୌନ୍ଦର୍ଯ୍ୟ ଓ ଆନନ୍ଦର ଉପଭୋକ୍ତା । ସୌନ୍ଦର୍ଯ୍ୟ ସମ୍ବନ୍ଧୀୟ ଜ୍ଞାନ ଓ ସେଥିରେ ନିହିତ ଆନନ୍ଦ ଦ୍ରଷ୍ଟାର ଭାବ ଓ ବସ୍ତୁର ସମନ୍ୱୟରୁ ଆସେ । ରୋଚକ ସୌନ୍ଦର୍ଯ୍ୟର ବୋଧଗମ୍ୟ ଅଙ୍ଗ ହେଉଛି ତିନୋଟି ଯଥା - ଦ୍ରଷ୍ଟା ଓ ଦୃଶ୍ୟର ସାମଗ୍ରିକତା, ପାରସ୍ପରିକ ସମନ୍ୱୟ ଓ ତେଜ ବା ଉଜ୍ଜଳତା ପରିପୂରକ ଚିତ୍ରଭଳି । ରୋଚକ ସୌନ୍ଦର୍ଯ୍ୟ ଉପଭୋଗ୍ୟ ହେବାର ଇନ୍ଦ୍ରିୟ ହେଉଛି ଦୃଷ୍ଟିଶକ୍ତି ଓ ଶ୍ରବଣ ଶକ୍ତି ।

**ନବଐତିହାସିକତାବାଦ** *(New Historicism)* – ୧୯୮୦ରେ ଷ୍ଟିଫେନ୍ ଗ୍ରୀନ୍‌ବ୍ଲାଟଙ୍କ ବହି *Renaissance Self Fashioning: From More to Shakespeare* ଏକ ନୂତନ ତତ୍ତ୍ୱର ଅବତାରଣା କରିଥିଲେ । ଯାହାକୁ ସେ ନାମିତ କରିଥିଲେ *New Historicism* ବା ନବଐତିହାସିକତାବାଦ ନାମରେ । ବିଗଠନବାଦୀ କୌଶଳର ପ୍ରୟୋଗଦ୍ୱାରା ଗୋଟିଏ ରଚନାର ଐତିହାସିକତା ଆକଳନ କରିବା ଥିଲା ତାଙ୍କର ନୂତନ ପରୀକ୍ଷା । ଇତିହାସକୁ ବିଭିନ୍ନ ଘଟଣାର ଏକ ସରଳ କ୍ରମିକତା ରୂପେ ଗ୍ରହଣ ନକରି ଶକ୍ତିଶାଳୀ ଗୋଷ୍ଠୀର ଦମନ ରାଜନୀତିର ପ୍ରକ୍ରିୟା ହିସାବରେ ଦେଖିଛନ୍ତି । ସହଜରେ ଦୃଶ୍ୟ ହେଉନଥିବା କ୍ଷମତା, ଷଡ଼ଯନ୍ତ୍ରର ଗତିଶୀଳତା ସାହିତ୍ୟ କୃତିର ସାମ୍ବବ୍ୟ ଅର୍ଥରାଜି ଭିତରୁ ଉଦ୍ଧାର କରିବା ଥିଲା ତାଙ୍କ ନବଐତିହାସିକତାବାଦ ସାହିତ୍ୟ ସମାଲୋଚନାର

ମୂଳ ଅଭିପ୍ରାୟ । ୧୯୮୦ ଠାରୁ ନବଐତିହାସିକତାବାଦ ହିଁ ସାହିତ୍ୟ ସମାଲୋଚନାର ମୁଖ୍ୟତତ୍ତ୍ୱ ଭାବେ ପରିଗଣିତ ହୋଇଛି ।

ନବ ଐତିହାସିକବାଦୀ ତତ୍ତ୍ୱରେ ଉଭର- ବାମପନ୍ଥୀ ବା ମାର୍କସୀୟ ଦୃଷ୍ଟିଭଙ୍ଗୀ ସହ ବିଗଠନବାଦୀ ଶୈଳୀର ସମ୍ମିଶ୍ରଣ ହୋଇଛି । ଏଥିରେ ମାର୍କସୀୟ ତତ୍ତ୍ୱବାଦୀ ଲୁଇ ଆଲଥୁରେଜଙ୍କ ଆଦର୍ଶ ବିଷୟକ ବିଚାର ଯେତିକି ପ୍ରାସଙ୍ଗିକ, ମିରୋଲଫୁକୋଟ କ୍ଷମତା ନିର୍ଣ୍ଣିତ ସାମାଜିକ ସ୍ଥିତି ସମ୍ବନ୍ଧୀୟ ତତ୍ତ୍ୱ ସେତିକି ନିକଟତର । ମିହାମାଲ ବାଖତିନ୍‌ଙ୍କ ଡାୟଲଦିକ୍‌ସ୍ ଭାବରେ (ଯାହା ସାହିତ୍ୟ କୃତିକୁ ବିଭିନ୍ନ ବିପରୀତ୍‌ମୁଖୀ ସ୍ୱରର ବାମତର ରଣଭୂମି ଭାବରେ ଦେଖେ) ମଧ୍ୟ ନବଐତିହାସିକବାଦୀ ତତ୍ତ୍ୱର ଏକ ପ୍ରେରଣା ଉତ୍ସ । ନୃତତ୍ତ୍ୱ ଓ ସଂସ୍କୃତି ଅଧ୍ୟୟନର କେତେକ ପ୍ରୟୋଗ ମଧ୍ୟ ନବଐତିହାସିକବାଦ ଦ୍ୱାରା ସ୍ୱୀକୃତ ହେଉଛି । ଆମେରୀକୀୟ ସମାଲୋଚକ ଲୁଇ ମଣ୍ଟ୍ରୋଚଙ୍କ ଭାଷାରେ ନବଐତିହାସିକତାବାଦ *"A reciprocal concern with the historicity of texts and texuality of history"* ଅର୍ଥାତ୍ ବିଭିନ୍ନ ରଚନା ଭିତରେ ଥିବା ଐତିହାସିକତା ଓ ଇତିହାସର ରଚନୀୟତା ମଧ୍ୟରେ ପାରସ୍ପରିକ ସମ୍ପର୍କ ପ୍ରତି ଧ୍ୟାନଶୀଳତା ।

**ନବଧା ଭକ୍ତି** – ଭକ୍ତି ବା ପ୍ରେମର ନଅଗୋଟି ଅଙ୍ଗ । ଯଥା - ଶ୍ରବଣ, କୀର୍ତ୍ତନ, ସ୍ମରଣ, ପାଦସେବନ, ଅର୍ଚ୍ଚନା ବା ପୂଜା, ବନ୍ଦନା ବାସ୍ତବ, ପରିଚର୍ଯ୍ୟା, ସଖ୍ୟ ବା ସଖା ଭାବରେ ସମ୍ଭାଷଣ ଓ ଦାସ୍ୟ ଭାବରେ ଆତ୍ମସମର୍ପଣ ।

**ନବରସ** – ଭାରତୀୟ ସାହିତ୍ୟ ଶାସ୍ତ୍ରରେ ନବରସର ପରିକଳ୍ପନା କରାଯାଇଛି । ଯଥା- ଶୃଙ୍ଗାର, ବୀର, କରୁଣ, ଅଦ୍ଭୁତ, ହାସ୍ୟ, ଭୟାନକ, ବୀଭତ୍ସ, ରୌଦ୍ର, ଶାନ୍ତ ।

**ନବ୍ୟନାଟକ** – ନବ୍ୟ ନାଟକର କୌଣସି ସ୍ୱତନ୍ତ୍ର ଆଙ୍ଗିକ କିମ୍ବା ଆତ୍ମିକ ପରିଚୟ ନାହିଁ । ଅନେକ ମତବାଦର ସମନ୍ୱିତ ରୂପ ହିଁ ନବ୍ୟନାଟକ । ଗତାନୁଗତିକ ନାଟକରେ ଥିବା ସନ୍ଧି ବିଭାଗ (Stages of action), ଐକ୍ୟ (Unity), ଅଗ୍ରଗତି (Progression), କ୍ରମ (Continuty), ବିଲମ୍ବନ (Suspense), ଆବେଗ (Tempo), ସଂଘାତ (Conflict), ଉପକରଣ ସଂଯୋଗ (Combination of elements) ଆଦି ସୁରକ୍ଷିତ ନ ହେଲେ ମଧ୍ୟ ଚଳିବ । ଏଥିରେ ପ୍ଲଟ କହିଲେ ପ୍ଲଟ ହୀନତା, ଲକ୍ଷ୍ୟ କହିଲେ ଲକ୍ଷ୍ୟହୀନତା ଏବଂ ଜୀବନ କହିଲେ ଅସ୍ତି-ନାସ୍ତି । ସଂଳାପରେ ବହୁଳତା ଓ ଗତିରେ ସ୍ୱଳ୍ପତା ଲକ୍ଷଣୀୟ । ସଂଘାତ (conflict) ର ପରିଣତି ପ୍ରାୟ ନଞାର୍ଥକ ଅସ୍ତିତ୍ୱବାଦୀ । ଜୀବନର ଅବରୁଦ୍ଧ ପକ୍ଷ ଗୁଡ଼ିକ ଏଥିରେ ଦିଆଯାଏ ଯାହାର କୌଣସି ନିଷ୍ପତ୍ତି କାଳସାପେକ୍ଷ ।

କାବ୍ୟ ନାଟକ, ସାମାଜିକ ନାଟକ, ସଙ୍କେତ ନାଟକ, ପ୍ରୟୋଗବାଦୀ ନାଟକ, ଉଦ୍‌ଭଟ ନାଟକ, ନବ୍ୟନାଟକର ଅନ୍ତର୍ଭୁକ୍ତ ।

**ନାଟକ** – ସାହିତ୍ୟଦର୍ପଣରେ କୁହାଯାଇଛି ''ଅଭିନୟାତ୍ମକଂ କାବ୍ୟଂ ନାଟ୍ୟମ୍'' । ଅର୍ଥାତ୍ ଯେଉଁ କାବ୍ୟ ଅଭିନୟାତ୍ମକ, ତାହହିଁ ନାଟକ । ଆରିଷ୍ଟୋଟଲ୍‌ଙ୍କ ମତରେ କାବ୍ୟ, ମହାକାବ୍ୟ ହେଉଛି ବର୍ଣ୍ଣନାତ୍ମକ ଆଖ୍ୟାନ, ନାଟକ ହେଉଛି କ୍ରିୟାତ୍ମକ ବା ଅଭିନୟାତ୍ମକ ଲୋକବୃତ୍ତ । ବିଂଶ ଶତାବ୍ଦୀର ବିଶିଷ୍ଟ ନାଟ୍ୟ ସମାଲୋଚକ ଅଧ୍ୟାପକ ଏଲାରଡ଼ାଇସ୍ ନିକଲ *'The Theory of Drama'* ରେ ନାଟକର ସଂଜ୍ଞା ନିରୂପଣ କରିବାକୁ ଯାଇ କହିଛନ୍ତି *"Drama is the art of expressing ideas about life in such a manner as to render the express on capable of interpretation by actors and likely to interest on audience assembled to hear the words and witness the action".*

ଓଡ଼ିଆରେ ନାଟକକୁ ଇଂରାଜୀ ପ୍ରତିଶବ୍ଦ *Drama* ରଖାଯାଇଛି । ଗ୍ରୀକ୍ ଭାଷାର ମୂଳ *'Drama'* ଶବ୍ଦର ଅର୍ଥ 'କାର୍ଯ୍ୟ'। ଯେଉଁ ସୃଷ୍ଟିରେ କଥା ଅପେକ୍ଷା କାର୍ଯ୍ୟର ପ୍ରାଧାନ୍ୟ ପରିଲକ୍ଷିତ ହୁଏ, ତାକୁ ସେମାନେ *Drama* କହୁଥିଲେ । ସଂସ୍କୃତରେ ଏହି ନାଟକ ରୂପକ ନାମରେ ପରିଚିତ । ନାଟକ ଏକ ମିଶ୍ର କଳା । ନାଟକର ପ୍ରଧାନ ଉପାଦାନ ହେଲା କାହାଣୀ, ଚିତ୍ରକଳ୍ପ, ସଂଳାପ, ସଙ୍ଗୀତ, ଦୃଶ୍ୟ ଏବଂ ଭାବନା । ବିଷୟବସ୍ତୁ ଦୃଷ୍ଟିରୁ ନାଟକକୁ ବିଭିନ୍ନ ଶ୍ରେଣୀରେ ବିଭକ୍ତ କରାଯାଇଛି । ଯଥା - (କ) ପୌରାଣିକ, (ଖ) ଐତିହାସିକ, (ଗ) ସାମାଜିକ, (ଘ) ରାଜନୈତିକ, (ଙ) ଉପନ୍ୟାସଭିତ୍ତିକ ଏବଂ (ଚ) ଉଦ୍ଭଟ ନାଟକ । ନାଟକର ଗଠନ କଳା ଦୃଷ୍ଟିରୁ ତାର ଆରମ୍ଭ, ଅଗ୍ରଗତି ଓ ବିକାଶକୁ ପାଞ୍ଚଭାଗରେ ବିଭକ୍ତ କରାଯାଇଛି - ଆରମ୍ଭ *(a) Introduction, (b) Rising action, (c) Crisis, (d) Falling action, (e) Conclusion.* ନାଟକର ପ୍ରଭାବ ସମାଜ ଉପରେ ପ୍ରତ୍ୟକ୍ଷ । ନାଟକ ସଜୀବତାର ଲକ୍ଷଣ । ନାଟକର ଅଗ୍ରଗତି ଆମ ଜାତୀୟ ଜୀବନର ପ୍ରଗତିର ସ୍ୱାକ୍ଷର ବହନ କରିଥାଏ । ତେଣୁ କୁହାଯାଇଛି *"A nation is known by its theatre"*

**ନାଟକୀୟ ସ୍ୱଗତ କଥନ** (Dramatic monologue) – ସ୍ୱଗତ ବକ୍ତବ୍ୟ । ଏହା ଗଦ୍ୟ ନାଟକରେ ବା ପଦ୍ୟରେ ଗୋଟିଏ ଚରିତ୍ର ହୋଇପାରେ । ଚରିତ୍ରମାନଙ୍କର ଉପସ୍ଥିତି କାର୍ଯ୍ୟକଳାପ ଓ ସଂଳାପ ସଂପର୍କରେ ଆଭାସ ମିଳିଥାଏ । ସ୍ୱଗତ କଥନରେ ନିର୍ଦ୍ଦିଷ୍ଟ ଚରିତ୍ର ନିଜର ଇତିହାସ, ମାନସିକ ଦ୍ୱନ୍ଦ, ସାମାଜିକ ସ୍ଥିତି ତଥା ଅନ୍ୟମାନଙ୍କ ସଂପର୍କରେ ଏକ ସମ୍ୟକ ଧାରଣା ଦେଇଥାଏ । ଏହା ନାଟକର ଚରମ ସୀମା ବା ଦ୍ୱନ୍ଦରେ ଅବତୀର୍ଣ୍ଣ ଚରିତ୍ରର ମନୋଭାବ ଏଭଳି ସ୍ୱଗତ କଥନରୁ ଜାଣିହୁଏ ।

**ନାଟ୍ୟଦ୍ୱନ୍ଦ** *(Conflict)* – ଦ୍ୱନ୍ଦ୍ୱ ନାଟକର ପ୍ରାଣ । *"Conflict is the life of a drama".* ଦ୍ୱନ୍ଦ ହିଁ ସାଧାରଣ କାହାଣୀକୁ ନାଟକୀୟ କାହାଣୀରେ ପରିଣତ କରେ । ଦ୍ୱନ୍ଦ୍ୱ ନାଟକରେ ଉତ୍କଣ୍ଠା, ଆବେଗ ଏବଂ ଗତିଶୀଳତା ସୃଷ୍ଟି କରେ । ତେଣୁ ପ୍ରଖ୍ୟାତ ଇଂରେଜ ନାଟ୍ୟକାର ବର୍ଣ୍ଣାଡ୍ ଶ' କହିଛନ୍ତି *"No conflict, no drama".* ନାଟକୀୟ ଦ୍ୱନ୍ଦ୍ୱ ଦୁଇ ପ୍ରକାର । ବହିର୍ଦ୍ୱନ୍ଦ୍ୱ *(Outer conflict)* ଏବଂ ଅନ୍ତର୍ଦ୍ୱନ୍ଦ୍ୱ *(Inner conflict)* । ଏହି ଦ୍ୱନ୍ଦ ନାଟକର ପ୍ରତ୍ୟେକ ଚରିତ୍ର ଚରିତ୍ର ଭିତରେ, ଚରିତ୍ର ତାର ବିବେକ ସହିତ, ତାର ମନ ସହିତ, ତାର ପରିବେଶ ସହିତ, ଅଦୃଷ୍ଟ ସହିତ ହୋଇପାରେ ।

**ନାଟ୍ୟଶାସ୍ତ୍ର** – ଭାରତୀୟ ସାହିତ୍ୟ ଶାସ୍ତ୍ର ଭିତର ସର୍ବ ପ୍ରଥମ ହେଉଛି ଭରତଙ୍କ 'ନାଟ୍ୟଶାସ୍ତ୍ର'। ଆଚାର୍ଯ୍ୟ ଭରତଙ୍କ ଉପରେ ବାଦାନୁବାଦ ଥିଲେ ବି ଆଜି ପାଞ୍ଚ ହଜାର ଶ୍ଳୋକ ବିଶିଷ୍ଟ ନାଟ୍ୟଶାସ୍ତ୍ର ସର୍ବତ୍ର ଉପଲବ୍ଧ । ଏହାର ନାମ 'ନାଟ୍ୟଶାସ୍ତ୍ର' ରଖାଯାଇଥିଲେ ବି ବସ୍ତୁତଃ ଏହା ସମସ୍ତ ଲଳିତ କଳାର ଆଲୋଚନାତ୍ମକ ଗୋଟିଏ ବିଶ୍ୱକୋଷ । ଏହା ଖ୍ରୀଷ୍ଟୀୟ ଦ୍ୱିତୀୟ ଶତାବ୍ଦୀ ସୁଦ୍ଧା ସମ୍ପାଦିତ ହୋଇଥିଲା ବୋଲି ଅନୁମିତ ହୁଏ । ଏଥିରେ ନାଟ୍ୟୋତ୍ପତ୍ତି ଓ ନାଟ୍ୟାଭିନୟ ବିଷୟକ ସମସ୍ତ ବିଷୟ ଟିକିନିଖି ଆଲୋଚନା କରାଯାଇଛି । ଷଷ୍ଠ ଓ ସପ୍ତମ ଅଧ୍ୟାୟରେ ରସ ଓ ଭାବ ବିଷୟ ବିଶ୍ଳେଷିତ ହୋଇଛି । ଷୋଡ଼ଶ ଅଧ୍ୟାୟରେ ସାହିତ୍ୟିକ ସମାଲୋଚନାର ଦିଗ୍ ବିଦଗ ବିଷୟରେ ଚର୍ଚ୍ଚା ହେଇଛି । ଏଥିରେ ଦଶଗୁଣ, ଦଶ ଦୋଷ ଓ ଚାରିଗୋଟି ଅଳଙ୍କାର - ଯମକ, ଉପମା, ରୂପକ, ଦୀପକ ବିଷୟରେ ବିଶଦ ବିଚାର ଦେଖିବାକୁ ମିଳେ ।

**ନାଟ୍ୟଶ୍ଳେଷ** – ନାଟକର ଗୋଟିଏ ଉକ୍ତିକୁ ବକ୍ତା ଓ ଶ୍ରୋତା ଭିନ୍ନ ଭିନ୍ନ ଅର୍ଥରେ ଗ୍ରହଣକଲେ ତାହାକୁ ନାଟ୍ୟଶ୍ଳେଷ କୁହାଯାଏ । ନାଟ୍ୟଶ୍ଳେଷ ନାଟକୀୟତା ସୃଷ୍ଟିରେ ସହାୟକ ହୋଇଥାଏ । ସଂଳାପର ଅନ୍ତର୍ନିହିତ ଅର୍ଥକୁ ଭିନ୍ନ ଅର୍ଥରେ ନେଇ ଭିନ୍ନ ଭିନ୍ନ ଚରିତ୍ର ମଧ୍ୟ ଭିନ୍ନ ଭିନ୍ନ କ୍ରିୟା ଦେଖାଇଛନ୍ତି । ନାଟ୍ୟଶ୍ଳେଷ ଦର୍ଶକ ମନରେ କୌତୁକ ଓ ବେଦନା ଉଭୟ ପ୍ରକାର ଅନୁଭୂତି ଉଦ୍ରେକ କରିପାରେ । ନାଟଶ୍ଳେଷ ଯେତିକି ସକରାତ୍ମକ, ଦର୍ଶକର ମାନସିକତା ସେତିକି ହାଲ୍କା, ହାସ୍ୟଭର ଏବଂ ନାଟ୍ୟଶ୍ଳେଷ ଯେତିକି ଦୁଃଖାତ୍ମକ ମାନସିକତା ସେତିକି ତୀବ୍ର, ଗଭୀର ଓ ଚିରନ୍ତନ ହୋଇଉଠେ । ନାଟ୍ୟଶ୍ଳେଷ ନାଟକୀୟତା କ୍ରିୟା ସୃଷ୍ଟି ଅନ୍ୟତମ ଉପାୟ ।

**ନାଥ** – ଶ୍ରେଷ୍ଠ, ସ୍ୱାମୀ, ମଧ୍ୟ ଯୁଗୀୟ ଶୈବ ସଂପ୍ରଦାୟର ସିଦ୍ଧଯୋଗୀ । ନାଥ ସାହିତ୍ୟରେ ନା - ଅର୍ଥ ଅନାଦି ରୂପ ଓ ଥ - ଅର୍ଥ ଭୂବନତ୍ରୟ ଅର୍ଥାତ୍ ତ୍ରିଭୂବନର ଅନାଦିକାରଣ ଶିବ ହୁଏ । ଅର୍ଥାତ୍ ଯିଏ ଅଜ୍ଞାନକୁ ଦୂରକରି ମୋକ୍ଷ ଦାନ କରିବାରେ କ୍ଷମ । ଭାରତୀୟ ଧର୍ମଧାରାରେ ନାଥ ସଂପ୍ରଦାୟର ଏକ ଗୌରବମୟ ସ୍ଥାନଥିଲା । ନାଥ ସିଦ୍ଧ ଯୋଗୀଙ୍କ

ସଂଖ୍ୟା ୮୪ ଥିଲା । ଓଡ଼ିଆ ସାହିତ୍ୟରେ ଶିଶୁ ବେଦ, ଅମରକୋଷ ଗୀତା, ସପ୍ତାଙ୍ଗ ଯୋଗସାର ଟୀକା, ଗୋରେଖ ସଂହିତା ଆଦିକୁ ନାଥ ସାହିତ୍ୟ ଭାବେ ଗ୍ରହଣ କରାଯାଏ ।

ଓଡ଼ିଆ ସାହିତ୍ୟରେ ନାଥଧର୍ମ ବିଷୟକ ଯେତେ ଉପାଦାନ ମିଳେ ସେଗୁଡ଼ିକୁ ସାଧାରଣତଃ ଦୁଇ ଭାଗରେ ବିଭକ୍ତ କରାଯାଇପାରେ । ପ୍ରଥମତଃ ନିରୁତା ନାଥ ସାହିତ୍ୟ କେବଳ ନାଥଧର୍ମର ତତ୍ତ୍ୱ ଓ ଦର୍ଶନକୁ ନେଇ ରଚିତ । ଅନ୍ୟ ବିଭାଗଟି ହେଲା ଓଡ଼ିଆ ସାହିତ୍ୟରେ ବିଭିନ୍ନ ବିଭାଗରେ ନାଥଧର୍ମ, ଦର୍ଶନ ତତ୍ତ୍ୱ, ଆଚରଣ ବର୍ଣ୍ଣନା ।

**ନାଥଧର୍ମ** – ପ୍ରାୟ ଖ୍ରୀଷ୍ଟୀୟ ପ୍ରଥମ ଓ ଦ୍ୱିତୀୟ ଶତାବ୍ଦୀଠାରୁ ନବମ ଶତାବ୍ଦୀ ବେଳକୁ ଭାରତୀୟ ଆଧାତ୍ମିକ ଜୀବନର ଅବକ୍ଷୟର କାଳ ବୋଲି ଐତିହାସିକମାନେ ସ୍ଥିର କରିଥାନ୍ତି । ଏହି ଅବକ୍ଷୟର ଗଣ୍ଡି ମଧ୍ୟରୁ ଉଦ୍ଧାର କରିବାପାଇଁ ଏକ ଯୋଗ କୈନ୍ଦ୍ରିକ ସଂଯମଶୀଳ ଧର୍ମ ସୃଷ୍ଟି ହୋଇଥିଲା । ଏହାର ଦାର୍ଶନିକ ଭିତ୍ତି ବେଦ ଓ ଉପନିଷେଦ ଉପରେ ପର୍ଯ୍ୟବେକ୍ଷିତ ଥିଲା । ବେଦ ଉପନିଷେଦର ପରମ ବା ବ୍ରହ୍ମଙ୍କୁ ସେ 'ପରମପାଦ' ବା ନାଥ ସ୍ୱରୂପ ଭାବେ ଗ୍ରହଣ କଲେ । ରାଜ ଗୁହ୍ୟରେ 'ନାଥ' ର ଲକ୍ଷଣ ନିରୁପିତ ହୋଇ କୁହାଯାଇଛି ''ନକାରୋଽନାନି ରୂପଂ ଥ-କାରଃ ସ୍ଥାପ୍ୟତେ ସଦା ।''ଅର୍ଥାତ୍ ଯାହା ଅନାଦି ରୂପରେ ସ୍ଥିତି ସୂଚକ କରେ ତାହା 'ନାଥ' । ପୁନଶ୍ଚ ନାଥ ଶବ୍ଦର ଅଭିଧାନିକ ବ୍ୟାଖ୍ୟାରୁ ସ୍ୱାମୀ ବା ପ୍ରଭୁ ଅର୍ଥ ପ୍ରତୀତ ହୁଏ । ଯେ ତ୍ରିଭୂବନର ସ୍ୱାମୀ ବା ପ୍ରଭୁ ସେହି ନାଥ ସ୍ୱରୂପ ହେଉଛନ୍ତି ନାଥଧର୍ବର ଆରାଧ । ଧାତୁଗତ ଅଥରେ ଏହା ଭାଦି ପରପଦୀ ଓ ଆତ୍ମନେପଦୀ ରୂପରେ ତାପ, ଐଶ୍ୱର୍ଯ୍ୟ, ପ୍ରାର୍ଥନା, ଆଶୀର୍ବାଦ ଓ କଲ୍ୟାଣପ୍ରାପ୍ତି ହୁଏ, ସେହି ପରମପଦ 'ନାଥ' ପଦବାଚ୍ୟ । ନାଥଧର୍ମର ଉପାସ୍ୟ ନାତ ସ୍ୱରୂପ ସୁଗୁଣ ଓ ନିର୍ଗୁଣତାର ଉର୍ଦ୍ଧ୍ୱରେ ଶିବ ଓ ବିଷ୍ଣୁଠାରୁ ଉଚ୍ଚତର ଜ୍ୟୋତ ସ୍ୱରୂପ । ପାପତାପହର । ଅବାଂ ମାନଗୋଚର ସ୍ୱୟଂ ପୂର୍ଣ୍ଣବ୍ରହ୍ମ ସ୍ୱରୂପ ଅଟନ୍ତି । ସେ ସତ୍ୟ, ଅସତ୍ୟ, ଜଡ଼ ଚୈତନ୍ୟ, ଦ୍ୱୈତ ଅଦ୍ୱୈତ, ଆଦି ଅନ୍ତବର୍ଜିତ ଓ କଳ୍ପନାତୀତ ଅଟନ୍ତି । କେବଳ ଧାନଯୋଗରେ ଏହି ନାଥ ସ୍ୱରୂପଙ୍କୁ ସାକ୍ଷାତ କରି ସଂସାର ସାଗରରୁ ମୁକ୍ତିପାଏ । ଯୋଗମାର୍ଗ ହିଁ ନାଥସ୍ୱରୂପଙ୍କର ଉପଲବ୍ଧିର ଏକ ପନ୍ଥା । ଯୋଗ ନାଥଧର୍ମର ପ୍ରଧାନ ଉପଜୀବ୍ୟ ଉପାଦାନ ।

'ନାଥ' ପଦବୀ ସାଧକ ମାନଙ୍କ ପ୍ରବର୍ତ୍ତିତ ତଥା ପ୍ରଚାରିତ ଧର୍ମକୁ ନାଥ ଧର୍ମ କୁହାଯାଏ । 'ନାଥ' ଶବ୍ଦର ସାଧାରଣ ଅର୍ଥ 'ପ୍ରଭୁ' ବା 'ସ୍ୱାମୀ' । ଡକ୍ଟର ହଜାରୀ ପ୍ରସାଦ ଦ୍ୱିବେଦୀଙ୍କ ଅନୁଯାୟୀ 'ନା' ଶବ୍ଦର ଅର୍ଥ ଯାହା ମୋକ୍ଷ ଦାନରେ ଦକ୍ଷ ଅର୍ଥାତ୍ ଯାହା ମୋକ୍ଷ ପ୍ରାପ୍ତି ସମ୍ବନ୍ଧରେ ସମ୍ୟକ୍‌ଜ୍ଞାନ ଜାତ କରାଏ ଏବଂ 'ଥ' ଶବ୍ଦର ଅର୍ଥ ଜ୍ଞାନର ଦୂରୀକରଣ, ଅର୍ଥାତ୍ ନାଥ ଆଶ୍ରୟରେ ନାଥ ବ୍ରହ୍ମର ସାକ୍ଷାତକାର ହୋଇଥାଏ ଏବଂ ଅଜ୍ଞାନର ମାୟା ଅବରୁଦ୍ଧ ହୁଏ । ବେଦ ଉପନିଷଦର ପରମ ବା ବ୍ରହ୍ମକୁ ସେ ପରମପାଦ

ବା 'ନାଥସ୍ୱରୂପ' ଭାବରେ ଗ୍ରହଣ କଲେ । ରାଜଗୁହ୍ୟରେ 'ନାଥ' ର ଲକ୍ଷଣ ନିରୂପିତ ହୋଇ କୁହାଯାଇଛି - ନ କାରୋଽନାଦି ରୂପଂଞ୍ଚ-କାରଃ ସ୍ଥାପ୍ୟଦେ ସଦା''- ଅର୍ଥାତ୍ ଯାହା ଅନାଦି ରୂପରେ ସ୍ଥିତି ସୂଚକ କରେ ତାହା ନାଥ । ନାଥ ଧର୍ମର ଉପାସ୍ୟ ନାଥ ସ୍ୱରୂପ ସଗୁଣ ଓ ନିର୍ଗୁଣର ଊର୍ଦ୍ଧ୍ୱରେ ଶିବ ଓ ବିଷ୍ଣୁଙ୍କଠାରୁ ଉଚ୍ଚତର ଜ୍ୟୋତି ସ୍ୱରୂପ । ପାପତାପହର । କେବଳ ଧ୍ୟାନଯୋଗରେ ଯୋଗୀ ଏହି ନାଥ ସ୍ୱରୂପଙ୍କୁ ସାକ୍ଷାତ କରି ସଂସାର ସାଗରରୁ ମୁକ୍ତିପାଏ । ତେଣୁ ନାଥଧର୍ମ ଏକ ଯୋଗଭିତ୍ତିକ ଧର୍ମ ।

ଆଦିନାଥ ଶିବଙ୍କଠାରୁ ଏହି ଧର୍ମ ସୃଷ୍ଟି ହୋଇଥିବାରୁ ଏହାର ନାମ ନାଥଧର୍ମ ହେଲା । ଶିବଙ୍କ ଆଚରିତ ଯୋଗପନ୍ଥା ହିଁ ନାଥଯୋଗୀଙ୍କର ସାଧନା ପନ୍ଥା ହେଲା ।

**ନାଦ** – କୁଣ୍ଡଳିନୀ ଶକ୍ତିକୁ ଜାଗ୍ରତକରି ସେ ଶକ୍ତିକୁ ଊର୍ଦ୍ଧ୍ୱଗାମୀ କରାଇବା ଫଳରେ ଯେଉଁ ସ୍ଫୋଟ ଜାତ ହୁଏ ତାହା ନାଦ ନାମରେ କଥିତ । ଏହି ନାଦ ଅନାହତ ରୂପେ ସମଗ୍ର ବ୍ରହ୍ମାଣ୍ଡରେ ପରିବ୍ୟାପ୍ତ ହୋଇଅଛି ଓ ପିଣ୍ଡ ମଧ୍ୟରେ ରହିଛି । ଅଜ୍ଞାନୀ ବ୍ୟକ୍ତି ଏହି ନାଦ ଶୁଣି ନପାରିବାର କାରଣ ହେଉଛି ଯେ ତାହାର ସୁଷମ୍ନା ପଥ ବନ୍ଦ ରହିଥାଏ ।

**ନାଦ-ବିନ୍ଦୁ** – ଓଡ଼ିଆ ସନ୍ଥ ସାହିତ୍ୟରେ ବିବୃତ ଏକ ସାଧନ ତତ୍ତ୍ୱ । ''ହଠଯୋଗ ପ୍ରଦୀପିକା'' ରେ ଶିବହିଁ ନାଦବିନ୍ଦୁ କଳାର ଆଧାର ବୋଲି କଥିତ ''ନମଃ ଶିବାୟ ଗୁରବେ ନାଦ ବିନ୍ଦୁ କଳତ୍ମନେ ।'' ସୃଷ୍ଟିର ଆରମ୍ଭରେ ଯାହା ଅଣୁ ରୂପରେ ଭାସମାନ ଥିଲା, ଚିତ୍ ଶକ୍ତି ସାହାଯ୍ୟରେ ତାହା ଜ୍ୟୋତିର୍ମୟ ରୂପ ଧାରଣ କରି ବିନ୍ଦୁ ଭାବରେ ପରିଚିତ ହେଲା । ବିନ୍ଦୁର ପ୍ରଥମ ସ୍ପନ୍ଦନରେ ନାଦର ଉତ୍ପତ୍ତି । ସେହି ନାଦରୁ କଳା ବା ବର୍ଣ୍ଣର ଉତ୍ପତ୍ତି । ବିନ୍ଦୁର ସୃଷ୍ଟି, କ୍ରିୟା ସଂପନ୍ନ । ଚିତ୍ ଶକ୍ତି ଜାଗ୍ରତ ପାଇଁ କୁଣ୍ଡଳିକା ଶକ୍ତିକୁ ଜାଗ୍ରତ କରାଇ ସେହି ଶକ୍ତିକୁ ଊର୍ଦ୍ଧ୍ୱଗାମୀ କରାଇଲେ ଯେଉଁ ସ୍ଫୋଟ ଜାତହୁଏ ତାହା ନାଦ ନାମରେ ପରିଚିତ । ଏହି ନାଦ ଅନାହତ ଅବସ୍ଥାରେ ସମଗ୍ର ବ୍ରହ୍ମାଣ୍ଡ ପରିବ୍ୟାପ୍ତ ହୋଇଛି । ତାହା ମଧ୍ୟ ପିଣ୍ଡ ମଧ୍ୟରେ ରହିଛି । ଏହି ନାଦକୁ ଓଁକାର, ପ୍ରଣବ, ଶବ୍ଦ ବ୍ରହ୍ମ ଓ ସୋଽହଁ ମଧ୍ୟ କୁହାଯାଏ ।

**ନାନାବାୟା ଗୀତ** – ଏହା ଶିଶୁ ମନ ଭୁଲାଣିଆ ଗୀତ । ଇଂରାଜୀରେ ଏଇ ପ୍ରକାର ଗୀତର ନାମ ନର୍ସରୀ ରାଇମ୍ । ପିଲାକୁ ଶୁଆଇବା, ହସାଇବା, କୌତୁକ କରିବା, ଅଝଟ ପିଲାକୁ ବୁଝାଇବା ସମୟରେ ମାଆମାନେ ଏଇ ଗୀତ ଗାଇଥାଆନ୍ତି । ଏହା ଅର୍ଥଦ୍ୟୋତକ ହୋଇପାରେ, ନହୋଇପାରେ । ଏହା ଓଡ଼ିଆ ନାରୀ ସୃଜନର ଆଦ୍ୟ ସ୍ୱାକ୍ଷର ବୋଲି ଗବେଷକମାନେ ମତ ଦେଇଥାନ୍ତି । ଧୋରେ ବାଇଆ ଧୋ, ଟୁଉକୁଁମୁଷି ଇତ୍ୟାଦି ଏହାର ଅନ୍ତର୍ଗତ ।

ନାମତତ୍ତ୍ୱ – ଭକ୍ତି ବାଦରେ ନାମ ଜପ, ନାମ ଭଜନର ମହତ୍ତ୍ୱ ସ୍ୱୀକୃତ । ଗୌଡ଼ୀୟ ବୈଷ୍ଣବ ସାହିତ୍ୟରେ ନାମ ସଂକୀର୍ତ୍ତନର ସ୍ଥାନ ଅତି ଉଚ୍ଚକୋଟୀର । ନାମ ଭଜନ ବଳରେ ଉପାସକ ଉପାସ୍ୟର ଶକ୍ତି ଗ୍ରହଣ କରେ । ଉପାସ୍ୟ ଓ ଉପାସକର ନାମ ଭିତରେ କୌଣସି ଭେଦନାହିଁ ବରଂ ନାମୀଠାରୁ ନାମ ହିଁ ମହତର ।

ନାରୀବାଦ(Feminism) – ପୁରୁଷ ଓ ନାରୀ ମଧ୍ୟରେ ଥିବା ବିରୋଧର ବିଗଠନ କରି ପାଶ୍ଚାତ୍ୟ ସଂସ୍କୃତିର ପୁର୍ନମୂଲ୍ୟାୟନ ଭିତ୍ତିଭୂମିରେ ନାରୀବାଦର ଜନ୍ମ । ଏହି ଦୃଷ୍ଟିରୁ ନାରୀବାଦ ଉତ୍ତର ସଂରଚନା ବାଦର ଏକ ସଂସ୍କରଣ । ପିତୃପ୍ରଧାନ ଭାଷା ଓ ବିଚାରରେ ଥିବା ନାରୀ ବିରୋଧି ଧାରଣା ଗୁଡ଼ିକର ସମାଲୋଚନା, ନାରୀ ସ୍ୱାତନ୍ତ୍ର୍ୟ, ପରିଚୟ ଓ ଅଧିକାରର ପ୍ରସାର ନାରୀମାନଙ୍କ ଅନୁଭୂତିର ଉପସ୍ଥାପନ ପାଇଁ ନାରୀମାନଙ୍କୁ ପ୍ରଚୋଦିତ କରିବା ଆଦି ବିଭିନ୍ନ ଦିଗରେ ଏହି ନାରୀବାଦୀ ଆନ୍ଦୋଳନ ବ୍ୟାପ୍ତ ହୋଇଥିଲା । ୧୯୬୦ରୁ ନାରୀବାଦୀ ସମାଲୋଚନାର ବିକାଶ ଘଟିଛି । କବିତା, ନାଟକ ବିଶେଷ କରି ଉପନ୍ୟାସରେ ପରିବେଷିତ ନାରୀମାନଙ୍କ ଅନୁଭୂତିର ମୂଲ୍ୟାଙ୍କନ ବା ପୁନର୍ମୂଲ୍ୟାୟନ ପାଇଁ ଏହା ଏକ ପ୍ରଚେଷ୍ଟା ।

ନାରୀବାଦର ଅଭ୍ୟୁଦୟ ବିକାଶ କେବଳ ସାହିତ୍ୟ ପରିସରଭୁକ୍ତ ନୁହେଁ, ଏହା ନାରୀର ନ୍ୟାଯ୍ୟ ଅଧିକାର ପାଇଁ ସାମାଜିକ ସ୍ତରରେ ଘଟିଥିବା ଚିନ୍ତା ବିପ୍ଳବର ଏକ ସ୍ୱରୂପ । ଆଧୁନିକ ନାରୀବାଦୀ ସମାଲୋଚନାର ମୌଳିକତା ପ୍ରକାଶିତ ହୋଇଛି ସିମନ ଡି ବିବୃଆ (Simone de Beavoir) ଙ୍କ ପୁସ୍ତକ "The Second Sex"(1949) ରେ । ତାଙ୍କ ମତରେ ଜଣେ ନାରୀ ନିଜକୁ 'ମୁଁ ଜଣେ ନାରୀ' ସଂଜ୍ଞାରେ ଅଭିହିତ କରୁଥିବା ବେଳେ, ଜଣେ ପୁରୁଷ 'ମୁଁ ଜଣେ ପୁରୁଷ' ବୋଲି କହିବାର ଆବଶ୍ୟକତା ଅନୁଭବ କରେ ନାହିଁ । ଜଣେ ପୁରୁଷ ସମଗ୍ର ମନୁଷ୍ୟ ଜାତିର ପ୍ରତିଧ୍ୱନିତ କରେ । କିନ୍ତୁ ନାରୀର ସେହିଭଳି ଉଚ୍ଚାରଣ ସାଧାରଣ ଭାବେ ଗୃହୀତ ହୁଏନାହିଁ । ଏହାହିଁ ପୁରୁଷ ନାରୀ ବୈଷମ୍ୟର ଏକ ଗୁରୁତ୍ୱପୂର୍ଣ୍ଣ ପରିଚୟ ।

ନାରୀ-ପୁରୁଷ ମଧ୍ୟରେ ଥିବା ଅସାମ୍ୟ ପ୍ରାୟତଃ ପାଞ୍ଚଟି ବିଷୟକୁ ନେଇ ବିଚାର କରାଯାଏ । ସେଗୁଡ଼ିକ ହେଲା ଶରୀର (biology), ଅନୁଭୂତି (Experience), ଭାଷା ବା ବାକ୍‌ରୀତି (Discourse), ଅଚେତନ (The unconscious), ସମାଜିକ ଓ ଅର୍ଥ ବ୍ୟବସ୍ଥା (Social and economic) । ଆଧୁନିକ ନାରୀବାଦର ଏକ ଉଲ୍ଲେଖନୀୟ ରଚନା ହେଉଛି Kate Millett ଙ୍କ ପୁସ୍ତକ Sexual Politics(1970) । ତେବେ ନାରୀବାଦର ସବୁଠାରୁ ବିଷୟ ହେଲା ଅଶାଳୀନତା ।

ତତ୍ତ୍ୱ ଜଗତର ସମସ୍ତ ବଳୟ ଭିତରେ ଚାଲିଥିବା ଚିରନ୍ତନ କ୍ଷମତା ସଂଘର୍ଷ ବିଷୟରେ ନାରୀବାଦ ଏକ ଜ୍ୱଳନ୍ତ ଉଦାହରଣ । ନାରୀବାଦ ନାରୀଚେତନା ତଥା ମୂଲ୍ୟବୋଧର ପୁନର୍ମୂଲ୍ୟାୟନ ପାଇଁ ଏକ ଭିନ୍ନ ଦୃଷ୍ଟିକୋଣ, ଏହା ନିଃସନ୍ଦେହ । ଏହା ନାରୀ ସାହିତ୍ୟର ଅନାଲୋଚିତ ପରଂପରା ତଥା ପ୍ରକାରଭେଦ ବିଷୟରେ ସମ୍ୟକ୍ ସମୀକ୍ଷା କରିପାରିଛି ଏହା ବିନା ଦ୍ୱିଧାରେ କୁହାଯାଇପାରେ ।

**ନାୟକ** – କାବ୍ୟ, ଉପନ୍ୟାସ ଓ ନାଟକରେ ବିଷୟବସ୍ତୁ ମୁଖ୍ୟ ଚରିତ୍ର । ବିଶ୍ୱନାଥ କବିରାଜ କହନ୍ତି - ''ଆଲମ୍ବନଂ ନାୟକାଦିସ୍ତ ମାଲମ୍ବ୍ୟ ରସୋଦ୍‌ଗମାତ'' ଅର୍ଥାତ୍ ଯେଉଁ ଚରିତ୍ର ରସୋଦ୍‌ଗମର ଆଲମ୍ବନ ସେ ନାୟକ । ଆଲୋଚନା ଶାସ୍ତ୍ରରେ ୪ ପ୍ରକାର ନାୟକ ଦେଖିବାକୁ ମିଳେ । ଯଥା- (୧) ଧୀରୋଦତ୍ତ, (୨) ଧୀର ଲଳିତ, (୩) ଧୀର ପ୍ରଶାନ୍ତ, (୪) ଧୀରୋଦ୍ଧତ । ନାଟକରେ ଚିତ୍ରିତ ସମସ୍ତ ନାୟକ ନାୟିକାଙ୍କୁ ପ୍ରକୃତି ଦୃଷ୍ଟିରୁ ୩ ଭାଗରେ ବିଭକ୍ତ କରାଯାଇଛି ଯଥା- (୧) ଉତ୍ତମ ପ୍ରକୃତି, ୯୨) ମଧ୍ୟମ ପ୍ରକୃତି, (୩) ଅଧମ ପ୍ରକୃତି । ନାଟକୀୟ କଥାବସ୍ତୁ ପରିକଳ୍ପନାରେ ଯେଉଁ ଚରିତ୍ରକୁ ଯେଉଁ ପ୍ରକୃତି ବୋଲି ଧରାଯାଏ, ତାହାର ସେହି ସ୍ୱଭାବ ସମଗ୍ର ନାଟକରେ ସାବଧାନତା ସହିତ ନିର୍ବାହ କରିବାକୁ ପଡ଼େ । କିନ୍ତୁ ନାୟକର ଚରିତ୍ର ସମଗ୍ର ନାଟକଟିର ସକାରାତ୍ମକ ଓ ନକାରାତ୍ମକ ଭାବାବେଗରେ ସୁନ୍ଦର ସମନ୍ୱୟ ନେଇ ସଂଗଠିତ ହୋଇଥାଏ । ଆରିଷ୍ଟୋଟଲ୍ ନାୟକକୁ ଅସାଧାରଣ ବ୍ୟକ୍ତି, ଚାରିତ୍ରିକ ସ୍ଖଳନ ତଥା ଭାଗ୍ୟର କ୍ରିଡ଼ନକ ହେବ ବୋଲି ମତ ଦେଇଛନ୍ତି । କିନ୍ତୁ ଆଜି ତାହା ଗ୍ରହଣୀୟ ନୁହେଁ ।

**ନାୟିକା** – ଭାରତୀୟ ସାହିତ୍ୟ ଶାସ୍ତ୍ରରେ ନାୟିକାମାନଙ୍କୁ ସ୍ଥୂଳତଃ ତିନି ପ୍ରକାର ବୋଲି କୁହାଯାଇଛି । ଯଥା- ସ୍ୱୀୟା, ପରକୀୟା ଓ ସାମାନ୍ୟା । ସେଥିରୁ ସ୍ୱୀୟା ନାୟିକା ପୁଣି ମୁଗ୍‌ଧା, ମଧ୍ୟା ଓ ପ୍ରଗଳଭା ଭେଦରେ ତିନି ପ୍ରକାର । ନାଟ୍ୟଶାସ୍ତ୍ରରେ ଏମାନଙ୍କ ବେଶଭୂଷା, ସ୍ୱଭାବ, ଚାଲିଚଳଣ, ଅଭିରୁଚି ଓ ଦୃଷ୍ଟିଭଙ୍ଗୀ ବିଶଦ ଆଲୋଚନା କରାଯାଇଛି ।

**ନାସ୍ତି (Nihilism)** – ସାର୍ବଭୌମ ଅବିଶ୍ୱାସରେ ବିଶ୍ୱାସ । ଉପନିଷଦୀୟ ନେତି ନେତି ରୁ ଯେମିତି ଅସ୍ତି ଅସ୍ତି ହୋଇଛି । ଦାର୍ଶନିକ ହେଲେରଙ୍କ ମତରେ ଏହା ଏକ ଅନୁଭୂତି ବିଶେଷ । ଏଥିରେ ବଞ୍ଚିବାର ଅବାରିତ ଆକାଂକ୍ଷା ରହିବ । କେତକ ମାନସିକ ଅବସାଦରୁ 'ନାସ୍ତି'ର ଉତ୍ପନ୍ନ ହୋଇଛି । ସାହିତ୍ୟରେ ନାସ୍ତିର ବିନ୍ୟାସ ଅସ୍ତିମୂଳକ କିଛି ନାହିଁ ।

**ନ୍ୟାୟ ଦର୍ଶନ** – ନ୍ୟାୟ ଦର୍ଶନର ରଚୟିତା ଗୌତମଙ୍କ କାଳ ସମ୍ଭବତଃ ଖ୍ରୀଷ୍ଟପୂର୍ବ ତୃତୀୟ ଶତାବ୍ଦୀର ଶେଷଭାଗ । ମଣିଷ ଜୀବନର କିପରି ତ୍ୟାଗ ଓ ସତ୍ୟର ପ୍ରତିଷ୍ଠା ହୋଇପାରିବ ତାହା ଏହି ଦର୍ଶନର ଲକ୍ଷ୍ୟବୋଲି ଜଣାଯାଏ । ନ୍ୟାୟପୂର୍ଣ୍ଣ ଯୁକ୍ତିଯୁକ୍ତ ଜୀବନ ଯାହା ନିର୍ବାହ କଲେ ଯଥାର୍ଥ ଆନନ୍ଦ ମିଳିପାରିବ ବୋଲି ନ୍ୟାୟ ଦର୍ଶନର ମତ । ନ୍ୟାୟ

ଦର୍ଶନ ପ୍ରଧାନତଃ ଦୁଇଟି ଧାରା ଦେଖିବାକୁ ମିଳେ: ଗୋଟିଏ ଜ୍ଞାନର ଉପାୟ ବା ଏହାର ପ୍ରମାଣ ସଂପର୍କରେ ବକ୍ତବ୍ୟ । ଅନ୍ୟଟି ଜ୍ଞାନ ଓ ବିଗ ସଂପର୍କ ବକ୍ତବ୍ୟ । ଏହାର ୧୬ଟି ସିଦ୍ଧାନ୍ତରେ ବିଭକ୍ତ ହୋଇଥାଏ । ଯଥା - ପ୍ରମାଣ, ପ୍ରମେୟ, ସଂଶୟ, ପ୍ରୟୋଜନ, ଦୃଷ୍ଟାନ୍ତ, ସିଦ୍ଧାନ୍ତ, ଅବପର୍କ, ତର୍କ, ନିର୍ଣ୍ଣୟ, ବାଦ, କଳ୍ପ, ବିତଣ୍ଡା, ଦ୍ୱୈତ୍ୱ, ଛଳ, ଜାତି ଓ ନିଗ୍ରହ ।

**ନେତିବାଚକ ସାମର୍ଥ୍ୟ(*Negative Capability*)** – କୌଣସି କବି ବା ନାଟ୍ୟକାର ନେତିବାଚକ ସାମର୍ଥ୍ୟ ଫଳରେ ସେ ଏକସଂଗରେ ଆନନ୍ଦ ଓ ଦୁଃଖ ସମପରିମାଣରେ ଅନୁଭବ ବା ଉପଭୋଗ ପ୍ରଦାନ କରିବା ଏହାର ଲକ୍ଷଣ ବୋଲି କୁହାଯାଇପାରେ ।

**ନିଓକ୍ଲାସିଜିମ୍** – ସପ୍ତଦଶ ଓ ଅଷ୍ଟାଦଶ ଶତାବ୍ଦୀରେ ୟୁରୋପୀୟ ଦେଶମାନଙ୍କରେ ସାହିତ୍ୟିକ କ୍ଷେତ୍ରରେ ଦେଖାଦେଇଥିବା ଯୁଗକୁ ନିଓକ୍ଲାସିକ୍ ଯୁଗ କୁହାଯାଏ । ସାହିତ୍ୟ କ୍ଷେତ୍ରରେ କ୍ଲାସିକାଲ ସାହିତ୍ୟର ପୁନରାବୃତ୍ତି ହେଉଛି ଏ ଯୁଗର ପ୍ରଧାନ ଲକ୍ଷଣ । ଏ ସାହିତ୍ୟ ପରମ୍ପରା ଉପରେ ଗୁରତ୍ୱ ଦିଏ ଓ ସାହିତ୍ୟ କ୍ଷେତ୍ରରେ ନୂତନ ପ୍ରବର୍ତ୍ତନକୁ ବିରୋଧ କରେ । ସେମାନେ କ୍ଲାସିକାଲ ସାହିତ୍ୟିକ ମାନଙ୍କର ସାହିତ୍ୟ ରଚନା କଲେ । ନିଓକ୍ଲାସିକାଲ ସାହିତ୍ୟରେ କଳାତ୍ମକ ପରାକାଷ୍ଠା କୁ ସର୍ବାଙ୍ଗ ସୁନ୍ଦରକରଣ ଉପରେ ବିଶେଷ ଗୁରୁତ୍ୱ ଦିଆଯାଉଥିଲା । ଏ ସାହିତ୍ୟିକମାନେ ଔଚିତ୍ୟକୁ ସାହିତ୍ୟର ମାନଦଣ୍ଡ ରୂପେ ଧରିନେଇଥିଲେ । ନିଓକ୍ଲାସିକାଲ ସାହିତ୍ୟରେ ଶୃଙ୍ଖଳା, ପାରମ୍ପରିକ ରୀତି, କଳାତ୍ମକ ସର୍ବାଙ୍ଗ ସୁନ୍ଦରକରଣ ର ତୀବ୍ର ଅନୁସରଣ ଫଳରେ ସ୍ୱାଧୀନ ସାହିତ୍ୟିକମାନଙ୍କ ମଧ୍ୟରେ ଯେଉଁ ବିଦ୍ରୋହ ସୃଷ୍ଟିହେଲା ତାହାର ପରିଣତି ହେଲା ରୋମାଣ୍ଟିକ ଯୁଗ ।

**ନିଗମ** – ବେଦ । ଶାକ୍ତତନ୍ତ୍ର କୁ ମଧ ନିଗମ କୁହାଯାଏ । ଶାକ୍ତ ତନ୍ତ୍ର ବକ୍ତା ଓ ଶ୍ରୋତା ଭେଦରେ ଦୁଇ ପ୍ରକାର ଯଥା - ଆଗମ ଓ ନିଗମ । ଯେଉଁଥିରେ ଶକ୍ତି ଉପାସନାଦି ଆଚରଣର ବ୍ୟାଖ୍ୟା ଦେବୀ କରନ୍ତି ଓ ଶିବ ଶୁଣନ୍ତି ସେହି ଗ୍ରନ୍ଥକୁ ନିଗମ କୁହାଯାଏ ଏବଂ ଯେଉଁଥିରେ ଶିବ ବକ୍ତା ଓ ଶିବାନୀ ଶ୍ରୋତା ତାହାକୁ ଆଗମ କୁହାଯାଏ ।

**ନିର୍ଗୁଣ ବ୍ରହ୍ମ** – ଏହି ମହିମା ଦର୍ଶନ ଓ ସାହିତ୍ୟରେ ଉପଲବ୍ଧ । ସଚ୍ଚିଦାନନ୍ଦମୟ ନିର୍ଗୁଣ ନିରହଙ୍କାର ନିରଞ୍ଜନ ସ୍ୱରୂପ ବ୍ରହ୍ମ ହିଁ ମହିମା ଧର୍ମର ପ୍ରଧାନ ଉପାସ୍ୟ । ସାଧୁମାନେ ତାଙ୍କୁ ଅଲେଖସ୍ୱାମୀ, ମହିମା ପ୍ରଭୁ, ଶୂନ୍ୟପ୍ରଭୁ ରୂପରେ ଉପାସନା କରନ୍ତି । ଅନନ୍ତକୋଟି ଦୃଶ୍ୟାଦୃଶ୍ୟ ଜଗତ ସେହି ନିର୍ଗୁଣ ବ୍ରହ୍ମଙ୍କ ମହିମାର ମୂର୍ତ୍ତ । ତାଙ୍କରି ଆଜ୍ଞାରେ ସକଳ ଜୀବ ଆତଯାତ ହେଉଛନ୍ତି । ସେ ସତ୍ୟସ୍ୱରୂପ, ଚିଦାନନ୍ଦମୟ, ମନ ଓ କଳ୍ପନାର ଅଗୋଚର, ସର୍ବୋଚ୍ଚ, ସୀମାତୀତ, ଦେଶକାଳଦ୍ୱାରା ଅପରିଚ୍ଛନ୍ନ, ଅପାଦ ଅଚଳ ସର୍ବଗାମୀ ।

**ନିରୁକ୍ତି** – ନିରୁକ୍ତି ତୃତୀୟ ବେଦାଙ୍ଗ । ଏହାର ପ୍ରୟୋଗ ଶୁଦ୍ଧି ବୈଦିକ ଅଟେ । ନିରୁକ୍ତିରେ ବୈଦିକ ଶବ୍ଦ ବିଷୟରେ ଆଲୋଚନା ହୋଇଛି । ନିରୁକ୍ତିରେ ପାଞ୍ଚଟି ଅଧ୍ୟାୟ ଅଛି । ଯଥା - (୧) ଅଧ୍ୟୟନ, (୨) ଛନ୍ଦ ପ୍ରକରଣ, (୩) ଛନ୍ଦ ବିନିଯୋଗ, (୪) ଉପରଲିଖିତ କର୍ମାନୁକୂଳ, (୫) ଉପଦର୍ଶିତ ଲକ୍ଷଣ ।

**ନିଃସଙ୍ଗତା** – ବିଚ୍ଛିନ୍ନତା ବୋଧ । ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ବ୍ୟକ୍ତିଚେତନାର ଏ ଦିଗଟି ବିକଶିତ ହୋଇଛି । ଏହାର ଅସ୍ତିତ୍ୱବାଦର ମୂଳ ନିର୍ଯ୍ୟାସ ଅତ୍ୟାଧୁନିକ ଜୀବନର ତୀବ୍ର ଅସଙ୍ଗତିବୋଧ, ଜଟିଳତା, ଜ୍ଞାନ ବିସ୍ଫୋରଣ ଜନିତ ବାନବୀୟ ଜ୍ଞାନ ପରିସୀମାର ସୀମିତତା, ନିଃସଙ୍ଗତା ଓ ନୈରାଶ୍ୟବୋଧ ପ୍ରାପ୍ତି ପ୍ରଭୃତି ନାନାବିଧ କାରଣ ମଣିଷ ଭିତରେ ହିଁ ବିଚ୍ଛିନ୍ନତାବୋଧ ସୃଷ୍ଟି କରିଥିଲା । ଅସ୍ତିତ୍ୱବାଦୀମାନେ ବିଚ୍ଛିନ୍ନତା ଉପରେ ଅଧିକ ଗୁରୁତ୍ୱ ଦିଅନ୍ତି । ସେମାନଙ୍କ ମତରେ ସମାଜର ସର୍ବନିମ୍ନ ସତ୍ତା ହେଉଛି ବ୍ୟକ୍ତି 'ମାତ୍ର ସାମାଜିକ ଉନ୍ନତି ଦୃଷ୍ଟିରୁ ବ୍ୟକ୍ତିର ପ୍ରାଧାନ୍ୟ ହ୍ରାସ ପାଉଛି ଓ ବ୍ୟକ୍ତି ସମାଜଠାରୁ ବିଛିନ୍ନ ହୋଇପଡୁଛି ।

**ନୀତିବୋଧ** – ସାହିତ୍ୟରେ ନୀତିବୋଧ କହିଲେ ନୀତିବୋଧ ପାଇଁ ସୃଷ୍ଟ ସାହିତ୍ୟ ଓ ଜଣାଅଜଣାରେ ନୀତିବୋଧର ସ୍ପର୍ଶଥିବା ସାହିତ୍ୟ ସୃଷ୍ଟିକୁ ବୁଝାଏ । ଜୀବନର ସରସ, ସୁନ୍ଦର ସଂଯମ ତଥା ସଂପୂର୍ଣ୍ଣ କରିବାକୁ ହେଲେ ସାହିତ୍ୟରେ ନୀତି ପ୍ରସଙ୍ଗ ଆସିଥାଏ । ତେବେ ସୃଜନଶୀଳ ସ୍ରଷ୍ଟା ନୀତିବାଗୀଶ ନୁହେଁ କିମ୍ବା ଧର୍ମ ପ୍ରଚାରକ ନୁହେଁ । କିନ୍ତୁ ରସାଳ ସାହିତ୍ୟ ସ୍ରଷ୍ଟାଭାବେ ଜାତୀୟ ଚରିତ୍ର, ଜାତୀୟଜୀବନ ଗଠନ ନିମିତ୍ତ ଓ ସଂସ୍କୃତିର ପୁର୍ନମୂଲ୍ୟାୟନ ନିମିତ୍ତ ସାହିତ୍ୟ ମାନବିକ ତଥା ସାର୍ବଜନୀନ ନୀତିର ନିୟାମକ ହୋଇଥାଏ ।

**ନୀତିଶିକ୍ଷାମୂଳକ ନାଟକ** – ଇଂରାଜୀ ସାହିତ୍ୟରେ ମଧ୍ୟଯୁଗରେ ଲିଖିତ ନାଟକ । ଏ ନାଟକର ଚରିତ୍ରମାନେ ଅମୂର୍ତ୍ତ ହେଲେ ମଧ୍ୟ ବ୍ୟକ୍ତିତ୍ୱ ଆରୋପ କରାଯାଉଥିଲା । ଅମୂର୍ତ୍ତ ଚରିତ୍ର ଗୁଡ଼ିକର ଗୁଣ ବା କାର୍ଯ୍ୟ ଅନୁଯାୟୀ ନାମକରଣ କରାଯାଉଥିଲା । ମନୁଷ୍ୟର ଆତ୍ମାପାଇଁ ଭଲ ଓ ମନ୍ଦ (Evil & good persuits) ମଧ୍ୟରେ ଚାଲିଥିବା ଦ୍ୱନ୍ଦ ତଥା ମନୁଷ୍ୟ ମନରେ ଏ ଶକ୍ତିଦ୍ୱୟର ପ୍ରଭାବକୁ କେନ୍ଦ୍ରକରି ମୋରାଲିଟି ନାଟକ ଲେଖାଯାଉଥିଲା । ଏ ଧରଣ ନାଟକରେ ନୈତିକ ତଥା ଶିକ୍ଷାମୂଳକ ତଥ୍ୟମାନ ପରିବେଷଣ କରାଯାଉଥିଲା ।

**ନୈର୍ବ୍ୟକ୍ତିକତା** – କବିର କବିତ୍ୱ ନିରପେକ୍ଷ ସୃଜନ ଚିତ୍ର । ଏଥିରେ ବିଷୟୀ ବଡ଼ ନୁହେଁ, ବଡ଼ ହେଉଛି ବିଷୟ ।

## ପ

**ପଞ୍ଚଅଂଗ** – ସନ୍ଥ ସାହିତ୍ୟରେ ମସ୍ତକ, କର୍ଣ୍ଣ, ଚକ୍ଷୁ, ନାସା, ମୁଖ(ଜିହ୍ୱା) କୁ ପଞ୍ଚଅଂଗ କୁହାଯାଏ ।

**ପଞ୍ଚଆତ୍ମା** – ସନ୍ଥ ସାହିତ୍ୟରେ ତତ୍ତ୍ୱ, ଜ୍ଞାନ, ଜୀବ ଓ ପରମ ଆତ୍ମାକୁ ପଞ୍ଚଆତ୍ମା କୁହାଯାଇଛି ।

**ପଞ୍ଚକର୍ମ ଯୋଗ** – ସନ୍ଥ ସାହିତ୍ୟରେ ସତ୍ୟ, ଶାନ୍ତି, କ୍ଷମା ଓ ଧର୍ମକୁ ପଞ୍ଚକର୍ମଯୋଗ ବୋଲି କୁହାଯାଇଛି ।

**ପଞ୍ଚଗୁରୁ** – ସନ୍ଥ ସାହିତ୍ୟରେ ପିତା, ମାତା, କର୍ଣ୍ଣ, ବିଦ୍ୟା ଓ ତତ୍ତ୍ୱଗୁରୁ ପଞ୍ଚଗୁରୁ ନାମରେ ଖ୍ୟାତ ।

**ପଞ୍ଚଜ୍ଞାନଯୋଗ** – ସନ୍ଥ ସାହିତ୍ୟରେ ଉର୍ମି, ଧୂର୍ମି, ଜ୍ୟୋତି, ଜ୍ୱାଳା ଓ କଳା ପଞ୍ଚଜ୍ଞାନ ଯୋଗ ଭାବେ କଥିତ ।

**ପଞ୍ଚତତ୍ତ୍ୱ** – ସନ୍ଥ ସାହିତ୍ୟରେ ନାମ, ରୂପ, ବିବେକ, ଆଶ୍ରୟ, ବୁଦ୍ଧିକୁ ପଞ୍ଚତତ୍ତ୍ୱ ଭାବରେ ଗୃହୀତ ହୋଇଛି ।

**ପଞ୍ଚ ଦେବତା** – ଓଡ଼ିଶୀ ବୈଷ୍ଣବ ଧର୍ମରେ ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା, ସୁଦର୍ଶନ ଓ ସିଂହାସନ କୁ ପଞ୍ଚଦେବତା ଭାବେ କଥିତ ଅଛି ।

**ପଞ୍ଚବଟ** – ସନ୍ଥ ସାହିତ୍ୟରେ କଳ୍ପବଟ, ଉଦୟବଟ, ଅସ୍ତବଟ, ବାଞ୍ଛାବଟ ଓ ବଂଶୀବଟର ମାହାତ୍ମ୍ୟର ବର୍ଣ୍ଣନା ଅଛି ।

**ପଞ୍ଚବୀଜ** – ସନ୍ଥ ସାହିତ୍ୟରେ ହ୍ଲୀ, ଶ୍ଲୀଂ କ୍ଲୀଂ, ଧ୍ଲୀଂ ଓ ପ୍ଲୀଂ କୁ ପଞ୍ଚବୀଜ ମନ୍ତ୍ର କୁହାଯାଇଛି ।

**ପଞ୍ଚମନ** – ସନ୍ଥ ସାହିତ୍ୟରେ ମନ, ଅମନ, ବିମନ, ସୁମନ ଓ କୁମନକୁ ପଞ୍ଚମନ କୁହାଯାଇଛି।

**ପଞ୍ଚମାତ୍ରା** – ବିନ୍ଦୁ, ଅର୍ଦ୍ଧମାତ୍ରା, ତାରକ, ଦଣ୍ଡକ, କୁଣ୍ଡଳୀ ସନ୍ଥ ସାହିତ୍ୟର ପଞ୍ଚମାତ୍ରା ରୂପେ ବିବେଚିତ ।

**ପଞ୍ଚଯୋଗ** – ଜ୍ଞାନଯୋଗ, ତପଯୋଗ, ସିଦ୍ଧଯୋଗ, କର୍ମଯୋଗ ଓ ଭକ୍ତିଯୋଗ ବିଷୟ ଛତିଶ ଗୁପ୍ତଗୀତାରେ ଉଲ୍ଲେଖ କରାଯାଇଛି ।

**ପଞ୍ଚସଖା** – ଓଡ଼ିଶାରେ ପଞ୍ଚ ମହାପୁରୁଷ ବଳରାମ ଦାସ, ଜଗନ୍ନାଥ ଦାସ, ଅଚ୍ୟୁତାନନ୍ଦ ଦାସ, ଅନନ୍ତ ଦାସ ଓ ଯଶୋବନ୍ତ ଦାସ ପଞ୍ଚସଖା ନାମରେ ଖ୍ୟାତ । ପଞ୍ଚସଖା ମନ୍ତ୍ର, ଯନ୍ତ୍ର, ତନ୍ତ୍ରରେ ପ୍ରବୀଣ ଥିଲେ । ତନ୍ମଧ୍ୟରୁ ଅନେକ ଯୋଗାନ୍ତ, ନାଗାନ୍ତ, ସିଦ୍ଧାନ୍ତ ଓ ବେଦାନ୍ତ ବିଦ୍ୟାରେ ପାରଙ୍ଗମ । ଏମାନେ ପ୍ରତ୍ୟେକ ହେଉଛନ୍ତି ଉଭୟ ସାକାର ଓ

ନିରାକାର ଉପାସକ । ଏମାନେ ଜ୍ଞାନଭକ୍ତି ମିଶା ସାହିତ୍ୟ ସୃଷ୍ଟି କରି ସ୍ୱତନ୍ତ୍ର ଏକ ଯୁଗ ସୃଷ୍ଟି କରିଛନ୍ତି । ସାକାର ଉପାସନାରେ ସେମାନେ ସମସ୍ତେ ଜଗନ୍ନାଥ ଧର୍ମୀ ଅଟନ୍ତି । ସେମାନଙ୍କ ଉପାସନାରେ ନାମ ଭଜନ, ଇଷ୍ଟ ଦେବତା ଓ ଦୀକ୍ଷାରେ ଐକ୍ୟ ରହିଛି କିନ୍ତୁ ଏମାନଙ୍କର ସଂପ୍ରଦାୟ, ମନ୍ତ୍ର, ସମାଧି, ଗୁରୁ ପ୍ରଣାଳୀରେ ସ୍ୱାତନ୍ତ୍ର୍ୟ ଥିଲା । ଏମାନଙ୍କୁ ଏମାନଙ୍କୁ ପଞ୍ଚଶାଖା ମଧ୍ୟ କୁହାଯାଏ ।

ବଳରାମଙ୍କ ମନ୍ତ୍ର ଥିଲା କୃଷ୍ଣମନ୍ତ୍ର, ଜପ ଥିଲା ଅଜପା, ନାମ ଥିଲା ତାରକା । ଜଗନ୍ନାଥଙ୍କ ମନ୍ତ୍ର ଥିଲା ରାଧାମନ୍ତ୍ର, ଜପ ଥିଲା ଅଣାକାର ଓ ହରି ମନ୍ଦିର ଚିତା ତିଳକ ତାଙ୍କ ନାସାର୍ଦ୍ଧରୁ କେଶ ଯାଏ ସୁଶୋଭିତ ହେଉଥିଲା । ଅଚ୍ୟୁତାନନ୍ଦଙ୍କର ମନ୍ତ୍ର ଥିଲା ଶ୍ୟାମମନ୍ତ୍ର, ଜପ ଥିଲା ଅବନା ଓ ସେ ନାସାର୍ଦ୍ଧରେ ତିଳକ ଗ୍ରହଣ କରୁଥିଲେ । ଅନନ୍ତଙ୍କର ମନ୍ତ୍ର ଥିଲା ଗୋପାଳମନ୍ତ୍ର, ଜପ ଥିଲା ଏକାକ୍ଷର ଓ ତିଳକ ଥିଲା ଉର୍ଦ୍ଧ୍ୱ ପୁଣ୍ଡରୀକ । ତେଣୁ ଏମାନଙ୍କୁ ପଞ୍ଚଶାଖା ମଧ୍ୟ କୁହାଯାଏ ।

**ପଞ୍ଚସଖା ଧର୍ମ** – ଚୈତନ୍ୟ ସଂପ୍ରଦାୟ ସହିତ ଚାରି ପ୍ରଧାନ ବୈଷ୍ଣବ ସଂପ୍ରଦାୟର ମତବାଦ ଏକତ୍ରିତ ହୋଇ ଯେଉଁ ଅଭିନବ ଧାର୍ମିକପନ୍ଥୀ ଓଡ଼ିଶାରେ ଖ୍ରୀ ୧୬ଶ ଶତାବ୍ଦୀ ଧର୍ମ ଜଗତରେ ମୁଣ୍ଡ ଟେକିଥିଲା ତାହା ପଞ୍ଚସଖା ଧର୍ମ ବା ଏକକାର ଧର୍ମ ଭାବେ ଅଭିହିତ । ଜଗନ୍ନାଥ ଦାସ, ଅନନ୍ତ ଦାସ, ଯଶୋବନ୍ତ ଦାସ, ବଳରାମ ଦାସ ଓ ଅଚ୍ୟୁତାନନ୍ଦ ଦାସ ଯାହାଙ୍କୁ କି ପଞ୍ଚସଖା କୁହାଯାଏ ସେମାନଙ୍କ ମଧ୍ୟରୁ ଜଗନ୍ନାଥ ବ୍ରାହ୍ମଣ, ଅନନ୍ତ ସୂର୍ଯ୍ୟ, ଯଶୋବନ୍ତ କ୍ଷତ୍ରୀୟ, ବଳରାମ ଦାସ ଶୂଦ୍ର ଓ ଅଚ୍ୟୁତାନନ୍ଦ କରଣ କୁଳରେ ଜାତ ହୋଇଥିଲେ । ଏହି ପ୍ରଧାନ ପଞ୍ଚବର୍ଣ୍ଣ ବା ଜାତି ଏକାକାର ହୋଇଛି ଏହି ପଞ୍ଚସଖା ଧର୍ମରେ ।

ପଞ୍ଚସଖା ତାଙ୍କ ମନରାଜ୍ୟରେ ଥିଲେ ପ୍ରତିମା ପୂଜାର ଘୋର ବିରୋଧୀ ଯଦିଓ ଶ୍ରୀ ଜଗନ୍ନାଥଙ୍କ ଦାରୁମୂର୍ତ୍ତି ଥିଲା ତାଙ୍କ ଉପାସନାର ପ୍ରଧାନ ଉପଚାର । ପ୍ରତିମା ପରିବର୍ତ୍ତେ ଶୂନ୍ୟର ଧ୍ୟାନପାଇଁ ସେମାନେ ସାହିତ୍ୟ ମାଧ୍ୟମରେ ପ୍ରଚାର କରୁଥିଲେ । ସେମାନଙ୍କର ପ୍ରାଣାୟାମ, ହଠଯୋଗ ଓ ଅନ୍ୟାନ୍ୟ ପଦର ମୁଖ୍ୟ ଲକ୍ଷ୍ୟ ଥିଲା ଆତ୍ମସଂଯମ, ଆତ୍ମଶୁଦ୍ଧି, ଆତ୍ମତ୍ୟାଗ ଓ ଆତ୍ମସନ୍ତୋଷର ମହାନ ଆଦର୍ଶ । ବେଦ ବେଦାନ୍ତ ଅଧ୍ୟୟନ ଓ ଅଧ୍ୟାପନାର ସମସ୍ତ ଅଧିକାର ଶୁଦ୍ରର ମଧ୍ୟ ଅଛି ଏହାକୁ ସେ ପ୍ରତିପାଦନ କରାଇଥିଲେ । ଶୂନ୍ୟବାଦୀ ପଞ୍ଚସଖାଙ୍କର ଆରାଧଦେବ ଶୂନ୍ୟ ନିରାକାର ନିରଞ୍ଜନ । ଜଗନ୍ନାଥ ଏହି ନିରଞ୍ଜନ ସ୍ୱରୂପ । ପ୍ରେମଭକ୍ତିର ଉପାସକ ଭାବେ ସେମାନେ କୃଷ୍ଣଙ୍କୁ ନିରଞ୍ଜନ ରୂପରେ କଳ୍ପନା କରି ରାଧା ତାଙ୍କର ଶକ୍ତି ବୋଲି ଭାବୁଥିଲେ । ଜଗନ୍ନାଥ କୃଷ୍ଣ ରାଧାଙ୍କ ବ୍ୟତୀତ ଅନ୍ୟାନ୍ୟ

ଦେବଦେବୀ ମଧ୍ୟ ପଞ୍ଚସଖା ଧର୍ମରେ ସ୍ୱୀକୃତ ହୋଇଛନ୍ତି । ସେମାନଙ୍କର ପ୍ରଚାରିତ ମନ୍ତ୍ରରେ ବିଷ୍ଣୁ, ଶିବ, ଶକ୍ତି, ଗଣପତି, ସୂର୍ଯ୍ୟ ଅଭିନ୍ନ ବୋଲି କଳ୍ପିତ ହୋଇଛନ୍ତି । ତେଣୁ ସେମାନେ ମଧ୍ୟ ଥିଲେ ପଞ୍ଚଦେବତାଙ୍କ ଉପାସକ । ଏହା ବ୍ୟତୀତ ଏହି ଶରୀର ମଧ୍ୟରେ ତେତିଶକୋଟି ଦେବତାଙ୍କର ଅବସ୍ଥିତିକୁ ମଧ୍ୟ ସେ କଳ୍ପନା କରୁଥିଲେ ।

**ପଞ୍ଚସମୀର** – ସନ୍ଥ ଯୋଗ ଶାସ୍ତ୍ରରେ ପଞ୍ଚ ସମୀର କଥା କୁହାଯାଇଛି । ଏଗୁଡ଼ିକ ପ୍ରାଣ, ଅପାନ, ସମାନ, ଉଦାନ ବ୍ୟାନ ରୂପେ ଖ୍ୟାତ ।

**ପଞ୍ଚସନ୍ଧି** – ନାଟକରେ ନିର୍ଦ୍ଦିଷ୍ଟ ଅର୍ଥ ପ୍ରକୃତି ସହିତ ନିର୍ଦ୍ଦିଷ୍ଟ ଅବସ୍ଥାର କଳାତ୍ମକ ସଂଯୋଗକୁ ସନ୍ଧି କୁହାଯାଏ । ଅର୍ଥାତ୍ ନାଟକୀୟ ଇତିବୃତ୍ତାଂଶମାନଙ୍କର ନିଜ ନିଜର ବିଶେଷ ଉଦ୍ଦେଶ୍ୟମାନଙ୍କ ସହିତ ଯେଉଁ ସମ୍ବନ୍ଧ ତାହାକୁ ସନ୍ଧି କୁହାଯାଏ । ପୁଣି ପରସ୍ପର ସମ୍ବନ୍ଧାନ୍ୱିତ୍ ଇତି ବୃତ୍ତାଂଶ ଓ ସେମାନଙ୍କର ଉଦ୍ଦେଶ୍ୟଗୁଡ଼ିକର ପ୍ରାଧାନ୍ୟ ନାଟକୀୟ ଇତିବୃତ୍ତ ଓ ପ୍ରଧାନ ଉଦ୍ଦେଶ୍ୟ ସହିତ ଯେଉଁ ସମ୍ବନ୍ଧ ସ୍ଥାପିତ ହୁଏ, ତାହାର ନାମ ସନ୍ଧି । ଏହା ପଞ୍ଚବିଧ ଯଥା (୧) ମୁଖ, (୨) ପ୍ରତିମୁଖ, (୩) ଗର୍ଭ, (୪) ବିମର୍ଶ, (୫) ନର୍ବହଣ । 'ଆରମ୍ଭ' ତଥା 'ବୀଜ' ର ସଂଯୋଗରେ ମୁଖସନ୍ଧି, 'ଯତ୍ନ' ତଥା 'ବିନ୍ଦୁ'ର ସଂଯୋଗରେ ପ୍ରତିମୁଖ; 'ପ୍ରତ୍ୟାଶା' ଓ 'ପତାକା'ର ସଂଯୋଗରେ 'ଗର୍ଭ' ସନ୍ଧି, ନିୟତାପ୍ତି ତଥା ପ୍ରକରୀ ସଂଯୋଗରେ 'ବିମର୍ଶ' ସନ୍ଧି; ଓ 'ଫଳାଗମ' ତଥା 'କାର୍ଯ୍ୟ' ସଂଯୋଗରେ ନିର୍ବହଣ ସନ୍ଧି ସମ୍ପାଦିତ ହୁଏ ।

**ପଞ୍ଚ ସଂପ୍ରଦାୟ** – ପଞ୍ଚସଖା ଯୁଗରେ ଯେଉଁ ବିଶିଷ୍ଟ ସଂପ୍ରଦାୟ ହେଉଛନ୍ତି ବିଷ୍ଣୁସ୍ୱାମୀ, ରାମାନନ୍ଦ, ଶ୍ୟାମାନନ୍ଦ, ମଧ୍ୱାଚାର୍ଯ୍ୟ ଓ ଅବଧୂତ ।

**ପଞ୍ଚ ସଂହିତା** – ଅଚ୍ୟୁତାନନ୍ଦଙ୍କ ପଞ୍ଚ ସଂହିତା ପ୍ରସିଦ୍ଧ ଧର୍ମଗ୍ରନ୍ଥ ଅଟେ । ସେଗୁଡ଼ିକ ହେଲେ ଅକଳନ୍ତି, ଅନାହତ, ଜ୍ୟୋତି, ଅବାତ, ଛାୟା ।

**ପଞ୍ଚସ୍ୱର** – ଶୂନ୍ୟ ସଂହିତାରେ ଅ, ଆ, ଇ, ଉ, ଓ ଏ କାରକୁ ପଞ୍ଚସ୍ୱର ଭାବେ କୁହାଯାଇଛି ।

**ପଞ୍ଚଶକ୍ତି** – ସରସ୍ୱତୀ, ସାବିତ୍ରୀ, ରମା, ଉମା ଓ ଆଦିଶକ୍ତି ପଞ୍ଚଶକ୍ତି ଭାବେ ସନ୍ଥ ସାହିତ୍ୟରେ ପରିଗଣିତ ହୁଏ ।

**ପତାକା** – ନାଟକୀୟ କଥାକୁ ଅଭିନେତାର ଭୂମିକା ଦୃଷ୍ଟିରୁ ଆଧିକାରିକ ଓ ପ୍ରାସଙ୍ଗିକ ଭେଦରେ ଦୁଇଭାଗରେ ବିଭକ୍ତ କରାଯାଇଛି । ପ୍ରାସଙ୍ଗିକ କଥା ମଧ୍ୟ ଦୁଇ ଭାଗରେ ବିଭକ୍ତ ଯଥା - ପତାକା ଓ ପ୍ରକରୀ । ଯାହା ମୁଖ୍ୟକଥା ତୁଳନାରେ ଛୋଟ ହେଲେ ବି ବହୁଦୂର ବ୍ୟାପୀ ମୁଖ୍ୟକଥା ସହିତ ସମାନ୍ତରାଳ ଗତିରେ ଚାଲିଥାଏ ଏବଂ ଯାହାର ଅବଦାନ ଫଳରେ ମୁଖ୍ୟକଥାର ଗତିରେ ସ୍ୱଚ୍ଛଳତା ସୃଷ୍ଟିହେବା ସଂଗେ ସଂଗେ ସେଥିରେ ନାଟକୀୟତାର କଳାକୁଶଳତା ଫୁଟିଉଠେ, ତାହାର ନାମ ପତାକା ।

**ପତ୍ରିକା** – ସାମୟିକ ପତ୍ର ବା ପୁସ୍ତିକା । ଆଧୁନିକ ସାହିତ୍ୟ କ୍ଷେତ୍ରରେ ସାମୟିକ, ପାକ୍ଷିକ, ମାସିକ, ତ୍ରୈମାସିକ, ବାର୍ଷିକ ପ୍ରଭୃତି ଭିନ୍ନ ଭିନ୍ନ ସମୟକୁ ନେଇ ପତ୍ରିକା ପ୍ରକାଶ ପାଏ । ସଂବାଦ ପତ୍ର ପରେ ପତ୍ରିକା ହିଁ ଗଣ ଜୀବନର ସାହିତ୍ୟ, ସଂଗୀତ ପ୍ରଭୃତିର ରୂପରେଖ ଦେଇଥାଏ ।

**ପଥପ୍ରାନ୍ତ ନାଟକ** – ରାସ୍ତାକଡ଼ର ଛକ ଓ ମୁକ୍ତ ସ୍ଥାନରେ ଅଭିନୀତ ହେଉଥିବା ନାଟକ । ଏହି ନାଟକ ସୁଖାତ୍ମକ ବା ଦୁଃଖାତ୍ମକ ନୁହେଁ କିନ୍ତୁ ମନଛୁଆଁ ହୋଇଥାଏ । ବସ୍ତୁଭାବ ମୁଖ୍ୟତଃ ସାମାଜିକ ଓ ରାଜନୈତିକ ଅବସ୍ଥାର ଅଧୋଗତିକୁ ଦର୍ଶାଇଥାଏ । ଏହା ଗଣମାଧ୍ୟମ ପରି ପ୍ରଚାରସର୍ବସ୍ୱ ତଥା ପ୍ରଭାବଶାଳୀ ହୋଇଥାଏ ।

**ପଟଳ** – ଅଧ୍ୟାୟ ଅର୍ଥରେ 'ପଟଳ' ଗୁଡ଼ିକ ରଚିତ ହୋଇଅଛି । ସନ୍ଥ ସାହିତ୍ୟରେ ଏହା ଆଧ୍ୟାତ୍ମିକ ଗ୍ରନ୍ଥ ଯେଉଁଥିରେ କି, ସିଦ୍ଧ ସାଧକମାନେ ବ୍ରହ୍ମଜ୍ଞାନ ତତ୍ତ୍ୱର ବର୍ଣ୍ଣନା କରିବା ସଂଗେ ସଂଗେ ଭବିଷ୍ୟତ ସମ୍ବନ୍ଧରେ ବକ୍ତବ୍ୟ ପ୍ରକାଶ କରିଥାନ୍ତି ।

**ପଦ** – ଶବ୍ଦ ଓ ଧାତୁ ବିଭକ୍ତି ଯୁକ୍ତ ହେଲେ 'ପଦ' ହୁଅନ୍ତି । ପଦ ପାଞ୍ଚ ପ୍ରକାର । ବିଶେଷ, ସର୍ବନାମ, ବିଶେଷଣ, ଅବ୍ୟୟ, କ୍ରିୟା । ଶବ୍ଦ ବାକ୍ୟରେ ବ୍ୟବହାର ହେଲେ ସେଗୁଡ଼ିକୁ ପଦ କୁହାଯାଏ ।

**ପଦଦୋଷ** – ସାହିତ୍ୟ ଆଲୋଚନା ଶାସ୍ତ୍ରମାନଙ୍କରେ ପଞ୍ଚବିଧ ଦୋଷର ଅବଧାରଣା ରହିଛି । ଏହି ପଞ୍ଚଦୋଷ ହେଉଛି (୧) ପଦଦୋଷ, (୨) ପଦାଂଶ ଦୋଷ, (୩) ବାକ୍ୟଦୋଷ, (୪) ଅର୍ଥଦୋଷ ଓ (୫) ରସଦୋଷ । ସାଧାରଣତଃ ଶ୍ରୁତିକଟୁ, ଚ୍ୟୁତସଂସ୍କାର, ଅପ୍ରଯୁକ୍ତତା, ନିହତାର୍ଥକତା, ପତ୍ତତ୍ପ୍ରକର୍ଷତତା, ଅଶ୍ଳୀଳତା, ଗ୍ରାମ୍ୟତା, ସନ୍ଦିଗଧତା, ଅପ୍ରତୀତତା, ନେୟାର୍ଥ, ଅସମର୍ଥତତା, କ୍ଲିଷ୍ଟତା, ନିରର୍ଥକତା ଇତ୍ୟାଦିକୁ ପଦ, ପଦାଂଶ ଦୋଷ ଭାବେ ଗ୍ରହଣ କରାଯାଇଥାଏ ।

**ପଦ୍ୟ** – ରଚନାତ୍ମକ କଳାର ବୈଶିଷ୍ଟ୍ୟ ଦୃଷ୍ଟିରୁ ସମଗ୍ର ସାହିତ୍ୟକୁ ପଦ୍ୟ କିମ୍ବା ଗଦ୍ୟ ଏହିପରି ଦୁଇଟି ବିଶେଷ ବିଭାଗରେ ବିଭକ୍ତ କରାଯାଇଥାଏ । ଛନ୍ଦବଦ୍ଧ ରଚନାକୁ ପଦ୍ୟ କୁହାଯାଏ । ଶବ୍ଦ ଅଳଙ୍କାରଯୁକ୍ତ ଯତିପାତ ମେଳକ ହେଲେ ପଦ୍ୟ ପର୍ଯ୍ୟାୟବାଚୀ ହୁଏ ଯାହାକି ସ୍ୱର, ତାଳ, ଲୟ ନେଇ ଗାନ ଯୋଗ୍ୟ ହୋଇପାରିଥାଏ ।

**ପଦାବଳୀ** – ଓଡ଼ିଆ ସନ୍ଥ ସାହିତ୍ୟରେ ବିଭିନ୍ନ ଗୋସ୍ୱାମୀ ପଦାବଳୀ ଲେଖି ଯାଇଛନ୍ତି । ଏହା ରାଧାକୃଷ୍ଣ ପ୍ରେମଭାବମୂଳକ ଗୀତିକା ବା ଗୀତାବଳୀ ଅଟେ । ଓଡ଼ିଆ ବ୍ରଜବୋଲି ଗୀତିକା ଆମ ପ୍ରାଚୀନ ପଦାବଳୀ ସାହିତ୍ୟର ଅନ୍ତର୍ଭୁକ୍ତ ।

**ପଦାନ୍ୱୟ** – ବାକ୍ୟରେ ବ୍ୟବହୃତ ପଦର ପରିଚୟ ଦେଇ ଯାହା ସହିତ ଅନ୍ୟପଦର ସମ୍ବନ୍ଧ ପ୍ରଦର୍ଶନର ନାମ 'ପଦନ୍ୱୟ' ବା ପଦ ପରିଚୟ ।

**ପରମ ଘର** – ବ୍ରହ୍ମ ତାଲୁକାକୁ ପରମ ଘର କୁହାଯାଏ । ତେଣୁ ରାଧା ରସାମୃତ ଗୀତାରେ ଅଛି -

''ବ୍ରହ୍ମ ତାଲୁକା ବୋଲି ଯା ପରମର ଘର
ସେହିଠାରୁ ସୁଧାରସ ପଡ଼େ ଝର ଝର ।''

**ପରମ ପଦ** – ବ୍ରହ୍ମ, ପରଂବ୍ରହ୍ମ ବା ପରମାତ୍ମାଙ୍କୁ ବୁଝାଏ ।

''ଅଣାକ୍ଷର ପରମପଦ ବା ବ୍ରହ୍ମଙ୍କର ସ୍ଥାନ
ଅଣାକ୍ଷର ବୋଲି ଯେହୁ ପରମପଦଟି ସେହୁ ।

**ପରଂପରିତ ରୂପକ** – ଯେଉଁଠାରେ ଉପମେୟରେ ଉପମାନର ଅଭେଦ ଆରୋପ ଅନ୍ୟ ଗୋଟିଏ ଆରୋପ ପ୍ରତି କାରଣ ହୋଇଥାଏ, ସେଠାରେ ପରମ୍ପରିତ ରୂପକ ଅଳଙ୍କାର ହୁଏ ।

ଉଦାହରଣ - ଆଶା-ପାରିଜାତ ଫୁଟିବ ହୃଦ ନନ୍ଦନ-କାନନେ । (କୁସୁମାଞ୍ଜଳୀ)

**ପରିକର** – ଯେ କୌଣସି ରଚନାରେ ବ୍ୟବହୃତ ତାତ୍ପର୍ଯ୍ୟପୂର୍ଣ୍ଣ ବିଶେଷଣ ପ୍ରକୃତ ଅର୍ଥ ପ୍ରକାଶରେ ସହାୟକ ହେଲେ ପରିକର ଅଳଙ୍କାର ହୁଏ ।

**ପରିସଂଖ୍ୟା ଅଳଙ୍କାର** – ସାଧାରଣତଃ ପୃଷ୍ଟବସ୍ତୁର ସାମ୍ଭାବ୍ୟ ଉତରମାନଙ୍କ ମଧ୍ୟରୁ ଗୋଟିକୁ ସ୍ୱୀକାର କରି ଅନ୍ୟଟି ନିଷେଧ କରାଗଲେ ପରିସଂଖ୍ୟା ଅଳଙ୍କାର ହୁଏ ।

କର ର ଭୂଷଣ, ବନ୍ଧୁର ସେବା, ନୁହେଁ ମାଣିକ ବଳା
କଣ୍ଠଭୂଷଣ ସଖା ଗୁଣମାନ, ନୁହେଁ ମୁକ୍ତାର ମାଳା ।''

**ପରିବୃତ୍ତି ଅଳଙ୍କାର** – ଭଙ୍ଗୀବଶତଃ ଦୁଇଟି ବସ୍ତୁର ଆଦାନ ପ୍ରଦାନଜନିତ ବିନିମୟକୁ ପରିବୃତ୍ତ ଅଳଙ୍କାର କୁହାଯାଏ ।

''କଟାକ୍ଷ ନିକ୍ଷେପେ ହରିଣାକ୍ଷୀ ସଖୀ
ହରିଲା ହୃତ ମୋହର
ଦେବୀ ମୁଁ ହୃଦୟ   କରିଲି ଗ୍ରହଣ
ବିଷମ ମଦନ ଜ୍ୱର''।

**ପରିଶିଷ୍ଟ** – ଏହା ଇଂରାଜୀ appendix ର ପ୍ରତିଶବ୍ଦ ଭାବେ ଗ୍ରହଣ କରାଯାଇଛି । ଗବେଷଣା ପ୍ରସ୍ତୁତିରେ କୌଣସି ତଥ୍ୟର ବିସ୍ତୃତ ବ୍ୟାଖ୍ୟା, ଦୀର୍ଘତର ଉଦ୍ଧୃତି ମୂଳପାଠରେ ଉଲ୍ଲିଖିତ କୌଣସି ଦଲିଲ ବା ତ'ର ଅଂଶ ବିଶେଷ, ଆଇନର ମୂଳପାଠ, ବ୍ୟବହୃତ

ପ୍ରଶ୍ନପତ୍ର । ସାକ୍ଷାତକାର, ସାରଣୀ, ଗବେଷଣାପତ୍ର ସହିତ ଗଭୀର ସଂପର୍କ ରହିଥିଲେ, ସେଗୁଡ଼ିକ ମୂଳପାଠ ସହିତ ସନ୍ନିବେଶିତ କରାନଯାଇ ପାଠକ ବା ପରୀକ୍ଷକଙ୍କ ଜ୍ଞାତବ୍ୟାର୍ଥେ ପରିଶିଷ୍ଟ ଶୀର୍ଷକରେ ସଂଯୋଜକ କରାଯାଇଥାଏ ।

**ପଲ୍ଲିକବି** – କବି ନନ୍ଦକିଶୋର ବଳଙ୍କୁ ପଲ୍ଲିକବି ଆଖ୍ୟା ଦିଆଯାଇଛି । ୧୮୭୫ ମସିହା ଡିସେମ୍ବର ୨୨ ତାରିଖରେ କଟକ ଜିଲ୍ଲା ମାହାଙ୍ଗା ଥାନା ଅନ୍ତର୍ଗତ କୁସୁପୁର ଗ୍ରାମରେ ତାଙ୍କର ଜନ୍ମ ହୋଇଥିଲା । ପିତାଙ୍କ ନାମ ଭଜନାନନ୍ଦ ଜେନା, ମାତାଙ୍କ ନାମ ହିରଣମୟୀ ଦେବୀ । ନନ୍ଦକିଶୋରଙ୍କ ପିଲାଦିନର ନାମ ଥିଲା ରସାନନ୍ଦ ଜେନା । ନନ୍ଦକିଶୋରଙ୍କ କବିତାରେ ମୁଖ୍ୟତଃ ପଲ୍ଲୀଚିତ୍ର ପ୍ରତିଫଳିତ ହୋଇଥିବାରୁ ଏବଂ ସରଳ ଗାଉଁଲୀ ଶବ୍ଦ ପ୍ରୟୋଗରେ କବିତା ତାଙ୍କର ସରସ ସୁନ୍ଦର ହୋଇଥିବାରୁ ତାଙ୍କୁ ପଲ୍ଲୀକବି ଭାବରେ ଅଭିହିତ କରିଥାନ୍ତି । ନନ୍ଦକିଶୋରଙ୍କ ଚରନା ମଧ୍ୟରେ ପଲ୍ଲୀଚିତ୍ର, ନିର୍ଝରିଣୀ, ଚାରୁଚିତ୍ର, ନିର୍ମାଲ୍ୟ, କୃଷ୍ଣାକୁମାରୀ, ସୀତାବନବାସ, ଜନ୍ମଭୂମି, କନକଲତା ପ୍ରଧାନ ।

**ପଲ୍ଲୀ ଚେତନା** – ପଲ୍ଲୀ ମାନେ ସଭ୍ୟତାର ଆଦିମ ରୂପ ଅତଏବ ପଲ୍ଲୀ ଚେତନା ମାନେ ଅସ୍ତିତ୍ୱର ଆଦିମ ସତ୍ତା । ଆଭିଧାନିକ ଅର୍ଥରେ 'ପଲ୍ଲୀ' କୃଷିଜୀବିମାନଙ୍କର ବାସଭୂମି କୁ ବୁଝାଏ । କିନ୍ତୁ ପଲ୍ଲୀଚେତନା କହିଲେ ପଲ୍ଲୀ ପ୍ରକୃତିର ନୈସର୍ଗିକ ସୌନ୍ଦର୍ଯ୍ୟ ଠାରୁ ଆରମ୍ଭ କରି ପଲ୍ଲୀବାସୀଙ୍କର ସରଳ, ନିଷ୍କପଟ, ଅକୃତ୍ରିମ ଜୀବନଧାରା ଏବଂ ସର୍ବୋପରି ତାର ସାମାଜିକ, ସାଂସ୍କୃତିକ ଜୀବନଚର୍ଯ୍ୟାର ସୂକ୍ଷ୍ମାତିସୂକ୍ଷ୍ମ ମନସ୍ତାତ୍ତ୍ୱିକ ଭାବାବେଗକୁ ବୁଝାଏ । ଓଡ଼ିଆ ସାହିତ୍ୟରେ ଗ୍ରାମ୍ୟ ପ୍ରକୃତି ଓ ପରିବେଶ ଗ୍ରାମ୍ୟଜୀବନ ଚିତ୍ର, ଲୋକକଥା ଓ କିମ୍ବଦନ୍ତୀ ସମୂହ ପଲ୍ଲୀଚେତନାର ଅନ୍ତର୍ଭୁକ୍ତ । ଏହି ପଲ୍ଲୀଚେତନା ଓଡ଼ିଆ ସାହିତ୍ୟରେ ଏକ ଆବେଗମୟ ଉପାଦାନ ଯାହାର ଅଯ ଆରମ୍ଭ ରାଧାନାଥ ଯୁଗରୁ ଆରମ୍ଭ ହୋଇଛି ।

**ପର୍ଯ୍ୟାୟୋକ୍ତି** – କଥନ ଭଙ୍ଗୀରେ ବୈଚିତ୍ର୍ୟ ସମ୍ପାଦନଦ୍ୱାରା ବ୍ୟଙ୍ଗାର୍ଥ ବାଚ୍ୟାର୍ଥ ଭାବରେ ଅଭିବ୍ୟକ୍ତ ହେଲେ ପର୍ଯ୍ୟାୟୋକ୍ତି ଅଳଙ୍କାର ହୁଏ । ଉଦାହରଣ –

"ଆନ ବୋଲେ ମୁହିଁ ପାଇକର ନାହା
ବିପଦେ ରାଜାର ଆଶ୍ରା ମୋର ବାହା
ଏହି ହସ୍ତେ କେତେ ମସ୍ତକ ଗଡ଼ାଇ
କେତେ କେତେ ଗ୍ରାମ ଦେଇଛି ପୋଡାଇ" । (ଦରବାର)

**ପହଳି** – ଲୋକଗୀତ ଅନ୍ତର୍ଗତ ମନରଞ୍ଜନ ତଥା ବୁଦ୍ଧି ପରୀକ୍ଷାର ଖେଳ ହିଁ ପହଳି । ଇଂରାଜ ଶବ୍ଦ 'ରିଡ଼ିଲ୍'ର ସମପର୍ଯ୍ୟାୟବାଚୀ ଶବ୍ଦ ଅଟେ । ଓଡ଼ିଆ ଭାଷାରେ ଏହାକୁ ଧନ୍ଦା ବା ନାଁଦିଆ କୁହାଯାଉଥିଲା ବେଳେ ତାମିଲ୍ ଭାଷାରେ 'ବିଦୁକଥାଇ', ମରାଠି ଭାଷାରେ 'ଉଖାନା', ବଂଗାଳୀ ଭାଷାରେ 'ପ୍ରହେଳିକା ବା ଧନ୍ଦା', ଗୁଜୁରାଟୀ ଭାଷାରେ

ଲକ୍ଷ୍ୟ । ପାଠକ, ଦର୍ଶକ ବା ଶ୍ରୋତା ମନରେ ସ୍ରଷ୍ଟା ବା ଲେଖକର ମନରେ ପ୍ରତିକ୍ରିୟାର ପ୍ରଭାବ ପକାଇବା ଏ ଆନ୍ଦୋଳନର ଅନ୍ୟତମ ଆଭିମୁଖ୍ୟ । ସାହିତ୍ୟ କ୍ଷେତ୍ରରେ ଏ ଆନ୍ଦୋଳନ ବ୍ୟାପକ ଅର୍ଥରେ ଇମେଜିମ ଚିନ୍ତାପ୍ରବାହ ଉପନ୍ୟାସର ଶୈଳୀକୁ ବୁଝାଇଥାଏ ।

**ପ୍ରତୀୟମାନୋତ୍‌ପ୍ରେକ୍ଷା** – ଉପମେୟରେ ଉପମାନର ସମ୍ଭାବନା ପରିପ୍ରେକ୍ଷୀରେ ବାଚକ ଶବ୍ଦ ବ୍ୟବହୃତ ହୋଇନଥିଲେ, ପ୍ରତୀୟମାନୋତ୍‌ପ୍ରେକ୍ଷା ଅଳଙ୍କାର ହୁଏ । ଉଦାହରଣ-

ବାଳୀ ଢାଳିଲା ବେଳେ ନେତ୍ର
ଜୀବନ ହୋଇଲା ଆରତ
ଖେଳି ଆସୁଛି କାଳ ଅହି
ଏ ମୋତେ ଦଂଶୀବାର ପାଇଁ । (ଲାବଣ୍ୟବତୀ)

**ପ୍ରତୀପ ଅଳଙ୍କାର** – ପ୍ରକୃତ ଉପମାନକୁ ଉପମେୟ ରୂପେ କଳ୍ପନା କରାଗଲେ ଅଥବା ଉପମାନର ନିଷ୍ଫଳତା ପ୍ରତିପାଦିତ ହେଲେ ପ୍ରତୀପ ଅଳଙ୍କାର ହୁଏ ।

ନୀଳିମାରେ ବାମା ଚାରୁ କେଶ ପାଶ
ତୋ ନୀଳ ବୀଚିକା କଲା ଉପହାସ । (ଚିଲିକା)

**ପ୍ରତିବସ୍ତୁପମା ଅଳଙ୍କାର** – ଦୁଇଟି ବାକ୍ୟ ମଧ୍ୟରେ ସ୍ୱରୂପଗତ ପାର୍ଥକ୍ୟ ଥିଲେ ମଧ୍ୟ ଅର୍ଥଗତ ସାଦୃଶ୍ୟ ସୂଚିତ ହେଉଥିଲେ ଏବଂ ଗୋଟିଏ ସାଧାରଣଗତ ପୃଥକ ଭାବରେ ନିର୍ଦ୍ଦିଷ୍ଟ ହୋଇଥିଲେ ପ୍ରତିବସ୍ତୁପମା ଅଳଙ୍କାର ହୁଏ । ଉଦାହରଣ -

କିନ୍ତୁ ରୂପ ଥିଲେ ପ୍ରଚ୍ଛନ୍ନେ କେବେ ରସିକ ଛାଡ଼େ
ମଧୁଥିଲେ ପୁଷ୍ପେ ଯତନେ ଖୋଜି ମଧୁପ କାଢ଼େ । (ଚନ୍ଦ୍ରଭାଗା)

**ପ୍ରବନ୍ଧ** – ଗଦ୍ୟର ଏକ ଅଙ୍ଗ । ଇଂରାଜୀ ଏସେ Essay ର ପ୍ରତିଶବ୍ଦ । ପ୍ର - 'ବନ୍ଧ - ଅ' ରୁ ଗୃହୀତ ହୋଇ ରଚନା ହୋଇଛି । ସଂସ୍କୃତ ସାହିତ୍ୟ ଶାସ୍ତ୍ରରେ କାବ୍ୟ ଅର୍ଥରେ ପ୍ରବନ୍ଧ କୁହାଯାଏ । କିନ୍ତୁ ସାଂସ୍କୃତିକ ସାହିତ୍ୟ ତତ୍ତ୍ୱରେ ପ୍ରବନ୍ଧ ମନନଶୀଳ ଚିନ୍ତା ପ୍ରସୂତ ରଚନାକୁ ବୁଝାଏ । ପ୍ରବନ୍ଧକୁ ଦୁଇଟି ଭାଗରେ ବିଭକ୍ତ କରାଯାଏ । ବସ୍ତୁନିଷ୍ଠ ପ୍ରବନ୍ଧ ଓ ବ୍ୟକ୍ତିନିଷ୍ଠ ପ୍ରବନ୍ଧ । ପ୍ରବନ୍ଧର ରଚନା ଶୈଳୀ ମଧ୍ୟ ଭିନ୍ନ ଭିନ୍ନ । ଏହା ଦୁଇ ଶ୍ରେଣୀରେ ବିଭକ୍ତ କରାଯାଏ - କୃତ୍ରିମ ବିଶୁଦ୍ଧ ଶୈଳୀ ଓ ସରଳ କଥିତ ଶୈଳୀ ।

**ପ୍ରବନ୍ଧ ବକ୍ରତା** – ସମ୍ପୂର୍ଣ୍ଣ ଦୃଶ୍ୟକାବ୍ୟ ଓ ଶ୍ରାବ୍ୟକାବ୍ୟକୁ ପ୍ରବନ୍ଧ ଭାବରେ ଗ୍ରହଣ କରାଯାଏ । ପ୍ରବନ୍ଧ ବକ୍ରତାର ସାମଗ୍ରିକ ସୌନ୍ଦର୍ଯ୍ୟ, କବିସୃଷ୍ଟିର ସାର୍ଥକତା, ପ୍ରବନ୍ଧବକ୍ରତାର ସୁନିପୁଣ ଯୋଜନା ଉପରେ ନିର୍ଭର କରେ । ବକ୍ରୋକ୍ତି ବିଚାର ପରମ୍ପରାରେ ପ୍ରବନ୍ଧ ବକ୍ରତାକୁ ଅଙ୍ଗୀ ଓ ଅନ୍ୟାନ୍ୟ ବକ୍ରତାକୁ ଅଙ୍ଗ ଭାବରେ ବିବେଚନା କରଯାଏ ।

'ଭରାଡ', ରାଜସ୍ଥାନୀ ଭାଷାରେ 'ପହଲି' ଓ ସଂସ୍କୃତ ଭାଷାରେ 'ଆହନକ' ବୋଲି କହିଥାନ୍ତି । ଢଗ ଭଳି ପହଲିରେ ମଧ୍ୟ ମଜ୍ଜା କଥା କୁହାଯାଇଥାଏ ଏବଂ ହାସ୍ୟବ୍ୟଙ୍ଗ ଦ୍ୱାରା ଆଘାତ କରିବାର ସୂତ୍ରଟି ଥାଏ । ଢଗ ଗୋଟିଏ ବିଷୟ ବା ଚିନ୍ତାଧାରାକୁ ସ୍ପଷ୍ଟ ଭାବରେ ରୂପକ ମାଧ୍ୟମରେ ପ୍ରକାଶ କଲାବେଳେ ପହଲି ଶ୍ରୋତାର ବୌଦ୍ଧିକ ଜ୍ଞାନର ପରୀକ୍ଷା ନିମନ୍ତେ ରୂପକ ମାଧ୍ୟମରେ ବକ୍ରୋକ୍ତି ଦ୍ୱାରା ଏକ ବ୍ୟକ୍ତି ବା ବସ୍ତୁର ବର୍ଣ୍ଣନା କରିଥାନ୍ତି । ଆରିଷ୍ଟୋଟଲ୍‌ଙ୍କ ଭାଷାରେ *"A riddle is a metaphorical description of a fact in an impossible combination of words"* ଅର୍ଥାତ୍ ପହଲି ଗୋଟିଏ ବସ୍ତୁ ସହିତ ଅନ୍ୟ ଗୋଟିଏ ସମ୍ପୂର୍ଣ୍ଣ ଭିନ୍ନ ବସ୍ତୁ ସହିତ ତୁଳନା କରାଯାଏ ବୋଲି ଆର୍ଥରଟେଲର୍ କହିଥାନ୍ତି । *Robert A Georges & Allan Duolide* କହନ୍ତି *"A riddle is a traditional verbal expression which contains one or more descriptive elements, a pair of which may be in opposition the referent of the element to be guessed"* ଅର୍ଥାତ୍ ପହଲି ଏକ ପାରମ୍ପରିକ ମୌଖିକ ଭାବପ୍ରକାଶର ଆଧାର ଯେଉଁଥିରେ ଏକ ବା ତତୋଧିକ ବର୍ଣ୍ଣନାତ୍ମକ ଅଂଗ ଥାଏ ଏବଂ ପ୍ରତ୍ୟେକ ଯୋଡ଼ା ମଧ୍ୟରେ ଗୋଟିଏ ଅନ୍ୟର ବିରୋଧଭାବ ପ୍ରକଟ କରୁଥାଏ । ଏଣୁ ଉତ୍ତରଦାତା ଉତ୍ତରଟିକୁ ଅନୁମାନ କରି ବ୍ୟକ୍ତ କରେ । ପହଲିର ବ୍ୟବହାରକୁ ଦୃଷ୍ଟିରେ ରଖି ଗବେଷକମାନେ ବର୍ଗୀକରଣ କରିଛନ୍ତି (୧) କର୍ମ ପହଲି *(Work riddle)* (୨) ମୃତ୍ୟୁ ପହଲି *(death riddle)* (୩) ଗଳ୍ପ ସଂଯୁକ୍ତ ପହଲି *(riddle story)* (୪) ସମସ୍ୟା (୫) ପ୍ରହେଳିକା (୬) ପ୍ରଶ୍ନଶୂନ୍ୟ ପହଲି ।

**ପ୍ରକରଣ** – ପ୍ରାଚୀନ ସାହିତ୍ୟ ତତ୍ତ୍ୱରେ ରୂପକର ଅନ୍ତର୍ଭୁକ୍ତ ଏକ ରୂପ । ଏଥିରେ କଳ୍ପନାପ୍ରସୂତ କଥାବସ୍ତୁ, ପଞ୍ଚସନ୍ଧି, ଧୀରପ୍ରଶାନ୍ତ ନାୟକ, କୁଳବତୀ ଅଥବା ବେଶ୍ୟା ନାୟିକା, ଶୃଙ୍ଗାରରସ, କୌଶକୀବୃତ୍ତ, ପାଞ୍ଚରୁ ଦଶ ଅଙ୍କ ପର୍ଯ୍ୟନ୍ତ ଯୋଜନା କରାଯାଏ । ଅମାତ୍ୟ, ବିପ୍ର, ବଣିକମାନଙ୍କ ମଧ୍ୟରୁ ନାୟକ ନିର୍ବାଚିତ ହୁଏ ।

**ପ୍ରକରୀ** – ଏହା ନାଟକର ପ୍ରାସଙ୍ଗିକ କଥାର ଅନ୍ୟ ଗୋଟିଏ ବିଭାଗ । ଯେଉଁ କ୍ଷୁଦ୍ରକଥା କୌଣସି ଗୋଟିଏ ବିଶେଷ ଅବସରରେ ଆବିର୍ଭୂତ ହେବା ସଙ୍ଗେ ସଙ୍ଗେ ମୁଖ୍ୟ କଥାବସ୍ତୁ ପରିପୁଷ୍ଟକରି ସମାପ୍ତ ହୋଇଯାଏ, ତାହାକୁ ପ୍ରକରୀ କୁହାଯାଏ ।

**ପ୍ରକରଣ ବକ୍ରତା** – ପ୍ରବନ୍ଧ(ସାହିତ୍ୟ)ର ଯେକୌଣସି ଗୋଟିଏ ନିର୍ଦ୍ଦିଷ୍ଟ ବର୍ଣ୍ଣ୍ୟ ବିଷୟକୁ ପ୍ରକରଣ କୁହାଯାଏ । ଏହିପରି ବହୁ ପ୍ରାକରଣର ନିର୍ଦ୍ଦିଷ୍ଟ ଅବଦାନ ଓ ସମାହାରରେ ପ୍ରବନ୍ଧ ର ସ୍ୱରୂପ ବିକାଶିତ ହୁଏ । ଏହି ପ୍ରକରଣ ପରିକଳ୍ପନାଗତ ବୈଶିଷ୍ଟ୍ୟ ଓ ସୃଷ୍ଟିସୌନ୍ଦର୍ଯ୍ୟ ର ବିଚାର ପ୍ରକରଣ ବକ୍ରତାର ପରିସରଭୁକ୍ତ ।

**ପ୍ରକୃତି ଚେତନା** – ମନୁଷ୍ୟର ଦୃଶ୍ୟମାନ ବର୍ହିଜଗତ ଓ ଅନୁଭବ ଯୋଗ୍ୟ ଜଡ଼ବସ୍ତୁ, ବୃକ୍ଷଲତା, ଜୀବଜନ୍ତୁ, କୀଟପତଙ୍ଗ, ସମୁଦ୍ର, ଆକାଶ ଇତ୍ୟାଦିକୁ ପ୍ରକୃତି କୁହାଯାଇଥାଏ । ଏହି ପ୍ରକୃତି ହିଁ କବି ପ୍ରେରଣାର ଉତ୍ସ ଏବଂ କବିର ଭାବନା ସହିତ ଅଙ୍ଗାଅଙ୍ଗୀ ଭାବେ ଜଡ଼ିତ । ଓଡ଼ିଆ ସାହିତ୍ୟର ପ୍ରାରମ୍ଭରେ ପ୍ରକୃତି ବର୍ଣ୍ଣନା ବିବରଣାତ୍ମକ ଥିଲା କିନ୍ତୁ ପରେ ପରେ ପ୍ରକୃତିର ଆତ୍ମସୌନ୍ଦର୍ଯ୍ୟର ସ୍ୱାତନ୍ତ୍ୟ ପ୍ରକଟିତ ହେଲା । ପ୍ରକୃତି ହେଲା ମଣିଷର ସୁଖ ଦୁଃଖର ସାଥି ଏବଂ ମାନବିକ ଚରିତ୍ରରେ ବିମଣ୍ଡିତ ।

**ପ୍ରକୃତିବାଦ** – ଊନବିଂଶ ଶତାବ୍ଦୀରେ ଦେଖାଦେଇଥିବା ମୁଖ୍ୟ ସାହିତ୍ୟିକ ଆନ୍ଦୋଳନ । ଐତିହାସିକ ବିଶ୍ଳେଷଣରୁ ଜଣାଯାଏ ଯେ ବଲଜାକ୍ ଏ ଆନ୍ଦୋଳନର ସୂତ୍ରପାତ କରିଥିଲେ ଓ ଫରାସୀ ଔପନ୍ୟାସିକ ଏମିଲଜୋଲା ଏ ଆନ୍ଦୋଳନର ଅନ୍ୟତମ ପ୍ରବର୍ତ୍ତକ ଥିଲେ । ସାହିତ୍ୟ କ୍ଷେତ୍ରରେ ବାସ୍ତବ ଚିତ୍ରର ପରିବେଷଣ ଥିଲା ଏ ଆନ୍ଦୋଳନର ଆଭିମୁଖ୍ୟ । ବାସ୍ତବବାଦ ଆନ୍ଦୋଳନ କ୍ଷେତ୍ରରେ ବାହ୍ୟ ବସ୍ତୁର ପ୍ରାଞ୍ଜଳ ଚିତ୍ରଣ ଉପରେ ଗୁରୁତ୍ୱ ଦିଆଯାଉଥିଲାବେଳେ ପ୍ରକୃତିବାଦ ଆନ୍ଦୋଳନକାରୀମାନେ ବାହ୍ୟ ଚାପର ଅଙ୍କନ ସଂଗେ ସଂଗେ ଚରିତ୍ରର ମାନସିକ ଅବସ୍ଥା, ତାର ପରିବର୍ତ୍ତନ ଓ ଅଭିବୃଦ୍ଧିର ଏକ ବାସ୍ତବ ଚିତ୍ରଣ ପାଇଁ ଗୁରୁତ୍ୱ ଆରୋପ କରିଥିଲେ । ସେମାନେ ଚରିତ୍ରଗୁଡ଼ିକୁ ବିଜ୍ଞାନଗାରରେ ପରୀକ୍ଷା କରିବା ଭଳି ପରୀକ୍ଷା କରୁଥିଲେ । ଏ ଅନ୍ଦୋଳନ ପଛରେ ଥିଲା ଏକ ଦାର୍ଶନିକତା - ''ମନୁଷ୍ୟ ପ୍ରକୃତିରୁ ସୃଷ୍ଟି, ତାର ଆତ୍ମା ବୋଲି କିଛି ନାହିଁ । ସେ ପଶୁ ଓ ପକ୍ଷୀମାନଙ୍କଠାରୁ ଏକ ପ୍ରକାର ଉନ୍ନତ ଜନ୍ତୁ ମାତ୍ର ।'' ପ୍ରକୃତିବାଦୀମାନେ ଏ ତଥ୍ୟକୁ ଆଗରେ ରଖି ମନୁଷ୍ୟ ଉପରେ ତାର ସମାଜ ତଥା ଅର୍ଥନୈତିକ ପ୍ରଭାବକୁ ଅନୁଧ୍ୟାନ କରିଥିଲେ ।

**ପ୍ରକୃତି ବିପର୍ଯ୍ୟୟ** – କାବ୍ୟ ଓ ନାଟକରେ ବର୍ଣ୍ଣିତ ପାତ୍ର ଓ ପାତ୍ରୀମାନଙ୍କୁ 'ପ୍ରକୃତି' କୁହାଯାଏ । ବିଭିନ୍ନ ଚରିତ୍ରପାଇଁ ଉଦ୍ଦିଷ୍ଟ ସଂଳାପ, ବେଶଭୂଷା, କ୍ରିୟାକଳାପ, ବୁଦ୍ଧିବୃତ୍ତି ଓ ଦୃଷ୍ଟିଭଙ୍ଗୀ ସେଇ ସେଇ ଚରିତ୍ରର ଅନୁକୂଳ ହେବାଉଚିତ । ଏଥିରେ ବ୍ୟତିକ୍ରମ ଘଟିଲେ 'ପ୍ରକୃତିବିପର୍ଯ୍ୟୟ' ନାମକ ରସଦୋଷ ହୁଏ । ସଂସ୍କୃତ ନାଟକମାନଙ୍କରେ ପ୍ରକୃତି ତିନି ଭାଗରେ ବିଭକ୍ତ କରାଯାଇଛି । (୧) ଦିବ୍ୟ-ସ୍ୱର୍ଗୀୟ, ଦେବତା ଓ ଅପସରା ଆଦି, (୨) ଅଦିବ୍ୟ ପୃଥ୍ୱୀବାସ ଓ (୩) ଦିବ୍ୟ ଅଦିବ୍ୟ- ଧରଣର ଜୀବ ହେଲେ ମଧ ଯେଉଁମାନେ ସ୍ୱର୍ଲୋକସଂଚାରୀ ଅଥବା ସ୍ୱର୍ଗୀୟ ମହିମାର ଅଧିକାରୀ ।

**ପ୍ରକୃତି ବିପର୍ଯ୍ୟୟ ଦୋଷ** – କାବ୍ୟ ଓ ନାଟକରେ ବର୍ଣ୍ଣିତ ପାତ୍ର ଓ ପାତ୍ରୀମାନଙ୍କୁ 'ପ୍ରକୃତି' କୁହାଯାଏ । ବିଭିନ୍ନ ଚରିତ୍ରପାଇଁ ଉଦିଷ୍ଟ ସଂଳାପ, ବେଶଭୂଷା, କ୍ରିୟାକଳାପ, ବୁଦ୍ଧିବୃତ୍ତି ଓ ଦୃଷ୍ଟିଭଙ୍ଗୀ ସେହି ସେହି ଚରିତ୍ରର ଅନୁକୂଳ ହେବା ଉଚିତ । ଏ କ୍ଷେତ୍ରରେ ଲୋକ

ବ୍ୟବହାରକୁ ଦୃଷ୍ଟି ଆଗରେ ରଖି ସେହି ଚରିତ୍ରଗୁଡ଼ିକୁ ସ୍ୱାଭାବିକ ରୀତିରେ ଜୀବନଧର୍ମୀ କରି ଗଢ଼ିତୋଳିବା ଉଚିତ । ଏହାର ବ୍ୟତିକ୍ରମ ଘଟିଲେ ପ୍ରକୃତି ବିପର୍ଯ୍ୟୟ ନାମକ ରସଦୋଷ ହୁଏ ।

**ପ୍ରତ୍ୟୟ** – ବ୍ୟାକରଣର ଏକ ନିୟମକୁ ବୁଝାଏ । ଧାତୁ ସହିତ ଇଲ, ଇଥିଲ, ଇଅଛି, ଇବ ଇତ୍ୟାଦି ଯାହାସବୁ ଯୋଗ କରଯାଏ ସେହିସବୁ କୁ ପ୍ରତ୍ୟୟ ବୋଲାଯାଏ ।

**ପ୍ରତିଭା** – ଅସାଧାରଣ ଧୀ ଶକ୍ତି । ଯେଉଁ ଶକ୍ତିଦ୍ୱାରା ଦର୍ଶନମାତ୍ରେ ବସ୍ତୁବିଶେଷର ଜ୍ଞାନ ଜନ୍ମେ ତାହା ହେଉଛି ବୁଦ୍ଧି ଏବଂ ଯେଉଁ ଶକ୍ତିଦ୍ୱାରା ବସ୍ତୁ ବିଶେଷର ତ୍ରିକାଳଗତ ଜ୍ଞାନ ଜନ୍ମେ ତାହା ହେଉଛି ପ୍ରଜ୍ଞା । ପୁଣି ନୂଆ ନୂଆ ଭାବ ଉଦ୍ରେକ କରୁଥିବା ପ୍ରଜ୍ଞା ହିଁ ପ୍ରତିଭା । ହେମଚନ୍ଦ୍ର ପ୍ରତିଭା ଦୁଇ ପ୍ରକାର ବୋଲି କହିଛନ୍ତି ଯଥା – ସହଜାତ ଓ ଔପାଧିକ୍ୟ । ଦାର୍ଶନିକ କାଣ୍ଟ ମଧ ପ୍ରତିଭାକୁ ସୃଜନଶୀଳ ସହଜାତ ଶକ୍ତି ଓ ସହଜାତ ମାନସିକ କ୍ଷମତା ଭାବେ ବୁଝାଇଛନ୍ତି ।

**ପ୍ରତୀକ**(*Symbol*) – ଯାହା ପ୍ରତିତୀ ଜନ୍ମାଏ, ତାହା ପ୍ରତୀକ । ଆଧୁନିକ ସାହିତ୍ୟରେ ଏହା ଏକ ବଳିଷ୍ଠ ଅଂଗ । ସାଧାରଣ ଶବ୍ଦରେ ଯାହା ସୀମିତ, ପ୍ରତୀକରେ ତାହା ସଂପ୍ରସାରିତ । ସାଧାରର ଶବ୍ଦରେ ଯାହା ସ୍ୱାଭାବିକ, ପ୍ରତୀକରେ ତାହ ବିଶୋଧିତ ଏବଂ ବ୍ୟାପକ । ଆଜିର କବି ପ୍ରତୀକର ମାୟା । ସାହିତ୍ୟରେ 'ପ୍ରତୀକ'ର ବ୍ୟବହାର 'ରୂପକ' ଭଳି କିନ୍ତୁ ଉପମା, ରୂପକ ଆଦି ସସୀମତାକୁ ଅତିକ୍ରମ କରି ଏକ ଅସୀମ ସମ୍ଭାବନାମୟ ପରିସର ଭିତରେ ଭାବର ଚମତ୍କାରିତା ସୃଷ୍ଟିକରେ । କବିତା ମାତ୍ରେ ହିଁ ପ୍ରତୀକାତ୍ମକ ଉପଲବ୍ଧି ।

**ପ୍ରତୀକବାଦ**(*Symbolism*) – ପ୍ରତୀକବାଦୀ ଦର୍ଶନର ମୂଳ ତଥ୍ୟ ହେଲା ଯେ ଇନ୍ଦ୍ରିୟଗ୍ରାହ୍ୟ ଓ ସ୍ଥୂଳଜଗତ ସତ୍ୟ ନୁହେଁ । ଏହା କେବଳ ଚିରନ୍ତନ ସତ୍ୟର ଏକ ଛାୟାମାତ୍ର । ପ୍ରତୀକବାଦୀ ଲେଖକମାନେ ବାସ୍ତବବାଦ ଓ ସ୍ୱଭାବବାଦ ଶୈଳୀର ବିରୋଧକଲେ । ସେମାନଙ୍କ ମତରେ ଚିରନ୍ତନ ସତ୍ୟର ଆଭାସ ହିଁ କେବଳ କଳାରେ ଦିଆଯାଇପାରେ । ସେମାନଙ୍କ ପ୍ରତୀକ ସବୁ ଅନେକ ସମୟରେ ଅତ୍ୟନ୍ତ ଦୁର୍ବୋଧ । ପ୍ରତୀକବାଦୀମାନେ କଳାର ସାମାଜିକ ଓ ନୈତିକ ମୂଲ୍ୟକୁ ଅସ୍ୱୀକାର କରିଥିଲେ । ସେମାନେ କଳାର ସୌନ୍ଦର୍ଯ୍ୟ ଓ କଳାପାଇଁ କଳାର ଚର୍ଚ୍ଚାକୁ ଗୁରୁତ୍ୱ ଦେଇଥିଲେ । ଶବ୍ଦ ଧ୍ୱନିର ମଧୁରତା ସହିତ କୁରୁଚିର ସ୍ୱୀକାର, ରହସ୍ୟବାଦ ଓ ଅଶ୍ଳୀଳତା ମଧ ସ୍ଥାନ ପାଇଥିଲା । ନାଟକ କ୍ଷେତ୍ରରେ ବାହ୍ୟ ସଂଘର୍ଷ ଓ ଘଟଣାବଳୀ ଅପେକ୍ଷା ଅନ୍ତର୍ଦ୍ୱନ୍ଦ ଉପରେ ଗୁରୁତ୍ୱ ଦିଆଯାଇଥିଲା ।

**ପ୍ରତୀତିବାଦ** – ସଂଗୀତ, ସାହିତ୍ୟ ଓ କଳା କ୍ଷେତ୍ରରେ ଦେଖାଦେଇଥିବା ଏକ ଆନ୍ଦୋଳନ । ଏକ ମୂର୍ତ୍ତିମାନ ବସ୍ତୁ ବା ପୃଥିବୀର ସଂପୂର୍ଣ୍ଣ ଆତ୍ମନିଷ୍ଠ ବିଶ୍ଳେଷଣ ହେଉଛି ଏ ଆନ୍ଦୋଳନର

**ପ୍ରବଚନ** – ଉତ୍କୃଷ୍ଟ ବଚନ । ସମସ୍ତ ଉତ୍କୃଷ୍ଟ ବଚନ ପ୍ରବଚନ ହୋଇପାରେ ନାହିଁ କିନ୍ତୁ ସମସ୍ତ ପ୍ରବଚନ ଉତ୍କୃଷ୍ଟ ବଚନ ହୋଇଥାଏ । ସାଂସାରିକ ଜୀବନଜନିତ ଅଭିଜ୍ଞତାରୁ ସୃଷ୍ଟ ବଚନ ଓ ଆପ୍ତ ବଚନ ପ୍ରବଚନ ରୂପେ ଗୃହୀତ ହୋଇଥାଏ ।

**ପ୍ରହସନ (Farce)** – ଲଘୁ କଳ୍ପନାଶ୍ରୟୀ ହାସ୍ୟକୌତୁକ ରଙ୍ଗ-ରସ ପୂର୍ଣ୍ଣ କ୍ଷୁଦ୍ର ନାଟକ ହହିଁ ପ୍ରହସନ । ସମାଜରୁ ଦୁର୍ନୀତିକୁ ରହସ୍ୟଜନକ ଭାବରେ ସଂଶୋଧିତ କରେ ।

**ପ୍ରସିଦ୍ଧିତ୍ୟାଗ ଦୋଷ** – ଏହା ବାକ୍ୟଦୋଷର ଅନ୍ତର୍ଗତ । କାବ୍ୟ କବିତାରେ କେତେକ ପ୍ରସିଦ୍ଧ କଥା ବର୍ଣ୍ଣନା କରିବାପାଇଁ କେତେକ ନିର୍ଦ୍ଦିଷ୍ଟ ସରଣୀ ଯୁଗେ ଯୁଗେ କବିମାନଙ୍କ ଦ୍ୱାରା ଅନୁସୃତ ହୋଇଆସୁଛି । ତାହାକୁ 'କବି ସମୟ ପ୍ରସିଦ୍ଧି' କୁହାଯାଏ । ସେହି ନିୟମର ବିରୁଦ୍ଧାଚରଣ କଲେ ପ୍ରସିଦ୍ଧିତ୍ୟାଗ ଦୋଷ ହୁଏ ।

**ପ୍ରହ୍ଲାଦ ନାଟକ** – ପ୍ରଭୁ ନୃସିଂହ ଓଡ଼ିଶାର ଆଦି ଦେବତା । ଏହି ନୃସିଂହ ମହାପ୍ରଭୁଙ୍କ ଆବିର୍ଭାବର କାହାଣୀ ପ୍ରହ୍ଲାଦ ନାଟକର ବିଷୟବସ୍ତୁ । ମର୍ଦ୍ଦଳ, ଝାଞ୍ଜ ବ୍ୟତୀତ ବାଦ୍ୟ ସହାୟତାରେ ଏହି ନାଟକ ପରିବେଷଣ ହୋଇଥାଏ । ଏହି ପ୍ରହ୍ଲାଦ ନାଟକରେ ବୀର, ଭୟାନକ, କରୁଣ, ଶାନ୍ତ ଆଦି ରସ ସଂଗୀତମାଧ୍ୟମରେ ଖୁବ୍ ରସାଣିତ ହୋ଼ଇଥାଏ । ଦର୍ଶକମାନଙ୍କ ମନୋରଞ୍ଜନ ପାଇଁ ନାଟକ ମଝିରେ କେଳାକେଳୁଣୀ, ସାପୁଆ କେଳା ଆଦି ନୃତ୍ୟ ଅନୁଷ୍ଠିତ ହୁଏ ।

**ପ୍ଲଟ**– ସାହିତ୍ୟ କୃତିକୁ ଗତି ବା ପ୍ଲଟ ନିୟନ୍ତ୍ରଣ କରେ । ପ୍ଲଟ୍ ହେଉଛି କାହାଣୀ ଅନ୍ତର୍ଗତ ଧାରାବାହିକତା ଥିବା ବା ପ୍ରାସଙ୍ଗିକତା ଥିବା ଘଟଣାବଳୀ । ଆରିଷ୍ଟୋଟଲଙ୍କ ମତରେ ପ୍ଲଟ ହେଉଛି ଆଦି, ମଧ୍ୟ, ଅନ୍ତ ସମନ୍ୱିତ ନାଟ୍ୟବସ୍ତୁ । କାବ୍ୟକୃତିରେ ପ୍ଲଟ ଗତି଼କୁ ନିୟନ୍ତ୍ରଣ କରେ ଅର୍ଥାତ୍ ଚରିତ୍ରର କାର୍ଯ୍ୟକଳାପ, ଘଟଣା, ପରିସ୍ଥିତି । ପରିବେଶ, ମାନସିକ କ୍ରିୟା ଓ ସେଥିରୁ ପ୍ରକାଶପାଉଥିବା କାର୍ଯ୍ୟ ପ୍ରଣାଳୀକୁ ବୁଝାଇଥାଏ ।

**ପାଣ୍ଡୁଲିପି** – ଅଭିଲେଖ ଗୁଡ଼ିକୁ ବାଦ୍ ଦେଲେ ଯାହା ତାଳପତ୍ର, ଭୁର୍ଜପତ୍ର ଆଦିରେ ଲେଖାଗଲା ତାହାକୁ ପାଣ୍ଡୁଲିପି କୁହାଗଲା । ପାଣ୍ଡୁଲିପିର ମୂଳ ଅର୍ଥ 'ଲେଖ' ଆଦିର ପ୍ରଥମ ରୂପ । କିନ୍ତୁ ଆଜି ସମସ୍ତ ପ୍ରକାର ହସ୍ତ ଲିଖିତ ପାଠ ସାମଗ୍ରୀକୁ ପାଣ୍ଡୁଲିପି କୁହାଯାଉଛି । 'ପାଣ୍ଡୁଲିପି'ର ଇଂରାଜୀ ପ୍ରତିଶବ୍ଦ manuscript କୁ ଗ୍ରହଣ କରାଯାଏ । ଏହା ଲାଟିନ୍ manuscript ଶବ୍ଦରୁ ଉତ୍ପନ୍ନ । ଯାହାର ଅର୍ଥ ହେଉଛି 'ହସ୍ତଲେଖ'। In archeology a manuscript is any early writing on stone, metal, wood, clay liner, book and leaves of trees and prepared skins of animals such as goats, sheep and calves. (The American People's Encyclopaedia- P.175) । ସଂପ୍ରତି ପାଣ୍ଡୁଲିପି ତାଳପତ୍ର ପୋଥିରୁ ଆରମ୍ଭ

ହୋଇ କାଗଜ ପର୍ଯ୍ୟନ୍ତ ବ୍ୟାପ୍ତ । ମୂଳଲେଖାଠାରୁ ଆରମ୍ଭ କରି ନକଲ କରାଯାଇଥିବା ସମସ୍ତ ଅନୁଲିପି ବା ପ୍ରତିଲିପି ପର୍ଯ୍ୟନ୍ତ ବିସ୍ତୃତ ତଥା ସମସ୍ତ ହସ୍ତଲିଖିତ ପୁସ୍ତକକୁ ପାଣ୍ଡୁଲିପି ଅର୍ଥରେ ଗ୍ରହଣ କରାଯାଉଛି ।

**ପାଦଟୀକା** – ଗବେଷଣାରେ ଗବେଷକଙ୍କ ଦ୍ୱାରା ବ୍ୟବହୃତ ବିଭିନ୍ନ ଉତ୍ସ ତଥା ପ୍ରତ୍ୟକ୍ଷ ଓ ପରୋକ୍ଷ ଭାବରେ ବ୍ୟବହୃତ ଉଦ୍ଧୃତି; ସୂଚନା ଗୁଡ଼ିକର ତଥ୍ୟ ଭିତ୍ତିକ ସୂଚନାକୁ ପାଦଟୀକା କୁହାଯାଏ । ଏହି ପାଦଟୀକାକୁ ଇଂରାଜୀରେ foot note କୁହାଯାଏ । ପାଟୀକାର ଆବଶ୍ୟକତା ସଂପର୍କରେ କୁହାଯାଏ "It is used to validate a point, statement or argument. In the interest of scholar, honesty, the source or authority should be acknowledged through the use of foot note". ଏହି ଟୀକା ବା ଟୀପ୍ପଣୀ ଦେବାର ବିଧି ପୃଷ୍ଠାର ନିମ୍ନଦେଶରେ ବା ପାଦ ଦେଶରେ ଦେବା ନିର୍ଦ୍ଦିଷ୍ଟ ଥିବାରୁ ଏହାକୁ ପାଦଟୀକା କୁହାଯାଏ । ଏହି ପାଦଟୀକା ପରିଚ୍ଛେଦର ଶେଷରେ ଏବଂ ଯେଉଁ ପୃଷ୍ଠାରେ ଉଦ୍ଧୃତି ରହିଚି କରାଯାଇଥାଏ; ସେହି ପୃଷ୍ଠାର ଠିକ୍ ଉଦ୍ଧୃତି ସ୍ଥାନ ନିକଟରେ ଦେବାର ମଧ୍ୟ ବିଧି ରହିଛି ।

**ପାଲା** – 'ପାଲା' ଶବ୍ଦ ସଂସ୍କୃତ ପର୍ଯ୍ୟାୟରୁ ଆନୀତ । ଏହାର ଅର୍ଥ ହେଉଛି ପାଳି । ପାଲାରେ ମୁଖ୍ୟ ଗାୟକ ପ୍ରଥମେ ଗାଆନ୍ତି ଏବଂ ପରେ ଅନ୍ୟ ସହଯୋଗୀ ବା ପାଳିଆମାନେ ପାଳି ଧରି ଗୀତର ପୁନରାବୃତ୍ତି କରନ୍ତି । ଏହି ପାଲା ଦୁଇ ଭାଗରେ ବିଭକ୍ତ ଯଥା - (୧) ବସା ବା ବୈଠକୀ ପାଲା ଓ ଅନ୍ୟଟି ଠିଆ ପାଲା । ପାଞ୍ଚଜଣଙ୍କୁ ନେଇ ପାଲାର ସୃଷ୍ଟି । ପାଲାର ମୁଖ୍ୟ ଗାହାଣ ବା ଗାୟକ ଏବଂ ଗାୟକଙ୍କୁ ସହଯୋଗ କରୁଥିବା ଶ୍ରୀ ପାଳିଆ ଅଟେ । ଏମାନଙ୍କ ମଧ୍ୟରୁ ଜଣେ ବାଦକ ଥାଆନ୍ତି । ବୈଠକୀ ପାଲାରେ ସତ୍ୟପୀରଙ୍କୁ ସ୍ଥାପନା କରି କଦଳୀ, ଶିରିଣୀ ଭୋଗ କରାଯାଏ ଏବଂ ଠିଆ ପାଲାରେ ସମାନ ପୂଜାକର୍ମ ଥିଲେ ବି ଏଥିରେ ସ୍ୱରତାଳବଦ୍ଧ ସଂଗୀତ, ବୌଦ୍ଧିକ ଆଲୋଚନା ତଥା ବିଭିନ୍ନ କାବ୍ୟର ତୁଳନାତ୍ମକ ବର୍ଣ୍ଣନା କରାଯାଇଥାଏ । ଅନୁମାନ କରାଯାଏ ଯେ ବାଲେଶ୍ୱର ଜିଲ୍ଲାର କବିକର୍ଣ୍ଣ ପାଲାର ପ୍ରଥମ ରଚୟିତା ଯେ କି ହିନ୍ଦୁ ଓ ମୁସଲମାନ ଧର୍ମର ସମନ୍ୱୟ ସ୍ଥାପନ ପାଇଁ ଏ ଅଭିନବ ସାଂସ୍କୃତିକ କୃତି କୁ ଜନ୍ମ ଦେଇଥିଲେ । ପାଲା ଗୁଡ଼ିକ ମଧ୍ୟରେ ସତ୍ୟପୀର ପାଲା, ଷୋଳ ପାଲା, ଭ୍ରମର ବର ପାଲା ଇତ୍ୟାଦି ପ୍ରଧାନ ।

**ପ୍ରାନ୍ତାନୁପ୍ରାସ** – ପାଦ ବା ପାଦର ଶେଷରେ ଅବସ୍ଥିତ ବ୍ୟଞ୍ଜନବର୍ଣ୍ଣ ତାହାର ପୂର୍ବବର୍ତ୍ତୀ କିମ୍ବା ପରବର୍ତ୍ତୀ ସ୍ୱର ସହିତ ଏକାଧିବାର ଆବୃତ୍ତିହେଲେ ଅନ୍ତାନୁପ୍ରାସ ବା ପ୍ରାନ୍ତାନୁପ୍ରାସ ହୁଏ ।

ଉଦାହରଣ - ନବ ବିଧାତା ମଦନ ହୋଇଲା
ନବ ଯୌବନ ସୃଷ୍ଟି ଭିଆଇଲା । (କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ)

**ପ୍ରାନ୍ତଯମକ** – ପଦରେ ଶେଷରେ ଯମକ ରହିଲେ ଅନ୍ତ୍ୟଯମକ ବା ପ୍ରାନ୍ତଯମକ ହୁଏ ।

ଉଦାହରଣ- ସ୍ନାନସମୟେ ମୋ ପୟରେ
ଦୟାମୟୀ । ନପେଲିବୁ ତାଙ୍କୁ ପୟରେ ।
(ତପସ୍ୱିନୀ)

**ପିଣ୍ଡ ବ୍ରହ୍ମାଣ୍ଡ** – ପିଣ୍ଡ ବା ଶରୀର ଭିତରେ ବିଶ୍ୱର ଅବସ୍ଥିତି । ଏହି ତତ୍ତ୍ୱ ଓଡ଼ିଆ ଜ୍ଞାନମିଶା ଭକ୍ତି ସାହିତ୍ୟ ତଥା ନାଥ ସାହିତ୍ୟରେ ପରିଦୃଷ୍ଟ ହୁଏ । ରାଜଯୋଗ ଓ ହଠଯୋଗ ସାଧନାରେ ପିଣ୍ଡ ବ୍ରହ୍ମାଣ୍ଡ ଏକ ଆଦର୍ଶ ରୂପରେ ଗୃହୀତ ହୋଇଥିଲା । ସାଧନା କ୍ଷେତ୍ରରେ ଇଡ଼ା, ପିଙ୍ଗଳା, ସୁଷୁମ୍ନା ନାଡ଼ୀରେ ଶୃଙ୍ଖଳାର ସହିତ ବାୟୁ ସଂଚାଳନ କରିବା ଓ ତାହାଦ୍ୱାରା ଧ୍ୟାନରେ ସିଦ୍ଧି ଲାଭ କରିବା । ପିଣ୍ଡ ମଧ୍ୟରେ ବ୍ରହ୍ମାଣ୍ଡର ଉପଲବ୍ଧି ଏହାଦ୍ୱାରା ସମ୍ଭବ ହୋଇଥାଏ । ସାଂଖ୍ୟ ଦର୍ଶନ ମତରେ ଶରୀର କ୍ଷିତ୍, ଅପ୍, ତେଜ, ମରୁତ ଓ ବ୍ୟୋମ - ଏହି ପଞ୍ଚ ମହାଭୂତରୁ ସୃଷ୍ଟି । ପୃଥିବୀ ପିଣ୍ଡ ରୂପରେ, ତେଜ ଭସ୍ମ ରୂପରେ, ଭୂତ ବାୟୁ ରୂପରେ ଓ ଆକାଶ ଶୂନ୍ୟ ରୂପରେ ସ୍ଥିତ ବୋଲି କଥିତ ହୋଇଛି ।

ନାଥାଚାର୍ଯ୍ୟ ମାନଙ୍କ ମତରେ ଯୋଗୀ ଶୂନ୍ୟସମାଧିରେ ବସିଲାବେଳେ ସେ ନିଜ ଶରୀର ମଧ୍ୟରେ ଅନନ୍ତ କୋଟି ବ୍ରହ୍ମାଣ୍ଡର ସତ୍ତା ଉପଲବ୍ଧି କରେ । ଯେଉଁ ଯୋଗୀ ନିଜ ଶରୀରରେ ଚରାଚର ବିଶ୍ୱକୁ ଅନୁଭବ କରେ ସେ ହିଁ ପ୍ରକୃତ ପିଣ୍ଡ ତତ୍ତ୍ୱଦର୍ଶୀ । ଗୋରକ୍ଷ ନାଥଙ୍କ ମତରେ "ପିଣ୍ଡ ମଧ୍ୟେ ଚରାଚରୌ ଯୋଜନାଦି ସ ଯୋଗୀ ପିଣ୍ଡସମ୍ପୂର୍ତ୍ତି ଭୁବତି ।"

**ପ୍ରି-ରଫେଲାଇଟ୍ ଆନ୍ଦୋଳନ** – ଊନବିଂଶ ଶତାବ୍ଦୀରେ ଦଳେ ଲେଖକ ଓ ଚିତ୍ରଶିଳ୍ପୀ ଏକ ନିର୍ଦ୍ଦିଷ୍ଟ ଆଭିମୁଖ୍ୟ ନେଇ ଉଭୟ ସାହିତ୍ୟ ଓ ଚିତ୍ର କ୍ଷେତ୍ରରେ ପରୀକ୍ଷା ନିରୀକ୍ଷା ଚଳାଇଥିଲେ । ପ୍ରଥମେ ଚିତ୍ରଶିଳ୍ପୀମାନେ ନିଜକୁ ପ୍ରି - ରଫେଲାଇଟ୍ ବୋଲି ଘୋଷଣା କରିଥିଲେ । ସେମାନେ ମନେକରୁଥିଲେ ଯେ ଜଣେ ଚିତ୍ରଶିଳ୍ପୀ ଯାହା ଦେଖୁଛି ତାହା ନିଜ ଚିତ୍ରରେ ଅବିକଳଭାବେ ଚିତ୍ରଣ କରିବା ଉଚିତ । କଳାକ୍ଷେତ୍ରରେ କୌଣସି ନୀତି ବା ନିୟମ କଳାକାର ଉପରେ ଲଦି ଦିଆଯିବା ଅନୁଚିତ ବୋଲି ଏମାନଙ୍କର ମତ ଥିଲା । ପ୍ରକୃତିକୁ ମନୁଷ୍ୟ ଯେଉଁଭଳି ଅନୁଭବ କରୁଛି, ଅନୁରୂପ ଭାବେ ତାର ଚିତ୍ରଣ ହେବା ବିଧେୟ । ଏମାନେ କଳାଜଗତକୁ ଏକ ମୂଲ୍ୟବାନ ଅବଦାନ ଦେଇ ଯାଇଛନ୍ତି । ସେମାନେ କହୁଥିଲେ ସାହିତ୍ୟିକମାନଙ୍କର କର୍ତ୍ତବ୍ୟ ସାମାଜିକ ସମସ୍ୟାର ସମାଧାନ ବା କୌଣସି ଉପଦେଶ ପ୍ରଦାନ ନୁହେଁ । ଏମାନେ ବିପୁଳ ସୌନ୍ଦର୍ଯ୍ୟର ଅନୁରାଗୀ ଥିଲେ ।

ଏ ଆନ୍ଦୋଳନର ବିଶିଷ୍ଟ ଗୁଣ ଗୁଡ଼ିକ ହେଲା (୧) ପ୍ରାଚୀନ ଦୃଷ୍ଟିଭଙ୍ଗୀ (୨) କଳା, କଳାପାଇଁ ଆଭିମୁଖ୍ୟ (୩) ଦୃଶ୍ୟମାନ ବସ୍ତୁର ପ୍ରାଞ୍ଜଳ ଉପସ୍ଥାପନା (୪) ଧ୍ୱନି ଓ ବ୍ୟକ୍ତଗତ ଦୈହିକ ଅନୁଭୂତି ଉପରେ ଗୁରୁତ୍ୱପ୍ରଦାନ ।

**ପୁନଃଦୀପ୍ତି ଦୋଷ** – ଏହା ରସଦୋଷର ଅନ୍ତର୍ଭୁକ୍ତ । ସରଳ କାବ୍ୟ ପରିକଳ୍ପନାରେ ଉପଯୁକ୍ତ ସମୟରେ ଥରେମାତ୍ର ମୁଖ୍ୟରସର ସମ୍ପୂର୍ଣ୍ଣ ଦୀପ୍ତି ହେବା ଆବଶ୍ୟକ ହୋଇଥାଏ । କିନ୍ତୁ ସୁସମଞ୍ଜସ ପରିକଳ୍ପନାର ଅଭାବରେ ଯଦି ଅଂଗୀରସ ବାରମ୍ବାର ବିକ୍ଷିପ୍ତ ଭାବରେ ଉଦ୍ଦୀପିତ ହୁଏ, ତେବେ ରସାନୁଭୂତିରେ ତୀବ୍ରତାର ଅଭାବ ହେତୁ ଏଠାରେ ପୁନଃ ପୁନଃ ଦୀପ୍ତି ନାମକ ରସଦୋଷ ହୁଏ ।

**ପୁନରୁକ୍ତତାଦୋଷ** – ଯେକୌଣସି ବାକ୍ୟ ମଧ୍ୟରେ ଥରେ ପ୍ରକାଶିତ ଅର୍ଥକୁ ଆଉଥରେ ଅନ୍ୟଶବ୍ଦ ମାଧ୍ୟମରେ ପ୍ରକାଶ କରାଗଲେ କଥିତ ଅର୍ଥର ପୁନରୁକ୍ତି ହେଉଥିବାରୁ ପୁନରୁକ୍ତତା ଦୋଷ ହୁଏ । ଉଦାହରଣ –

ଗହନ କାନନ ବନରେ ଘୋର ବରଷା କାଳ ।

ଗହନ, କାନନ, ବନ ପ୍ରାୟ ସମାନାର୍ଥ ବିଶିଷ୍ଟ ପ୍ରୟୋଗରୁ ପୁନରୁକ୍ତତା ଦୋଷ ରହିଚି ।

**ପୁନରୁକ୍ତବଦାଭାସ** – ଯେଉଁଠାରେ ଏକାର୍ଥବୋଧକ ଭିନ୍ନଭିନ୍ନାକୃତି ବିଶିଷ୍ଟ ଶବ୍ଦମାନଙ୍କର ଅର୍ଥ ପୁନରୁକ୍ତ ହେଲାପରି ଜଣାପଡ଼େ, କିନ୍ତୁ ବାସ୍ତବରେ ପୁନରୁକ୍ତ ହୋଇନଥାଏ, ସେଠାରେ ପୁନରୁକ୍ତବଦାଭାସ ଅଳଙ୍କାର ହୁଏ । ଉଦାହରଣ –

ପତି କାନ୍ତପ୍ରିୟ ବଚନକୁ କର୍ଣ୍ଣେ ଶୁଣି
କୋପମାନ ନାଶ କଲା ରାମା ଶିରୋମଣି । (ପ୍ରେମସୁଧାନିଧି)

**ପୁରାଣ** – ପୁରାଣ ଶବ୍ଦର ବାଖ୍ୟା ''ପୁରାନବଂ ଭବତି'' ପ୍ରତିପାଦିତ ହୋଇଥାଏ । ଅର୍ଥାତ୍ ପୁରା-ପ୍ରାଚୀନ କାଳର ସଂଘଠିତ ବା ଜାତ । ପ୍ରାଚୀନ କାଳରେ ପ୍ରସିଦ୍ଧ ବ୍ୟକ୍ତି, ସାମାଜ, ଧର୍ମ ଓ ଦେବତାଙ୍କ ଜନ୍ମ, କ୍ରିୟାକଳାପ ଆଦି ଅବଲମ୍ବନରେ ରଚିତ ଗ୍ରନ୍ଥ । ପୁରାଣର ରଚନାର ଲକ୍ଷଣ ହେଉଛି ଏଥିରେ ସର୍ଗ, ପ୍ରତିସର୍ଗ, ବଂଶ, ମନ୍ୱନ୍ତର ଓ ବଂଶାନୁଚରିତ ରହିଥାଏ । ଭାରତୀୟ ପୁରାଣ ସାହିତ୍ୟରେ ଅଷ୍ଟାଦଶ ପୁରାଣ ଗୁଡ଼ିକ ହେଲା - ବ୍ରହ୍ମ, ପଦ୍ମ, ବିଷ୍ଣୁ, ଶିବ, ଭଗବତ, ନାରଦୀୟ, ମାର୍କେଣ୍ଡେୟ, ଅଗ୍ନି, ଭବିଷ୍ୟ, ବ୍ରହ୍ମ କୈବର୍ତ୍ତ, ଲିଙ୍ଗ, ବରାହ, ସ୍କନ୍ଦ, ବାମନ, କୂର୍ମ, ମତ୍ସ୍ୟ, ଗରୁଡ଼, ବ୍ରହ୍ମାଣ୍ଡ ।

ଉପପୁରାଣ ହେଲା - ଆଦି, ନରସିଂହ, ନନ୍ଦୀ, ଆଦିତ୍ୟ, ସୋମ, ଶାମ୍ବ ।

**ପୁରାବୃତ୍ତ ବା ପୁରାଣ କଳ୍ପ** – ଆଧୁନିକ କାବ୍ୟଚେତନାର ଏକ ଗୁରୁତ୍ୱପୂର୍ଣ୍ଣ ବିଭବ । ସାହିତ୍ୟ ସମାଲୋଚନାରେ ପୁରାଣ କଳ୍ପ ମିଥୋସ୍‌ର ଅନ୍ତିମ ରୂପ ଯାହା ଲୋକସ୍ମୃତିରେ ଅଜସ୍ର କାହାଣୀ, କିମ୍ବଦନ୍ତୀ, ପୁରାଣ ଓ ସର୍ବସାଧାରଣଙ୍କ ବିଶ୍ୱାସ ଉପରେ ଆଧିପତ୍ୟ ବିସ୍ତାର କରିଥିବା ଏକ ସାର୍ବଜନୀନ ଭିତ୍ତିଭୂମିକୁ ସୂଚାଇଥାଏ । ଅନ୍ୟ ଭାବରେ ଏକଦେଶ,ଏକ ଜାତି ବା ଉପଜାତି ଦ୍ୱାରା ବିଶ୍ୱାସ କରାଯାଉଥିବା କିମ୍ୱା ପୁରୁଷାନୁକ୍ରମେ ପ୍ରଚଳିତ ଅଲୌକିକ ଶକ୍ତି ସଂପନ୍ନ କାହାଣୀ । ପ୍ରାଚୀନ ଗ୍ରୀକ୍ ସାହିତ୍ୟରେ ମିଥ୍ ଶବ୍ଦ ସତ୍ୟ ବା କାଳ୍ପନିକ କଥାବସ୍ତୁକୁ ବୁଝାଇଥାଏ । ଆଧୁନିକ ଅର୍ଥରେ ଏହା କାଳ୍ପନିକ କଥା ବା ପୁରାବୃତ୍ତ । ଏହି ପୌରାଣିକ କଥାର ମୂଳରେ ରହିଛି ଯେଉଁ ଧର୍ମ ବିଶ୍ୱାସ ଓ ପାରଂପରିକ ମୂଳଭିତ୍ତି, ତାହାର ନବୀକରଣ ହୋଇଛି ଏହି ପୁରାଣକଳ୍ପ ପ୍ରୟୋଗରେ ।

**ପୁରୁଷ** – ବ୍ୟାକରଣ ନିମୟ ଅନ୍ତର୍ଭୁକ୍ତ । ବାକ୍ୟରେ ବିଶେଷ୍ୟ ବା ସର୍ବନାମର ସଂଖ୍ୟା ନିର୍ଦ୍ଧାରଣ କରୁଥିବା ପ୍ରୟୋଗର ନାମ ପୁରୁଷ । ପୁରୁଷ ତିନି ପ୍ରକାର - ପ୍ରଥମ ପୁରୁଷ, ଦ୍ୱିତୀୟ ପୁରୁଷ, ତୃତୀୟ ପୁରୁଷ ।

**ପୂର୍ଣ୍ଣୋପମା** - ଉପମାନ, ଉପମେୟ, ସାଧାରଣ ଧର୍ମ ଓ ବାଚକ ଶବ୍ଦ ଏହି ଚାରିଗୋଟି ପ୍ରତିପାଦନରେ ଉଲ୍ଲେଖଥିଲେ ପୂର୍ଣ୍ଣୋପମା ହୁଏ । ଉଦାହରଣ -

ସହନ୍ତି ଧାରାପାତ ଶଇଳ ଗଣ
ଖଳ ବଚନ ଯଥା ସହେ ସୁଜନ । (ତୁଳସୀ ସ୍ତବକ)

**ପୋଇ** – ପ୍ରାଚୀନ ଓଡ଼ିଆ ସାହିତ୍ୟରେ ଭୂପାଳ ରାଗରେ ଗାନଯୋଗ୍ୟ ଗୀତ । ପୋଇ ଗୀତର ବିଶେଷ ପରିଚୟ ହେଉଛି ଯେଉଁ ସଂଖ୍ୟାରେ ଏହା ନାମିତ ହୋଇଥାଏ ସେତିକି ସଂଖ୍ୟକ ଅଧ୍ୟାୟ ଥାଏ ଏବଂ ପ୍ରତି ଅଧ୍ୟାୟରେ ସେତିକି ସଂଖ୍ୟକ ପଦ ଥାଏ । ପୋଇ ଗୀତର ଅଧ୍ୟାୟ ଶେଷରେ ଛୋଟ ଛୋଟ ଗୀତ ମଧ୍ୟ ଥାଏ । ଏହାକୁ ତଣ୍ଡକ କୁହାଯାଏ ।

## ଫ

**ଫଳା** – ବ୍ୟାକରଣ ନିୟମ । ବ୍ୟଞ୍ଜନବର୍ଣ୍ଣମାନେ ମଧ୍ୟ ସ୍ୱରବର୍ଣ୍ଣ ପରି ସ୍ୱତନ୍ତ୍ର ଭାବରେ ବ୍ୟବହୃତ ହୋଇପାରନ୍ତି । ନ, ମ, ଯ, ର, ଳ, ବ ଏହି ଛଅଟି ବ୍ୟଞ୍ଜନବର୍ଣ୍ଣ ଅନ୍ୟ ବ୍ୟଞ୍ଜନବର୍ଣ୍ଣ ସହିତ ମିଳିତ ହେଲେ ସେମାନଙ୍କୁ 'ଫଳା' କହନ୍ତି । ଯଥା -

ନ- ୍ନ , ମ - ୍ମ , ୍ୟ , ୍ର , ୍ଳ , ୍ୱ

**ଫର୍ମାଲିଜିମ୍** – ରୂପବାଦର ଇଂରାଜୀ ପ୍ରତିଶବ୍ଦ ଫର୍ମାଲିଜିମ୍ । ଏଠାରେ ରୂପ ନିର୍ଦ୍ଧାରିତ ବାହ୍ୟ ରୂପ ଉପରେ ଗୁରୁତ୍ୱ ଦିଆଯାଇଥାଏ । ବିଶେଷ ରୂପରେ ଧର୍ମ ବିଷୟ କିମ୍ବା ଜୀବନରେ ଏହାର ଉପଯୋଗ କରିବା ବା ଅନୁସରଣ କରିବାକୁ ବୁଝାଏ । ନାଟକରେ ନାଟକୀୟ ଲକ୍ଷଣକୁ କୁହାଯାଏ ଯେ ନାଟକ ପରିବେଷଣ ସମୟରେ ଅର୍ଦ୍ଧସ୍ଥାୟୀ ରଚନାତ୍ମକ ପୃଷ୍ଠଭୂମିକୁ ଉପଯୋଗ କରି ପ୍ରାୟତଃ ରଂଗମଞ୍ଚର ସୀମାକୁ ବିଚାର ନକରି ଏହାର ଫର୍ମକୁ ସୀମାବଦ୍ଧ କରି ଦିଆଯାଇଥାଏ । ଲଳିତ କଳା ଓ ମୂର୍ତ୍ତି କଳାରେ ମଧ୍ୟ ଏହା ପାରମ୍ପରିକ ସତର୍କତାକୁ ବୁଝାଇଥାଏ ।

**ଫ୍ରୟେଡ୍ ତତ୍ତ୍ୱ** – ଡାକ୍ତର ଫ୍ରୟେଡ୍‌ଙ୍କ ମନୋବିଜ୍ଞାନ ତତ୍ତ୍ୱକୁ ବୁଝାଏ । ମନର ଦୁଇଟି ଅବସ୍ଥା ଚେତନ ଓ ଅଚେତନ ବା ଅବଚେତନ । ଜାଗ୍ରତ ଅବସ୍ଥାର କଥା ଚେତନା ମନର ଓ ଗୁପ୍ତ ଅବସ୍ଥାର କଥା ଅଚେତନ ମନର । ମଣିଷ ମନର ନଅଭାଗରୁ ଆଠଭାଗ ଅଂଶ ହେଉଛି ଅଚେତନ ମନର କଥା, ତାହାହିଁ ମନର ସର୍ବୋତ୍ତମ ପରିଚୟ । ଫ୍ରୟେଡ୍‌ଙ୍କ ମତରେ ବ୍ୟକ୍ତିର ମାନସିକ କ୍ରିୟାକଳାପ ତିନୋଟି ସ୍ତରରୁ ସୃଷ୍ଟି । ସେହି ତିନୋଟି ସ୍ତର ହେଲା - ଆଦିମ ପ୍ରବୃତ୍ତି (Id), ଅହମ (Ego) ଓ ଶ୍ରେଷ୍ଠ ଅହମ୍ (Super ego)। ଆଦିମ ପ୍ରବୃତ୍ତି ହେଉଛି ଅତ୍ୟନ୍ତ ବଳଶାଳୀ ସତ୍ତା । ଏହା ଅନ୍ଧକାରମୟ । ତେଣୁ ଏଥିରେ ପ୍ରବେଶ କଷ୍ଟକର । ଏହା ଚେତନାହୀନ ଏବଂ ଯୌନସ୍ୱଭାବ ବିଶିଷ୍ଟ । ଏହା ପୂର୍ବଜନ୍ମରୁ ଆସିଥାଏ ଏବଂ ବର୍ତ୍ତମାନରେ ଦେଖାଦେଇଥାଏ । ଏହା ଅନ୍ଧ, ନିର୍ଦ୍ଦୟ ଏବଂ କୌଣସି ଆକାଂକ୍ଷା ପୂରଣ ବ୍ୟତୀତ କିଛି ମାନେ ନାହିଁ । ନୈତିକତା କିମ୍ବା ଭଲମନ୍ଦର ବିଚାର ଏହା ପାଖରେ କିଛି ନଥାଏ ।

ଅହମ୍ (Ego) ସାମାଜିକ ଚଳଣି ପ୍ରତି ସଚେତନ ଥାଏ । ବହିର୍ଜଗତ ବା ବାହ୍ୟ କଟକଣା ଓ ପାଶବିକ ପ୍ରବୃତ୍ତିର ମଧ୍ୟରେ ମଧ୍ୟସ୍ଥ ପରି ଠିଆ ହୋଇ ରହେ ଏହି ଅହମ୍ । ଏହି ଅହମ୍ ଓ ପାଶବିକ ପ୍ରବୃତ୍ତିର ସଂଘର୍ଷରୁ ସ୍ନାୟବିକ ବିଚାର ଓ ରୋଗ ଜନ୍ମ ହୁଏ ।

ତୃତୀୟ ମାନସିକ ତତ୍ତ୍ୱ ଶ୍ରେଷ୍ଠ ଅହମ୍ (Superego) ଦେଖାଦିଏ । ତାକୁ ବିବେକ କୁହାଯାଇପାରେ । ଆଦିମ ପ୍ରବୃତ୍ତି ପରି ଶ୍ରେଷ୍ଠ ଅହମ୍‌ର ସ୍ଥାନ ହେଉଛି ଅଚେତନ ମନର ।

ଏହି ଦୁଇଟି ମଧ୍ୟରେ ସର୍ବଦା ଦ୍ୱନ୍ଦ୍ୱ ଲାଗି ରହିଥାଏ । ଏବଂ ଅହମ୍ ହୁଏ ଦୁଇଙ୍କର ମଧ୍ୟସ୍ଥ । ଆଦିମ ପ୍ରବୃତ୍ତି, ଅହମ୍ ଓ ଶ୍ରେଷ୍ଠ ଅହମ୍ ଯୁକ୍ତିଯୁକ୍ତ ସହାବସ୍ଥାନରେ ରହିଲେ ବ୍ୟକ୍ତି ସମାଜରେ ଖୁସିରେ ରହିପାରେ । ଯଦି ଆଦିମ ପ୍ରବୃତ୍ତିକୁ ସାମାଜିକ ନୀତି ନିୟମ ଭାଙ୍ଗିବା ପାଇଁ ଅହମ୍ ଅନୁମତି ଦିଏ ତେବେ ଶ୍ରେଷ୍ଠ ଅହମ୍ ସ୍ତରରେ ବିଶୃଙ୍ଖଳା ଦେଖାଦିଏ । ଆଦିମ ପ୍ରବୃତ୍ତି (Libido) ରୁ କାମର ଜନ୍ମ ଯାହାକି ମନୋବୈଜ୍ଞାନିକ ବିଶ୍ଳେଷଣର ସାରତତ୍ତ୍ୱ । ମଣିଷର ସାଂସ୍କୃତିକ କ୍ରିୟା, କଳା, ସାହିତ୍ୟ, ସ୍ଥାପତ୍ୟ ଆଦି ତା'ର ବିକାଶ । (ସହାୟକ ଗ୍ରନ୍ଥ - ଓଡ଼ିଆ ସାହିତ୍ୟ କୋଷ - ଡକ୍ଟର ବଂଶୀଧର ବିଶ୍ୱାଳ ।

**ଫାସିଜିମ୍** – ଆଧୁନିକ ଯୁଗରେ ଧର୍ମଦ୍ୱାରା ପ୍ରତିଷ୍ଠିତ ଦେବତାମାନଙ୍କ ସ୍ଥାନରେ ନୂଆ ଦେବତାମାନେ ପ୍ରତିସ୍ଥାପିତ ହୋଇଥାନ୍ତି । ଏହି ଦେବତାମାନଙ୍କ ମଧ୍ୟରେ ରାଷ୍ଟ୍ର ହିଁ ସବୁଠାରୁ ବଡ଼ ଦେବତା ଏବଂ ଏହାକୁ ପ୍ରତିଷ୍ଠା କରୁଥିବା ନୂତନ ଧର୍ମ ହିଁ ରାଷ୍ଟ୍ରବାଦ । ଇଟାଲୀରେ ବେନିଟୋ ମୁସଲିମ୍‌ଙ୍କ ଦ୍ୱାରା ପ୍ରବର୍ତ୍ତିତ ଆନ୍ଦୋଳନକୁ ଫାସିଜିମ୍ କୁହାଯାଏ । ଇଟାଲୀୟ ଶବ୍ଦ ଫାସିଚୋ ଲାଟିନ୍ ଫାସିଜ୍ ଶବ୍ଦରୁ ଏହାର ବ୍ୟୁତ୍ପତ୍ତି ହୋଇଛି । ଯାହାର ଅର୍ଥ ରକ୍ଷୀ । ପ୍ରାଚୀନ ରୋମ୍‌ର ମାଜିଷ୍ଟ୍ରେଟ୍‌ଙ୍କ ଆଗରେ ଅଧିକାରର ପ୍ରତୀକ ରୂପେ କୁଠାରଯୁକ୍ତ ଦଣ୍ଡ ଧରି ଏକ ରକ୍ଷୀ ଚାଲୁଥାଏ । ଫାସିଜିମ୍ ଶବ୍ଦ ଏହି ଭାବନା ସହିତ ସଂପର୍କିତ ।

**ଫୁଙ୍କାବନ୍ଧ** – ସନ୍ଥ ସାହିତ୍ୟରେ ଫୁଙ୍କାବନ୍ଧ ଉପରେ ଗୁରୁତ୍ୱ ଦିଆଯାଇଛି । ଏହା ଶରୀର ଅର୍ଥରେ ପ୍ରଯୁକ୍ତ ।

''ରହିବ ଫୁଙ୍କାବନ୍ଧେ ପାଣି
କ୍ରୀଡ଼ା କରିବ ହଂସ ପୁଣି'' (ବୈଚନ୍ଦ୍ରଗୀତା)

## ବ

**ବକ୍ରୋକ୍ତି** – ଏହା ଅଳଙ୍କାର ଶାସ୍ତ୍ରର ଏକ ସିଦ୍ଧାନ୍ତ । ବକ୍ରଉକ୍ତି ବା ବଙ୍କାକଥା କୁ ବକ୍ରୋକ୍ତି କୁହାଯାଏ । ସାଧାରଣ କଥାକୁ ଅଲୌକିକ ଭାବରେ ପ୍ରକାଶ, କରିବାକୁ ହିଁ 'ବକ୍ରୋକ୍ତି' । ଆଲୋଚନା ଶାସ୍ତ୍ରରେ ବକ୍ରୋକ୍ତିକୁ 'କବିକୌଶଳ' ଓ 'କବିବ୍ୟାପାର' ଭାବରେ ନାମିତ କରିଛନ୍ତି । ବକ୍ରୋକ୍ତି ବିଚାରର ପ୍ରବର୍ତ୍ତକ କୁନ୍ତକ କହିଛନ୍ତି ''ବକ୍ରୋକ୍ତିଃ କାବ୍ୟ ଜୀବିତମ୍'' ଅର୍ଥାତ୍ ବକ୍ରୋକ୍ତି କାବ୍ୟର ପ୍ରାଣଧର୍ମ, ଜୀବନ ତତ୍ତ୍ୱ । ବକ୍ରୋକ୍ତିକୁ ବର୍ଣ୍ଣନା କରିବାକୁ ଯାଇ କୁନ୍ତକ ଲେଖିଛନ୍ତି ''ବକ୍ରୋକ୍ତିରେବ ବୈଦଗଧ୍ୟ ଭଙ୍ଗୀଭଣତି ରୁଚ୍ୟତେ''। କବିତ୍ୱପୂର୍ଣ୍ଣ ଦକ୍ଷତା, ଭଙ୍ଗୀଦ୍ୱାରା ବିଚିତ୍ରତା ବା ଚମତ୍କାରିତା ରୀତିକୁ ବକ୍ରୋକ୍ତି କୁହାଯାଏ । ବକ୍ରୋକ୍ତି ଛଅଗୋଟି ବିଭାଗରେ ବିଭକ୍ତ (୧) ବର୍ଣ୍ଣ - ବିନ୍ୟାସ ବକ୍ରତା, (୨) ପଦ-ପୂର୍ବାର୍ଦ୍ଧ- ବକ୍ରତା, (୩) ପଦ-ପରାର୍ଥ ବକ୍ରତା (୪) ବାକ୍ୟ ବକ୍ରତା, (୫) ପ୍ରକରଣ ବକ୍ରତା, (୬) ପ୍ରବନ୍ଧ ବକ୍ରତା । ବକ୍ରୋକ୍ତି ଏକ କବି ବ୍ୟାପାର ହୋଇଥିବାରୁ ବୈଚିତ୍ର୍ୟସିଦ୍ଧି ପାଇଁ ଯେଉଁଠି ତ୍ରସନ୍ଧି ମାର୍ଗକୁ ପରିହାର କରି ସେହି ଅର୍ଥକୁ ଅନ୍ୟ ପ୍ରକାରେ ଅଭିବ୍ୟକ୍ତ କରାଯାଏ, ସେଇଠି ବକ୍ରୋକ୍ତିର ପୂର୍ଣ୍ଣରାଜତ୍ୱ ବୋଲି ବୁଝିବାକୁ ହେବ ।

''ପ୍ରସିଦ୍ଧଂ ମାର୍ଗମୁତ୍ସଜ୍ୟ ଯତ୍ର ବୈଚିତ୍ର୍ୟ ସିଦ୍ଧୟେ,
ଅନ୍ୟ ର୍ଥୈବୋଚ୍ୟତେ ସୋଽର୍ଥ ସା ବକ୍ରୋକ୍ତିରୁଦାହୃତ''।

**ବକ୍ରୋକ୍ତି ଅଳଙ୍କାର** – ବକ୍ତାଦ୍ୱାରା ଗୋଟିଏ ଅର୍ଥରେ ବ୍ୟବହୃତ ହୋଇଥିବା ଶବ୍ଦକୁ ଶ୍ରୋତା ଆଉ ଗୋଟିଏ ଅର୍ଥରେ ଗ୍ରହଣ କଲେ ବକ୍ରୋକ୍ତି ଅଳଙ୍କାର ହୁଏ । ଏହା ଦୁଇପ୍ରକାର । ଶ୍ଳେଷ ବକ୍ରୋକ୍ତି ଓ କାକୁ ବକ୍ରୋକ୍ତି । ଶ୍ଳେଷ ବକ୍ରୋକ୍ତିରେ ବକ୍ତାର ଅଭିପ୍ରେତ ଅର୍ଥଦ୍ୟୋତକ ଶବ୍ଦକୁ ଶ୍ରୋତା ଭିନ୍ନ ଅର୍ଥରେ ଗ୍ରହଣ କରେ ।

**ବଙ୍କନାଳ** – ଓଡ଼ିଆ ସନ୍ଥ ସାହିତ୍ୟରେ ଏହା ବଙ୍କନାଳି, ବଙ୍କନାଳ ଭାବରେ ବର୍ଣ୍ଣିତ ହୋଇଛି । ନାସା ବିବରଠାରୁ ବ୍ରହ୍ମତାଳୁକା ପର୍ଯ୍ୟନ୍ତ ବ୍ୟାପ୍ତ ବକ୍ରନାଡ଼ୀକୁ ବଙ୍କନାଳ କୁହାଯାଇଛି । 'ବଙ୍କାନାଳ' ଶବ୍ଦରୁ 'ବଙ୍କନାଳ' ହୋଇଛି । ଏହି ବକ୍ରନାଳ ବ୍ରହ୍ମରନ୍ଧ୍ର ଭିତରକୁ ଯିବାର ପଥ ।

''ବ୍ରହ୍ମରନ୍ଧ୍ର ଭିତରକୁ ବଙ୍କନାଳ କହି
ସେହିଠାରେ ଉଠ ଦିବ୍ୟ ରୂପ ଦେଖାଯାଇ'' (ଜ୍ଞାନ ସାଗର, ପୃ. ୫୯)

**ବଡ଼ଦେଉଳ** – ସନ୍ଥ ସାହିତ୍ୟରେ ଶରୀରକୁ ବଡ଼ଦେଉଳ କୁହାଯାଇଛି । ଏଥିରେ ଶରୀର ରଥ ସହିତ ତୁଳନା କରାଯାଇଛି । ପିଣ୍ଡ ବ୍ରହ୍ମାଣ୍ଡ ମୂଳତତ୍ତ୍ୱର ଶ୍ରେଷ୍ଠ ଆଲୋଚନା, ବଳରାମ ଦାସଙ୍କର 'ବିରାଟ ଗୀତା' ଓ 'ବ୍ରହ୍ମାଣ୍ଡ ଭୁଗୋଳ'ରେ ହିଁ ରହିଛି ।

**ବଙ୍ଗଳାଶ୍ରୀ** – ବଙ୍ଗଳାଶ୍ରୀ ବୃତ୍ତରେ ପ୍ରତ୍ୟେକ ପଦରେ କୋଡ଼ିଏ ଅକ୍ଷର ବିଶିଷ୍ଟ ଦୁଇଟି ପାଦ ଥାଏ । ପ୍ରତିପାଦରେ ଷଷ୍ଠ, ଦ୍ୱାଦଶ, ଅଷ୍ଟାଦଶ ଓ ଶେଷ ଅକ୍ଷର ଉପରେ ଯତିପାତ ହୁଏ ।

କ୍ରମେ ମଧୁଶେଷେ'          ଆସଇ ଜଗତେ'
ଦାରୁଣ ନିଦାଘ' କାଳ'
ତୀକ୍ଷ୍ଣ ଶର ପ୍ରାଯେ          ବର୍ଷଇ ତପନ'
ପ୍ରଚଣ୍ଡ କିରଣ' ଜାଳ'।

**ବଚନ** – ବ୍ୟାକରଣ ନିୟମ । ଯାହାଦ୍ୱାର ବସ୍ତୁ ବା ବ୍ୟକ୍ତିର ସଂଖ୍ୟା ଜଣାପଡ଼େ ତାହାକୁ ବଚନ କୁହାଯାଏ । ଏ ଯେଉଁ ବିଶେଷ୍ୟ ବା ବିଶେଷଣର ପଦର ବ୍ୟବହାର ଦ୍ୱାରା ବସ୍ତୁର ବା ବ୍ୟକ୍ତିର ସଂଖ୍ୟା ଗୋଟିଏ ବୋଲି ଜଣାଯାଏ ତାହା ଏକ ବଚନ ଓ ବହୁ ପରିମାଣ ବୁଝାଇଲେ ତାହା ବହୁବଚନ ହୁଏ ।

**ବର୍ଣ୍ଣ** – ଧ୍ୱନିର ତାତ୍ତ୍ୱିକ ରୂପକୁ ଅକ୍ଷର ଓ ଅକ୍ଷରର ବ୍ୟକ୍ତ ରୂପକୁ ବର୍ଣ୍ଣ କୁହାଯାଏ । ଲିଖିତ ପ୍ରତିକ୍ରିୟା ଦ୍ୱାରା ଭାଷାକୁ ବ୍ୟକ୍ତ କରିବାପାଇଁ ଯେଉଁ ସବୁ ସଙ୍କେତ ସୃଷ୍ଟି ହୋଇଅଛି ସେ ସବୁକୁ ବର୍ଣ୍ଣ ବା ଅକ୍ଷର କୁହାଯାଏ । ବିଭିନ୍ନ ବର୍ଣ୍ଣ ବିଭିନ୍ନ ଆକାରର ଓ ଉଚ୍ଚାରଣର । ଓଡ଼ିଆ ଭାଷାରେ ଅଣଅଶଟି ବର୍ଣ୍ଣ ଅଛି । ଏହା ଦୁଇ ଭାଗରେ ବିଭକ୍ତ ଯଥା - ସ୍ୱର ବର୍ଣ୍ଣ ଓ ବ୍ୟଞ୍ଜନ ବର୍ଣ୍ଣ ।

**ବର୍ଣ୍ଣଚିତ୍ର** – ଓଡ଼ିଆ ରୀତିଯୁଗ ସାହିତ୍ୟ ରଚନାର ଏକ ପଦ୍ଧତି । କେବଳ ବ୍ୟଞ୍ଜନ ବର୍ଣ୍ଣ ବିଶିଷ୍ଟ ଶବ୍ଦ ପ୍ରୟୋଗରେ କାବ୍ୟ ରଚନା କରିବାର ରୀତି । ପ୍ରାଚୀନ କବିମାନେ ଗୋଟିଏ, ଦୁଇଟି, ତିନୋଟି ବ୍ୟଞ୍ଜନ ବର୍ଣ୍ଣ ବିଶିଷ୍ଟ ଶବ୍ଦକୁ ନେଇ ଚିତ୍ରକାବ୍ୟ ସୃଷ୍ଟି କରିଥିବାର ଦେଖାଯାଏ ।

**ବନ୍ଦନା** – ଭକ୍ତିମୂଳକ ଗୀତର ଅନ୍ତର୍ଗତ । ଭକ୍ତ ଯେତେବେଳେ ଭଗବାନଙ୍କର ନାମ, ରୂପ, ଗୁଣ ପ୍ରଭୃତି ଦ୍ୱାରା ତାଙ୍କ ପ୍ରତି ଆକୃଷ୍ଟ ହୁଏ, ତାହର ଅନ୍ତର ବିଭୁପ୍ରେମରେ ପରିପୂର୍ଣ୍ଣ ହୋଇଉଠେ । ତାଙ୍କର ଅର୍ଚ୍ଚନା କରିବାପରେ ପରେ ତାଙ୍କର ଗୁଣାବଳୀର ପ୍ରଶଂସାମୁଖର ହୋଇ ଚରଣ ବନ୍ଦନା କରିବାକୁ ଉନ୍ମୁଖ ହୋଇପଡ଼େ । ତାହାକୁ ବନ୍ଦନା କୁହାଯାଏ ।

**ବନ୍ଦାଣ** – ନିଜର ପ୍ରଶସ୍ତି ବା ଅଲୌକିକତାକୁ ସମସ୍ତଙ୍କ ଉଦ୍ଦେଶ୍ୟରେ ପ୍ରକାଶ କରିବା ହିଁ ବନ୍ଦାଣ । ଏହାର ପ୍ରାଚୀନ ଓଡ଼ିଆ ସାହିତ୍ୟରେ ଦେଖାଦେଇଥାଏ । ଏଥିରେ ଅନେକ ଭବିଷ୍ୟତ ଘଟିବାର ସୂଚନା ମଧ୍ୟ ଥାଏ ।

**ବତିଶ ଦଳ** – ଚନ୍ଦ୍ର ୧୬ କଳା, ସୂର୍ଯ୍ୟ ୧୬ କଳା, ବତିଶ ଦଳ ପଦ୍ମ । ଜଗମୋହନ ଠାରୁ ଭିତରବେଢ଼ା ପର୍ଯ୍ୟନ୍ତ ସ୍ଥାନ ୩୨ ଦଳ ଭାବରେ କଥିତ । ଓଡ଼ିଆ ସନ୍ଥ ସାହିତ୍ୟରେ ଜଗନ୍ନାଥ ମନ୍ଦିର ହେଉଛି ପିଣ୍ଡ ଓ ବିଶ୍ୱ ବ୍ରହ୍ମାଣ୍ଡର ରୂପକ ମାତ୍ର । ଏହା ହିଁ ଓଡ଼ିଆ ସନ୍ଥ ସାହିତ୍ୟର ପ୍ରଧାନ ରୂପକ ।

**ବସନ୍ତ-ହୋଲିଚାଚର** – ପ୍ରାଚୀନ ଓଡ଼ିଆ ସାହିତ୍ୟରେ ହୋରି ଚର୍ଚ୍ଚରି ଓ ବସନ୍ତ ନାମରେ ବହୁ ଗୀତିକା ରହିଛି । ରାଧାକୃଷ୍ଣ ମିଳନର ବିଷୟବସ୍ତୁ ଉପରେ ଏହିସବୁ ଗୀତିକାଗୁଡ଼ିକ ଲେଖାହୋଇଛି । ଅଧିକାଂଶ ଗୀତିକା ବଜ୍ରବୋଲି ଓ କିଛି ପ୍ରାଚୀନ ହିନ୍ଦୀ ଭାଷାରେ ଲେଖାଯାଇଛି ।

**ବସ୍ତୁନିଷ୍ଠ** – ପ୍ରତ୍ୟକ୍ଷ ଅନୁଭୂତି ପ୍ରସୂତ ସାହିତ୍ୟ । ବସ୍ତୁନିଷ୍ଠ ସାହିତ୍ୟ କହିଲେ ବୁଝାଯାଏ ସ୍ରଷ୍ଟାର ଜାଗତିକ ଅନୁଭୂତି, ତତ୍ ଜନିତ ନିଜର ମାନସିକ କ୍ରିୟା ପ୍ରତିକ୍ରିୟା ଏବଂ ନିଜର ଚାରିତ୍ରିକ ବିଶେଷତଃ ପ୍ରତିଫଳିତ ହେଉଥିବା ସାହିତ୍ୟକୃତି । କଳ୍ପନାବିଳାସ ଓ ତାହାର ପ୍ରକାଶଭଙ୍ଗୀ ବସ୍ତୁସତ୍ୟକୁ ଭାବମୟ ଓ ଶ୍ଳାଘ୍ୟ କରିଥାଏ । ବସ୍ତୁନିଷ୍ଠ ରଚନା ଦୁଇପ୍ରକାର - ଗୋଟିଏ ବସ୍ତୁ ଯେମିତି ଦେଖାଯାଏ ଠିକ୍ ତାହାରି ଚିତ୍ରଣ, ଅନ୍ୟଟି ବସ୍ତୁର ଅନ୍ତରାଳରେ ଥିବା ସତ୍ୟର ଚିତ୍ରଣ । ଐତିହାସିକ ଓ ବୈଜ୍ଞାନିକ ବସ୍ତୁସତ୍ୟଠାରୁ ସାହିତ୍ୟିକ ସତ୍ୟ ପୃଥକ ।

**ବ୍ୟତିରେକ** – ଉପମାନ ଅପେକ୍ଷା ଉପମେୟର ଆଧିକ୍ୟ କଥିତ ହେଲେ ବ୍ୟତିରେକ ଅଳଙ୍କାର ହୁଏ ।

ଆନକ ପ୍ରତିମା ପ୍ରାୟେ ମନୋହର
ମୂରତି ଯୁବତୀ ତିନି
ରୂପ-ରଣେ ଜଳି ଦେବେ ଯେହ୍ନୁ ଗୁରୁ
ଚରଣେ ସୁର-କାମିନୀ ।

(ପ୍ରଣୟବଲ୍ଲରୀ)

**ବ୍ୟଞ୍ଜନା** – ବ୍ୟଞ୍ଜନା ଶବ୍ଦର ଅର୍ଥ ହେଉଛି, ବିଶେଷଭାବରେ ସ୍ପଷ୍ଟ କରିବା, ଖୋଲିବା ଓ ବିକଶିତ ହେବା । ଅଭିଧା ଓ ଲକ୍ଷଣା ଶକ୍ତି ଦ୍ୱୟ ଯେ କୌଣସି ଶବ୍ଦ ଅଥବା ବାକ୍ୟର ଅର୍ଥବୋଧ କରାଇ ସାରିବା ପରେ ଯେଉଁ ଶକ୍ତିଦ୍ୱାରା ସେଥିରୁ ଅନ୍ୟ ଗୋଟିଏ ଚମତ୍କାର ପୂର୍ଣ୍ଣ ଅର୍ଥ ଦ୍ୟୋତିତ ହୁଏ, ତାହାକୁ ବ୍ୟଞ୍ଜନା ଶକ୍ତି କୁହଯାଏ । ଯେଉଁ ଶବ୍ଦରୁ ସେହି ବ୍ୟଙ୍ଗାର୍ଥ ଦ୍ୟୋତିତ ହୁଏ, ତାହାକୁ ବ୍ୟଞ୍ଜକ ଏବଂ ଯେଉଁ ଅର୍ଥ ଦ୍ୟୋତିତ ହୁଏ, ତାହାକୁ ବ୍ୟଙ୍ଗାର୍ଥ କୁହାଯାଏ । ବ୍ୟଞ୍ଜନା ପ୍ରଥମତଃ ଶାବ୍ଦ ଓ ଆର୍ଥୀ ଭେଦରେ ଦୁଇପ୍ରକାର । ପୁନଶ୍ଚ

ଶାବ୍ଦୀ ବ୍ୟଞ୍ଜନା ଦୁଇ ପ୍ରକାର । (୧) ଅଭିଧାମୂଳକଶାବ୍ଦୀ ବ୍ୟଞ୍ଜନା, (୨) ଲକ୍ଷଣାମୂଳା ଶବ୍ଦୀ ବ୍ୟଞ୍ଜନା ।

ଶବ୍ଦ ବା ବାକ୍ୟର ପ୍ରଚ୍ଛନ୍ନ ଥିବା ଉଦ୍ଦିଷ୍ଟ ଅର୍ଥ ଉତ୍ତମ କାବ୍ୟପାଇଁ ଏହାର ବିଶେଷ ଆବଶ୍ୟକତା ରହିଛି । ଶବ୍ଦର ଅର୍ଥ ତିନି ପ୍ରକାର ଯଥା - ଅଭିଧା, ଲକ୍ଷଣା ଓ ତାତ୍ପର୍ଯ୍ୟ । ବ୍ୟଞ୍ଜନା ଚତୁର୍ଥ ପ୍ରକାର ଶବ୍ଦ ଶକ୍ତି । ଏହା କାବ୍ୟ ବା ଶବ୍ଦର ଆକ୍ଷରିକ ଅର୍ଥକୁ ନବୁଝାଇ ତାର ଆବେଗିକ ତଥା ତାତ୍ତ୍ୱିକ ଅର୍ଥକୁ ଦର୍ଶାଇ ଥାଏ । ଶବ୍ଦରୁ ବ୍ୟଞ୍ଜନା ପ୍ରକାଶ ପାଇଲେ ତାହା ଶବ୍ଦ ବ୍ୟଞ୍ଜନା ଓ ଅର୍ଥରୁ ପ୍ରକାଶ ପାଇଲେ ତାହା ଅର୍ଥ ବ୍ୟଞ୍ଜନା ହୁଏ ।

**ବ୍ୟଭିଚାରଭାବ** – ଭାବ ଦୁଇପ୍ରକାର । ସ୍ଥାୟୀଭାବ ଓ ସଂଚାରୀ ଭାବ । ଯେଉଁ ଭାବ ଆମ ମନ ମଧ୍ୟରେ ଅଳ୍ପକ୍ଷଣ ପାଇଁ ପ୍ରଭାବ ବିସ୍ତାର କରି କୁଆଡ଼େ ଉଭେଇ ଯାଆନ୍ତି, ସେହିପରି ଭାବମାନଙ୍କୁ ସଂଚାରୀ ଭାବ ବା ବ୍ୟଭିଚାର ଭାବ କୁହାଯାଏ । ସାହିତ୍ୟ ଶାସ୍ତ୍ରରେ ୩୩ଟି ବ୍ୟଭିଚାର ଭାବର ଉଲ୍ଲେଖ ଅଛି ।

**ବ୍ରହ୍ମବାଦ**– ଭାରତୀୟ ଧର୍ମଧାରା, ଆଧ୍ୟାତ୍ମ୍ୟ ଚେତନା, ରହସ୍ୟବାଦୀ ଧାରଣା ଓ ସମସ୍ତ ଦାର୍ଶନିକ ଚିନ୍ତାଧାରାର ଅନ୍ତରାଳରେ ବ୍ରହ୍ମବାଦ ହିଁ ବିହିତ । ବ୍ରହ୍ମ ହିଁ ଭାରତୀୟ ଦର୍ଶନ କ୍ଷେତ୍ରରେ ମୁଖ୍ୟ ଉପଜିବ୍ୟ । ବ୍ରହ୍ମକୁ ଭିତ୍ତିକରି ଭାରତୀୟ ଧର୍ମ, ଦର୍ଶନ, ଆଧାତ୍ମିକ, ସାଂସ୍କୃତିକ ପୃଷ୍ଠଭୂମିରେ ଯେଉଁ ଆଲୋଡ଼ନ ସୃଷ୍ଟିହୋଇଛି, ତାହା ଭାରତୀୟ ସାହିତ୍ୟରେ ବ୍ରହ୍ମଜିଜ୍ଞାସା ଓ ବ୍ରହ୍ମବୋଧର ଧାରା ସୃଷ୍ଟି କରିଛି ତାହା ହିଁ ବ୍ରହ୍ମବାଦ ଭାବରେ ଧାରଣା କରାଯାଇଥାଏ । ଭାରତୀୟ ସାହିତ୍ୟର ସର୍ବପ୍ରାଚୀନ ଋକ୍‌ବେଦ, ଉପନିଷଦ, ବ୍ରାହ୍ମଣ, ଆରଣ୍ୟକ ସଂହିତା ଇତ୍ୟାଦିରେ ବ୍ରହ୍ମତତ୍ତ୍ୱର ବ୍ୟାଖ୍ୟାନ ରହିଛି ଯାହା ବ୍ରହ୍ମବାଦର ଆଦ୍ୟ ସାହିତ୍ୟ । ଏଥିରେ ସଗୁଣ ନିର୍ଗୁଣ ଆତ୍ମା, ପରମାତ୍ମା, ଜୀବବ୍ରହ୍ମ, ପରଂବ୍ରହ୍ମ, ନିର୍ଗୁଣ ବ୍ରହ୍ମ, ଶୂନ୍ୟବ୍ରହ୍ମ ଆଦି ବ୍ରହ୍ମର ପାରିଭାଷିକ ତତ୍ତ୍ୱ ରହିଥାଏ ।

**ବୃତ୍ତାନ୍ତ** – କୌଣସି ଏକ ବିଷୟ କିମ୍ବା ବ୍ୟକ୍ତି ସଂପର୍କିତ ଘଟଣା ସମୂହକୁ ନେଇ ବର୍ଣ୍ଣନା କରିବା ଏବଂ ତତ୍ ସଂପର୍କିତ ବିବରଣୀ ପ୍ରଦାନ କରିବା ବୃତ୍ତାନ୍ତର ଅନ୍ତର୍ଗତ ।

**ବୃତ୍ତ୍ୟାନୁପ୍ରାସ** – ସ୍ୱର ବୈଷମ୍ୟ ଥିଲେ ସୁଦ୍ଧା ଏକପ୍ରକାର ବ୍ୟଞ୍ଜନବର୍ଣ୍ଣର ପୁନଃ ପୁନଃ ଆବୃତ୍ତି ହେଲେ ଅନୁପ୍ରାସ ଅଳଙ୍କାର ହୁଏ । ବୃତ୍ତାନୁପ୍ରାସ ଏଗୁଡ଼ିକ ମଧ୍ୟରୁ ଅନ୍ୟତମ । ଏହା ଚାରିପ୍ରକାର । (୧) ଏକ ବ୍ୟଞ୍ଜନବର୍ଣ୍ଣର ଏକବାର ଆବୃତ୍ତି ହେଲେ, (୨) ଗୋଟିଏ ବ୍ୟଞ୍ଜନ ବର୍ଣ୍ଣର ବାରମ୍ବାର ଆବୃତ୍ତି ହେଲେ, (୩) ଏକାଧିକ ବ୍ୟଞ୍ଜନ ବର୍ଣ୍ଣର ସ୍ୱରୂପତଃ ଓ କ୍ରମତଃ ଆବୃତ୍ତି ହେଲେ ବୃତ୍ତ୍ୟାନୁପ୍ରାସ ଅଳଙ୍କାର ହୁଏ, (୪) ..

**ବୃତ୍ତି** – ବୃତ୍ତିର ବ୍ୟତ୍‌ପତ୍ତିଗତ ଅର୍ଥ ହେଉଛି ଜୀବନଧର୍ମୀ ବ୍ୟାପାର । ଅଭିନବ ଗୁପ୍ତଙ୍କ ମତରେ ନାଟକର ପାତ୍ର ଏବଂ କାବ୍ୟର ନାୟକମାନଙ୍କର ଶାରିରୀକ, ବାଚନିକ ଓ

ମାନସିକ ସୁସମନ୍ଧ ଚେଷ୍ଟା ଅଥବା ବ୍ୟାପାର ସମୂହକୁ ବୃତ୍ତି କୁହାଯାଏ । ଭୋଜରାଙ୍କ ମତରେ ଚିତ୍ତ ବିକ୍ଷେପ, ବିକାଶ, ସଙ୍କୋଚ ତଥା ବିସ୍ତାର ଅବସ୍ଥାରେ ନାଟକୀୟ ଚରିତ୍ର ଗୁଡ଼ିକ ଯେଉଁ ବ୍ୟବହାର ଓ କ୍ରିୟା ପ୍ରକ୍ରିୟା ପ୍ରଦର୍ଶନ କରନ୍ତି ତାହାର ନାମ ବୃତ୍ତି । ସାଧାରଣତଃ ନାଟ୍ୟକଳାରେ ବୃତ୍ତିର ବ୍ୟବହାର କରାଯାଏ । ବୃତ୍ତି ଚାରିପ୍ରକାର (୧) ଭାରତୀ, (୨) ସାତ୍ୱତୀ, (୩) କୌଶିକୀ, (୪) ଆରଭଟୀ ।

**ବାକ୍ୟ** – ଏକା ବା ଏକାଧିକ ଶବ୍ଦ ମିଶି ମନର ଭାବ ପ୍ରକାଶ କଲେ ତାହା ବାକ୍ୟ ବୋଲାଯାଏ । ଏହା ୩ ପ୍ରକାର । ସରଳ ବାକ୍ୟ, ଜଟିଳ ବାକ୍ୟ, ଯୌଗିକ ବାକ୍ୟ ।

**ବାକ୍ୟଦୋଷ** – ପଦଦୋଷର ଅନ୍ତର୍ଗତ । କେତେକ ଦୋଷ ବିଶେଷ ଭାବରେ ବାକ୍ୟ ମଧ୍ୟରେ ଦେଖାଯାଏ । ସେଗୁଡ଼ିକ କେବଳ ବାକ୍ୟଦୋଷ ଭାବରେ ଗଣନା କରାଯାଏ । ଏହା ପ୍ରତିକୂଳ ବର୍ଣ୍ଣନା, ନ୍ୟୁନପଦପ ଓ ଆଧିପଦପ ଭେଦରେ ତିନି ପ୍ରକାର । ବାକ୍ୟଗତ ପ୍ରଧାନ ରସର ଅନୁକୂଳ ବର୍ଣ୍ଣଯୋଜନା କାବ୍ୟରେ ନହେଲେ ନୁନାଧିକ୍ୟ ଏବଂ ଅଧିକ ହେଲେ ଅଧିକପଦପ ଦୋଷ ହୁଏ ।

**ବାକ୍ୟାନ୍ୱୟ** – ପଦ୍ୟକୁ ଗଦ୍ୟରେ ପରିଣତ କରିବା ପ୍ରକ୍ରିୟାକୁ ବାକ୍ୟାନ୍ୱୟ କୁହାଯାଏ ।

**ବାକ୍ୟାଂଶ** – ସମାପିକା କ୍ରିୟାବିହୀନ କେତେକ ପଦ ସମଷ୍ଟି ଦ୍ୱାରା ଗୋଟିଏ ଅର୍ଥ ପ୍ରକାଶିତ ହେଉଥିଲେ ହେଁ ପୂର୍ଣ୍ଣ ମନୋଭାବ ପ୍ରକାଶିତ ନହେଲେ ତାହାକୁ ବାକ୍ୟାଂଶ କହନ୍ତି । ବାକ୍ୟାଂଶ ତିନି ପ୍ରକାରର ଯଥା - ବିଶେଷସ୍ଥାନୀୟ, ନାମ ବିଶେଷଣୀୟ ଓ କ୍ରିୟା ବିଶେଷଣୀୟ ।

**ବାଇଶିପଦିଆ** – ବାଇଶି ପଦକୁ ନେଇ ରଚିତ ପୁରାତନ କବିତା । ସରସ ସରଳ ଗୀତିକା ମଧ୍ୟରେ ଯୋଗ, ଜ୍ଞାନ,ମନୋବଳ ଓ ରତି ତତ୍ତ୍ୱ ସୁନ୍ଦର ଭାବରେ ବୁଝାଇ ଦିଆଯାଏ ।

**ବାଚ୍ୟ** – କ୍ରିୟାପଦର ପ୍ରୟୋଜନାତ୍ମକ ଲକ୍ଷଣକୁ ବାଚ୍ୟ କୁହାଯାଏ । ଯେଉଁ ବାକ୍ୟରେ କର୍ତ୍ତା ଅନୁସାରେ କ୍ରିୟାର ପ୍ରୟୋଗ କରାଯାଏ ତାହା କର୍ତ୍ତୃ ବାଚ୍ୟର ବାକ୍ୟ ଏବଂ ଯେଉଁ ବାକ୍ୟରେ କର୍ମ ଅନୁସାରେ କ୍ରିୟା ପ୍ରୟୋଗ କରାଯାଏ ତାହା କର୍ମ ବାଚ୍ୟରେ ବାକ୍ୟ ।

ଯେ କୌଣସି ଶବ୍ଦର ମୁଖ୍ୟ ଅର୍ଥକୁ ବାଚ୍ୟାର୍ଥ କୁହାଯାଏ । ସ୍ୱରୂପରେ ବାଚ୍ୟାର୍ଥ ବିଧି ରୂପରେ କେବଳ ସ୍ୱାଭାବିକ ଅର୍ଥ ପ୍ରକାଶ କରିଥାଏ ।

**ବାଚିକ** – ଅଭିନୟର ଏକ ବିଭାଗ । ବାଚିକ ଅଭିନୟରେ ଅଭିନେତା ଓ ଅଭିନେତ୍ରୀମାନଙ୍କ ନାଟକୀୟ ସଂଳାପ ସଂପର୍କରେ କାର୍ଯ୍ୟକଳାପ ଅନ୍ତର୍ଭୁକ୍ତ । ଭରତମୁନି ବାଚିକ ଅଭିନୟକୁ ନାଟ୍ୟଶରୀର ବୋଲି ଆଖ୍ୟା ଦେଇଛନ୍ତି । ଅନ୍ୟ ଭାଷାରେ ଭଙ୍ଗୀ ବିଶିଷ୍ଟ ଯଥାର୍ଥ ଭାବଦ୍ୟୋତକ ସଂଳାପ ବିନ୍ୟାସର ନାମାନ୍ତର ବାଚିକ ଅଭିନୟ ।

**ବାଣୀ** – ନିର୍ଦ୍ଦିଷ୍ଟ ଲୋକପ୍ରିୟ ରାଗର ଅନୁସରଣରେ ରଚିତ ଗାନ । ଗୀତିକାରମାନେ ନିଜ ରଚନାକୁ ଗାଇବାରେ ରାଗ ନିର୍ଦ୍ଦେଶ ଏହିପରି ଦେଇଥାନ୍ତି । ବାଣୀ ରାଗଠାରୁ ଅଭିନ୍ନ ।

**ବାଦ** – ସାମାଜିକ ଆନ୍ଦୋଳନ ପରି ସାହିତ୍ୟିକ ଗତିଧାରାରେ ଦେଖାଦେଇଥାଏ କେତେ ମତାନ୍ତର । ନବ ପ୍ରବର୍ତ୍ତିତ ଚିନ୍ତାଧାରା ସାହିତ୍ୟ ରଚନା କ୍ଷେତ୍ରରେ ତାର ଶୈଳୀ, ଭାଷା, ଭାବ ଓ ବିଷୟରେ ପରିବର୍ତ୍ତନ ଆଣି ଏକ ନୂତନ ମତବାଦ ସୃଷ୍ଟି କରିଥାଏ, ତାହାକୁ ସାହିତ୍ୟରେ ବାଦ ବୋଲି କୁହାଯାଏ ।

**ବାତ୍ସଲ୍ୟ ରସ** – ଏଥିରେ ସ୍ଥାୟୀଭାବ ସନ୍ତାନ-ମୋହ (ବତ୍ସଳତା), ସନ୍ତାନ ସନ୍ତତି ଆଲମ୍ବନ । ସେମାନଙ୍କର ଚାଲି, ଗୁଲୁଗୁଲୁଆ କଥା, କାର୍ଯ୍ୟକଳାପ, ବିଦ୍ୟା ଓ କୃତିତ୍ୱ ଇତ୍ୟାଦି ଉଦ୍ଦୀପନ ବିଭବ । ଆଲିଙ୍ଗନ, ଅଙ୍ଗସ୍ପର୍ଶ, ଶିରଚୁମ୍ବନ, ସସ୍ନେହ ଦୃଷ୍ଟି, ରୋମାଞ୍ଚ ଓ ଆନନ୍ଦାଶ୍ରୁ ବର୍ଷଣ ଇତ୍ୟାଦି ଅନୁଭାବ । ହର୍ଷ, ଗର୍ବ, ଅନିଷ୍ଟ, ଶଙ୍କା ଓ ଔତ୍ସୁକ ଇତ୍ୟାଦି ସଞ୍ଚାରୀଭାବ ।

'ମୋ ପୁତ୍ର ମୋ ପୁତ୍ର' ବୋଲି ବାଳକକୁ
ଧରି କଲେ ଆଲିଙ୍ଗନ
ଆନନ୍ଦ ଜନିତ ଲୋତକେ ବେନିଙ୍କ
ତିନ୍ତିଗଲା ଅପଘନ ।

(ପ୍ରଣୟବଲ୍ଲରୀ)

**ବାସ୍ତବତା** – ବସ୍ତୁ ଓ ଘଟଣାର ନିଖୁଣ ଚିତ୍ରଣ । ଆଦର୍ଶ, ଅନ୍ଧବିଶ୍ୱାସ, କୁସଂସ୍କାର, କଳାପାଇଁ କଳାର ବିରୋଧାତ୍ମକ ତତ୍ତ୍ୱ । ବୈଜ୍ଞାନିକ ଉଦ୍‌ଭାବନ୍ ଜନିତ ବସ୍ତୁଗତ ତଥ୍ୟ, ଡାରଉଇନ୍‌ଙ୍କ ବିବର୍ତ୍ତନ ବାଦ, ଫ୍ରୟେଡ୍‌ଙ୍କ ମନସ୍ତତ୍ତ୍ୱ, ମାର୍କସ୍‌ଙ୍କ ସାମ୍ୟବାଦ ସମନ୍ୱିତ ରୂପ ହେଉଛି ବାସ୍ତବବାଦର ମୌଳିକ ତଥ୍ୟ । ଏହି ଦୃଷ୍ଟିରେ ଯଥାର୍ଥବାଦ ଓ ପ୍ରତ୍ୟକ୍ଷବାଦ ଆଦି ମତବାଦ ମଧ୍ୟ ରହିଚି । ବାସ୍ତବବାଦ ଏକ ସ୍ୱତନ୍ତ୍ର ମତବାଦ ନୁହେଁ । ସମାଜ ଓ ବ୍ୟକ୍ତି ଜୀବନର ବାସ୍ତବ ରୂପରେଖ ଓ ମନସ୍ତାତ୍ତ୍ୱିକ ଦିଗରେ ବାସ୍ତବତା ସ୍ଥାନ ନିରୂପଣ କରାଯାଇପାରେ ।

**ବାସ୍ତବ ବାଦ** – ବାସ୍ତବ ବାଦକୁ ଦର୍ଶନ ଶାସ୍ତ୍ରର ଏକ ଶବ୍ଦ ରୂପରେ ଗ୍ରହଣ କରାଯାଏ । ଦର୍ଶନ ଶାସ୍ତ୍ରରେ ଏହି ଶବ୍ଦଟିକୁ ନୋମିନାଲଇଜିମ୍ ବା ଆଇଡ଼ିଆଲ୍‌ଜିମ୍ କୁହାଯାଏ । ଦର୍ଶନଶାସ୍ତ୍ରରେ ଏହା ଦିନେ ବସ୍ତୁବାଦର ପରିଭାଷା ରୂପେ ବ୍ୟବହୃତ ହେଉଥିଲା । ମାତ୍ର ଏହି ଶବ୍ଦଟି ଯେତେବେଳେ ଏହା ବାହ୍ୟବସ୍ତୁ ସମ୍ବନ୍ଧିତ ଅର୍ଥରେ ହିଁ ବ୍ୟବହୃତହେଲା ମୁଖ୍ୟତଃ ବସ୍ତୁ ଜଗତର ବାହ୍ୟରୂପକୁ ଯେଉଁ ସାହିତ୍ୟରେ ଉପସ୍ଥାପିତ କରାଗଲା, ତାହାକୁ ବାସ୍ତବବାଦୀ ସାହିତ୍ୟ ଭାବରେ ଗ୍ରହଣ କରାଗଲା । ଏ ଧରଣର ସାହିତ୍ୟରେ ବାସ୍ତବଜୀବନ ଓ ବସ୍ତୁ ଜଗତର ବାହ୍ୟରୂପ ପ୍ରକାଶ ପାଇବାକୁ ଲାଗିଲା । ବାସ୍ତବବାଦ (କ) ବିଷୟଗତ

ବାସ୍ତବବାଦ (ଖ) ମନୋବୈଜ୍ଞାନିକ ବାସ୍ତବବାଦ (ଗ) ଐତିହାସିକ ବାସ୍ତବବାଦ (ଘ) ଅର୍ଥନୀତିକ ବାସ୍ତବବାଦ (ଙ) ସମାଜବାଦୀ ବାସ୍ତବବାଦ (ଚ) ଆଦର୍ଶବାଦୀ ବାସ୍ତବବାଦ ଭାବରେ ସାହିତ୍ୟରେ ପ୍ରକଟିତ ହୋଇଥାଏ ।

**ବାସ୍ତୁଶାସ୍ତ୍ର** – ବାସ୍ତୁର ଅର୍ଥ ବାସସ୍ଥାନ । ଏହାର ଗଠନ ବିଷୟକ ଜ୍ଞାନ ପ୍ରତିବାଦକ ଶାସ୍ତ୍ରକୁ ବାସ୍ତୁଶାସ୍ତ୍ର କୁହାଯାଏ । ତେବେ ଗୃହ, ଗ୍ରାମ, ପ୍ରାସାଦ, ସହର ଆଦି ନିର୍ମାଣ, ଜଳାଶୟ, କୂପ, ମୂର୍ତ୍ତି, ମନ୍ଦିର ଇତ୍ୟାଦି ଏହାର ପରିସରଭୁକ୍ତ ।

**ବ୍ୟାକରଣ** – ଯେଉଁ ବିଦ୍ୟାଦ୍ୱାରା କୌଣସି ଭାଷାକୁ ବିଶ୍ଳେଷଣ କରି ତାହାର ଧ୍ୱନିତତ୍ତ୍ୱ, ଶବ୍ଦ ତତ୍ତ୍ୱ ଓ ବାକ୍ୟତତ୍ତ୍ୱ ଆଲୋଚନା କରାଯାଏ, ସେହି ବିଦ୍ୟାକୁ ବ୍ୟାକରଣ କୁହାଯାଏ ।

**ବ୍ୟାଖ୍ୟା** – ସରଳ, ବୋଧଗମ୍ୟ ଭାଷାରେ ଧର୍ମ, ଦର୍ଶନ, ତତ୍ତ୍ୱର ଗୂଢ଼ ଅର୍ଥକୁ ପ୍ରକାଶ କରିବା ହିଁ ବ୍ୟାଖ୍ୟା ଭାବରେ ଆଖ୍ୟାୟିତ । ସଂକ୍ଷିପ୍ତତାରୁ ବ୍ୟାପ୍ତି, କ୍ଲିଷ୍ଟତାରୁ ସରଳତା, ନିର୍ଦ୍ଦିଷ୍ଟ ଘଟଣାର ପୂର୍ବାପର ସୂଚନା ସମ୍ବଳିତ ବିଶଦ ବର୍ଣ୍ଣନାକୁ ବ୍ୟାଖ୍ୟା କୁହାଯାଏ ।

**ବ୍ୟାହାତାର୍ଥତା** – ଏହା ଅର୍ଥଦୋଷର ଅନ୍ତର୍ଗତ । ପ୍ରସଙ୍ଗକ୍ରମେ କୌଣସି ବିଷୟରେ କୁହାଯାଇଥିବା କଥାର ବିରୋଧ କଲାଭଳି ଯଦି କିଛି ପରେ କୁହାଯାଏ ତେବେ ସେଠାରେ ବ୍ୟାହତାର୍ଥତା ଦୋଷ ହୁଏ । ଉଦାହରଣ

ଶୁଣ ଶୁଣ ଆରେ ପ୍ରାଣ ସହି
ମୋ ମନ କଥା ନଜାଣୁ ତୁହି
ଚନ୍ଦ୍ରବଦନୀ କି କିପରି ବର୍ଣ୍ଣିବି
ଛଳନା ତ ତାର କାହିଁ ନାହିଁ ।

**ବ୍ୟାଜସ୍ତୁତି** – ନିନ୍ଦା ଓ ସ୍ତୁତି ବର୍ଣ୍ଣନାର ତାତ୍ପର୍ଯ୍ୟ ପରିଶେଷରେ ଯଥାକ୍ରମେ ସ୍ତୁତି ଓ ନିନ୍ଦାରେ ପରିଣତ ହେଲେ ବ୍ୟାଜସ୍ତୁତି ଅଳଙ୍କାର ହୁଏ ।

ସ୍ତୁତିରୁ ନିନ୍ଦା - ଛାୟାଦାନେ ଦକ୍ଷ ଯହିଁ ନାଗଫେଣି
ନୀରଜାତେ ପୁଣି ମରୀଚିକା ବେଣୀ ।

ନିନ୍ଦାରୁ ସ୍ତୁତି - ମନ୍ତ୍ର ଜାଣିବା ଲୋକେ ବଶ ହୁଅନ୍ତି ସବୁ ଆଶୀବିଷ
ମନ୍ତ୍ରଧୀନ ତୁମ୍ଭେ ବଞ୍ଚାଇ ଅଛ ଦମ୍ଭେ
ଭୁଜଙ୍ଗ ନୁହଁ ଆଉ କିସ ହେ ମହାବାହୁ । (କବିତା କଲ୍ଲୋଳିନୀ)

**ବ୍ୟାଜୋକ୍ତି** – ଯେଉଁଠାରେ ଅନ୍ୟ ଗୋଟିଏ କାରଣ ଦେଖାଇ ପ୍ରକୃତ ଗୋପନୀୟ ବିଷୟବସ୍ତୁ ଘୋଡ଼ାଇ ପକାଇବା ପାଇଁ ଯେଉଁ ଚେଷ୍ଟା ବର୍ଣ୍ଣିତ ହୁଏ, ସେଠାରେ ବ୍ୟାଜୋକ୍ତି ଅଳଙ୍କାର ହୁଏ ।

ସଖୀଙ୍କ ସଙ୍ଗରେ ଚାଲିବାକୁ ବାଳା
ପାଦରେ ନଥିଲା ଶକ୍ତି
ଚାହିଁ ଚାହିଁ ଦୃଷ୍ଟି ଆକର୍ଷିତ ହେଲା
ପୁନଶ୍ଚ ନୃପତି ପ୍ରତି ।

**ବ୍ୟାଘାତ ଅଳଙ୍କାର** – ସ୍ୱପକ୍ଷ ସମର୍ଥନ ପାଇଁ ଉପଯୋଗୀ ହେଲେ ବ୍ୟାଘାତ ଅଳଙ୍କାର ହୁଏ ।

ଯେବେ ପ୍ରିୟତମା ବୋଲି ଭଜି ପ୍ରାଣେଶ୍ୱର
ଆଦେଶୁଛ ରହିବାକୁ ଗୃହେ ନିରନ୍ତର ।

**ବ୍ୟାୟୋଗ** – ପ୍ରାଚୀନ ସାହିତ୍ୟ ତତ୍ତ୍ୱରେ 'ରୂପକ' ର ଏକ ରୂପ । ଏଥିରେ ପ୍ରସିଦ୍ଧ ପୌରାଣିକ କଥାବସ୍ତୁ, ଗର୍ଭ ଓ ବିମର୍ଶ ରହିତ ଏକ ସନ୍ଧି, ଧୀରୋଦାତ୍ତ ନାୟକ, ଏକ ଅଙ୍କ, ହାସ୍ୟ ଓ ଶୃଙ୍ଗାର ବ୍ୟତୀତ ଛଅ ରସ, ସାତ୍ତ୍ୱକୀ ଓ ଆରଭଟୀ ବୃତ୍ତିର ପରିଚ୍ଛନ୍ନତା କରାଯାଏ । ଏଥିରେ ଗୋଟିଏ ଦିନର ଘଟଣା ବର୍ଣ୍ଣିତ ହୁଏ ଏବଂ ଯୁଦ୍ଧର ବର୍ଣ୍ଣନା କରାଯାଏ । କିନ୍ତୁ ଯେକୌଣସି ନାରୀକୁ କେନ୍ଦ୍ର କରି ଯୁଦ୍ଧର ବର୍ଣ୍ଣନା କରାଯାଏ ନାହିଁ ।

**ବ୍ୟାସକବି** – ଫକୀର ମୋହନ ସେନାପତିଙ୍କୁ ବ୍ୟାସକବି କୁହାଯାଏ । ଆଦ୍ୟ କଥାକାର ଏବଂ ଓଡ଼ିଆ ଗଳ୍ପ ଉପନ୍ୟାସର ଜନକ ଭାବରେ କୁହାଗଲେ ବି ସେ ବ୍ୟାସକବି ଭାବେ ଆଖ୍ୟାୟିତ । ଫକୀର ମୋହନ ସେନାପତି ୧୮୪୩ ମସିହା ଜାନୁଆରୀ ୨୪ ତାରିଖ ମକରସଂକ୍ରାନ୍ତିରେ ବାଲେଶ୍ୱର ଜିଲ୍ଲାର ମଲ୍ଲିକାଶପୁରରେ ଜନ୍ମ ଗ୍ରହଣ କରିଥିଲେ । ଫକୀର ମୋହନଙ୍କ ବାପାଙ୍କ ନାମ ଲକ୍ଷ୍ମଣ ଚରଣ ସେନାପତି ଓ ମାତାଙ୍କ ନାମ ତୁଳସୀ ଦେବୀ । ଫକୀର ମୋହନ ସମ୍ବାଦବାହିକା, ବୋଧଦାୟିନୀ ନାମକ ଦୁଇଟି ପତ୍ରିକା ପ୍ରକାଶ କରୁଥିଲେ । ଛ'ମାଣ ଆଠଗୁଣ୍ଠ, ମାମୁଁ, ଲଛମା, ପ୍ରାୟଶ୍ଚିତ, ପ୍ରଭୃତି ଉପନ୍ୟାସ ଓ ଗଳ୍ପସ୍ୱଳ୍ପ ଇତ୍ୟାଦି ତାଙ୍କର ଅମ୍ଳାନ କୃତି । ଫକୀର ମୋହନ ୧୯୧୮ ମସିହା ଜୁନ୍ ୧୪ ତାରିଖରେ ପ୍ରାଣତ୍ୟାଗ କରିଥିଲେ ।

**ବିକଳ୍ପ ଅଳଙ୍କାର** – ଯେଉଁ କାର୍ଯ୍ୟରେ ଅଭିଷ୍ଟ ଅଥବା ଅନିଷ୍ଟ ସିଦ୍ଧି ଏହି ଦୁଇଟିରୁ ଗୋଟିଏ ଘଟିବା ନିଶ୍ଚିତ, ସେହିପରି କାର୍ଯ୍ୟ ଓ ଚିନ୍ତା ବର୍ଣ୍ଣିତ ହେଲେ ବିକଳ୍ପ ଅଳଙ୍କାର ହୁଏ ।

ଅଙ୍ଗକ୍ଷୟ ଅବା ଜେମା ଅଙ୍ଗ ସଙ୍ଗ
ଇଲାଟି ଲିପି ମୋହର
ବଜ୍ର ପଡୁ ମୁଣ୍ଡେ ବାରି ଅବା ତୁଣ୍ଡେ
ମେଘ ଗତି ଚାତକର ।

(ଯଯାତି)

**ବିକସ୍ୱର** – ଯେଉଁଠାରେ ଗୋଟିଏ ବିଶେଷ ବିଷୟ ଦ୍ୱାରା ସମର୍ଥିତ ହୁଏ, ପୁଣି ସେହି ସାମାନ୍ୟ ବିଷୟ ଅନ୍ୟ ଗୋଟିଏ ବିଷୟବସ୍ତୁ ଦ୍ୱାରା ସମର୍ଥିତ ଲାଭ କରେ, ସେଠାରେ ବିକସ୍ୱର ଅଳଙ୍କାର ହୁଏ ।

ଭାଗ୍ୟବାନ ସଦା    ଭାଗ୍ୟଫଳ ଲୋଭେ
ଅଭଗା ଲଭେ ଅଶିବ
ସାଗର ମନ୍ଥନେ    କେଶବକମଳା
ଲଭିଲେ ଶିବ ।

**ବିକୃଷ୍ଟ** – ପ୍ରାଚୀନ କାଳରେ ମୁକ୍ତ ଆକାଶ ତଳେ ନିର୍ମିତ ଆକାରରେ ବଡ଼ ଓ ବିସ୍ତୃତ ପ୍ରେକ୍ଷା ଗୃହକୁ ବିକୃଷ୍ଟ କୁହାଯାଏ । ଏଥିରେ ଦେବତା ସମ୍ବନ୍ଧୀୟ ବିଭିନ୍ନ ଦୃଶ୍ୟ ପ୍ରଦର୍ଶିତ ହେଉଥିଲା ।

**ବିଗଠନ** – ସଂରଚନାବାଦର ତତ୍ତ୍ୱକୁ ଚରମ ବିଶ୍ଳେଷଣର ସୋପାନକୁ ନେଇ ଏକ ନୂତନ ଦୃଷ୍ଟିଭଙ୍ଗୀ ଓ ଅନୁସନ୍ଧିତ୍ସାର ଅଭ୍ୟୁଦୟ ଘଟିଥିଲା ଉତ୍ତର ସଂରଚନାବାଦ ଭିତରେ । ଇଂରାଜୀରେ ଯାହାକୁ *deconstruction* କୁହାଯାଉଛି । ଓଡ଼ିଶାରେ ପ୍ରତିବିନ୍ୟାସ, ବିଘଟନ, ଅଗଠନ, ବିଗଠନ, ବିନିର୍ମାଣ ଆଦି ଶବ୍ଦ ଡିକନ୍‌ଷ୍ଟ୍ରକ୍‌ସନ୍‌ର ପ୍ରତଶବ୍ଦ ଭାବରେ ବ୍ୟବହାର କରାଯାଉଅଛି । ପ୍ରତିଟି ବିଧି ବ୍ୟବସ୍ଥାର କେନ୍ଦ୍ର ବା ଭିତ୍ତିକୁ ପ୍ରଶ୍ନ କରିବା ବିଗଠନର ମୂଳ ମନ୍ତ୍ର । ବିଗଠନ ସହ ସଂପର୍କିତ ମୁଖ୍ୟ ଦାର୍ଶନିକ ଜାକ୍ ଡେରିଡ଼ାଙ୍କ ମତରେ ପାରମ୍ପରିକ ଦାର୍ଶନିକ ଯୁକ୍ତି ଓ ପରିଭାଷାରେ ପରସ୍ପର ବିରୋଧାଭାସ ନିହିତ । ଗୋଟିଏ ମତ ଉର୍ଦ୍ଧ୍ୱ ସୋପାନରେ ହେଲେ ଆଉ ଗୋଟିଏ ମତ ନିମ୍ନ ସୋପାନରେ ବୋଲି ବିବେଚନା କରାଯାଏ । ଏହି ଉଚ୍ଚ ନୀଚ ଶ୍ରେଣୀ ସୋପାନକୁ ଅଦଳବଦଳ କରିବା ବା ଓଲଟାଇବା ବିଗଠନର କାର୍ଯ୍ୟ । ଚିନ୍ତାରାଜ୍ୟରେ ଧାରଣା ସଂପର୍କିତ ଗତାନୁଗତିକ ଶ୍ରେଣୀ ସୋପାନକୁ ପ୍ରତିକୂଳ ଗତିରେ ବିନ୍ୟସ୍ତ କରିବା ବିଗଠନର ଏକ ମୁଖ୍ୟ ଦିଗ । ଡେରିଡାଙ୍କ ବିଗଠନ ଉତ୍ତର ସଂରଚାନାବାଦର ମୁଖ୍ୟ ଉପାଦାନ ।

**ବିନ୍ଦୁ** – ନାଟକୀୟ ମୁଖ୍ୟ କଥାର ପୁଷ୍ଟିସାଧକ ଅବାନ୍ତର କଥାଟିଏ ହେଲେ ମଧ୍ୟ ଯେଉଁ ଘଟଣା ପ୍ରଧାନ କଥା ସହିତ ଏହାକୁ ଯୋଡ଼ିଦିଏ ଏବଂ ଯାହାଯୋଗୁଁ ଏହା ଯୋଡ଼ିହୁଏ ତାହାର ନାମ 'ବିନ୍ଦୁ' । ପାଣି ଉପରେ ତେଲ ବିନ୍ଦୁଟିଏ ପଡ଼ିଲେ ଏହା ଯେପରି ବ୍ୟାପିଯାଏ, ସେହିପରି ଏକ ବିନ୍ଦୁ ନାଟକରେ ପରିବ୍ୟାପ୍ତ ହୋଇ ରହିଥାଏ ।

**ବିଚିତ୍ର ମାର୍ଗ** – ବହୁ କଷ୍ଟ କଳ୍ପନା, ପାଣ୍ଡିତ୍ୟପ୍ରକର୍ଷ ଓ ବିଶେଷ କରି ଶବ୍ଦାଡମ୍ବର ପୂର୍ଣ୍ଣ ଶବ୍ଦାଳଙ୍କାର ମାନଙ୍କର ବହୁଳ ପ୍ରୟୋଗ କରି ଯେଉଁ କବିମାନେ ନିଜର କାବ୍ୟ ଗୌରବ

ପ୍ରତିଷ୍ଠା କରିବା ପାଇଁ ଚେଷ୍ଟିତ ସେମାନଙ୍କର ଲିଖନ ରୀତିକୁ ବିଚିତ୍ର ମାର୍ଗ କୁହାଯାଏ ।

**ବିଶେଷ ଅଳଙ୍କାର** – ଅଧାର ନଥାଇ ଆଧେୟ ବର୍ଣ୍ଣିତ ହେଲେ ଅଥବା ଗୋଟିଏ ଆଧେୟର ଅନେକ ଆଧାର ବର୍ଣ୍ଣିତ ହେଲେ ବିଶେଷ ଅଳଙ୍କାର ହୁଏ ।

**ବିଶେଷୋକ୍ତି** – କାରଣ ଥିଲେ ମଧ୍ୟ କାର୍ଯ୍ୟୋତ୍ପତ୍ତି ର ଅଭାବ ବର୍ଣ୍ଣିତ ହେଲେ ବିଶେଷୋକ୍ତି ଅଳଙ୍କାର ହୁଏ ।

ଶାସ୍ତ୍ର ଜ୍ଞାନେ ସହେ ଜଡ଼ ଅନ୍ଧ ଚକ୍ଷୁଥାଇ
ହେଲେ ହେଁ ଜାଗ୍ରତ ନିଦ୍ରା ଅଭିଭୂତ
ଦରାଣ୍ଡି ହୁଅନ୍ତି ଆହା, ମହାଘୋର ତମେ
ଦୀପ ସହେ ସମତାର ଦୁଃଛେଦ୍ୟ ବନ୍ଧନ ।

**ବିରୋଧାଭାସ** – ଯେ କୌଣସି ବର୍ଣ୍ଣନାରେ ବ୍ୟବହୃତ ହୋଇଥିବା ଶବ୍ଦାର୍ଥ ଦେଖିବା ସମୟରେ ଆପାତତଃ ପରସ୍ପର ବିରୋଧୀ ପରି ଜଣାପଡୁଥିଲେ ମଧ୍ୟ ଯଦି ବାସ୍ତବରେ ସେହି ଅର୍ଥରେ କୌଣସି ବିରୋଧଭାବ ନଥାଏ, ତେବେ ସେଠାରେ ବିରୋଧଭାସ ଅଳଙ୍କାର ହୁଏ ।

'ତରଣୀର ଗତି ସ୍ଖଳିତ ହୋଇଲା, ବଢ଼ିଲା ତରଣି-ଗତି
ଜୀବନ ଛାଡ଼ନ୍ତେ ଛଳିନଆବଳୀ ହୋଇଲା .........

**ବିଭକ୍ତି** – ଯେଉଁ ବର୍ଣ୍ଣର ବା ବର୍ଣ୍ଣ ସମଷ୍ଟିର ସଂଯୋଗରେ କିଛି ପରବର୍ତ୍ତନ ସାଧିତ ହୁଏ, ତାହାକୁ ବିଭକ୍ତି ବୋଲାଯାଏ । ବିଭକ୍ତି ଦ୍ୱିବିଧ ଯଥା - ଶବ୍ଦ-ବିଭକ୍ତି ଓ ଧାତୁ-ବିଭକ୍ତି । ଯାହା ଦ୍ୱାରା ସଂଖ୍ୟା ଓ କାରକର ପ୍ରତୀତି ଜନ୍ମେ ତାହାକୁ ବିଭକ୍ତି ବୋଲାଯାଏ । ବିଭକ୍ତି ସାତ ପ୍ରକାର ଯଥା - ପ୍ରଥମା, ଦ୍ୱିତୀୟା, ତୃତୀୟା, ଚତୁର୍ଥୀ, ପଞ୍ଚମୀ, ଷଷ୍ଠୀ ଓ ସପ୍ତମୀ ।

**ବିଭାବ** – ଯେଉଁସବୁ କାରଣରୁ ଭାବ ଚିତ୍ତରେ ସ୍ଥାୟୀ ହୁଏ; ତାହକୁ ବିଭାବ କହନ୍ତି । ବିଭାବକୁ ଦୁଇ ଭାଗରେ ବିଭକ୍ତ କରାଯାଇପାରେ (୧) ଆଲମ୍ୱନ (୨) ଉଦ୍ଦୀପନ । କୌଣସି ରମଣୀକୁ ଦେଖି ଚିତ୍ତରେ ପ୍ରେମ ଭାବ ଜାତ ହେଲେ ତାହା ଆଲମ୍ୱନ ବିଭବ ହୁଏ ।

**ବିଭାବନା** – କାରଣ ବିନା କାର୍ଯ୍ୟୋତ୍ପତ୍ତି ବର୍ଣ୍ଣିତ ହେଲେ ବିଭାବନା ଅଳଙ୍କାର ହୁଏ ।

ନୁହେଁ ଚନ୍ଦ୍ରକର କରେ ଆହ୍ଲାଦ
ଅମୃତ ନୁହେଁ ସେ ତହୁଁ ସୁଆଦ
ଚିନ୍ତା ନୁହେଁ ଜାତ କରେ ବିଷାଦ
ବଢ଼ାଏ ଗରବ ନୁହେଁ ସମ୍ପଦ ।

**ବିଭାବନା ଅଳଙ୍କାର–** ବିନାକାରଣରେ କାର୍ଯ୍ୟର ଉତ୍ପତ୍ତି ହୋଇଥିଲେ ବିଭାବନା ଅଳଙ୍କାର ହୋଇଥାଏ । ବିଭାବନା ଅର୍ଥ ହେଉଛି କାରଣର ବିଚାର ।

ଅନଳ ନୁହଁଇ ଦେହ ଦହଇ
ଅସ୍ତ୍ର ନୁହଇ ମରମ ଭେଦଇ
ନୁହଇ ତ ଜଳ ବୁଡ଼ାଏ କୁଳ
ନୁହଇ ମାଦକ କରେ ବିହ୍ୱଳ
ନୁହଇ  ବଡ଼ଶୀ ଗୋ
ଜଳେ ମୀନ-ମନ ନିଏ ଆକର୍ଷି । (ବିଦଗଧ୍ ଚିନ୍ତାମଣି)

**ବିଭାସକେଦାର ବୃତ୍ତ –** ବିଭାସକେଦାର ବୃତ୍ତର ପ୍ରତି ପଦ ଦୁଇପାଦ ବିଶିଷ୍ଟ । ପ୍ରତ୍ୟେକ ପାଦରେ ବାରଟି ଲେଖାଏଁ ଅକ୍ଷର ଥାଏ ଓ ଏହାର ଷଷ୍ଠ ଓ ଶେଷ ଅକ୍ଷର ଉପରେ ଯତିପାତ ହୁଏ ।

ଐତିହାସିକ ଏ' ଦୁର୍ଗ ବାରବାଟୀ
ବୀରରକ୍ତ ପିଣ୍ଡେ ଗଢ଼ାଯାଉ ମାଟି ।

**ବିମର୍ଶ –** ନାଟକର ପଞ୍ଚଅର୍ଥ ପ୍ରକୃତି ସହିତ ନିର୍ଦ୍ଦିଷ୍ଟ ଅବସ୍ଥାର କଳାତ୍ମକ ସଂଯୋଗକୁ ସନ୍ଧି କୁହାଯାଏ । ଯେଉଠି ନାଟକୀୟ ଉଦ୍ଦେଶ୍ୟ ସିଦ୍ଧିପାଇଁ ଗୃହୀତ ଉପାୟର ବିଶେଷ ବିକାଶ ସାଧିତ ହୁଏ, କିନ୍ତୁ ତାହାକୁ ବିଭିନ୍ନ ବାଧାବିଘ୍ନ ମଧ୍ୟ ଦେଇ ଗତି କରିବାକୁ ପଡ଼େ ସେଠାରେ 'ବିମର୍ଶ' ସନ୍ଧି ହୁଏ । 'ବିମର୍ଶ' ମାନେ ବିଚାର । ଏଥିରେ ଫଳପ୍ରାପ୍ତି ପାଇଁ ପର୍ଯ୍ୟାପ୍ତ ପର୍ଯ୍ୟାଲୋଚନାର ସୁଯୋଗ ସୃଷ୍ଟି କରାଯାଏ ।

**ବିରାମ ଚିହ୍ନ –** ବାକ୍ୟର ଭାବ ଓ ଭାଷାକୁ ସଠିକ ଭାବରେ ପରିପ୍ରକାଶ ପାଇଁ ଯେଉଁ ଚିହ୍ନ ବ୍ୟବହାର କରାଯାଏ ତାହାକୁ ବିରାମ ଚିହ୍ନ କହନ୍ତି । ଓଡ଼ିଆରେ ୯ ପ୍ରକାର ବିରାମ ଚିହ୍ନ ଅଛି ଯଥା - କମା ବା ପ୍ରଥମ ଛେଦ (,), ସେମିକୋଲନ ବା ଦ୍ୱିତୀୟ ଛେଦ (;), କୋଲନ ବା ମଧ୍ୟଛେଦ (:), ପୂର୍ଣ୍ଣଛେଦ (.) ପ୍ରଶ୍ନବାଚକ ଚିହ୍ନ ( ?), ବିସ୍ମୟସୂଚକ ଚିହ୍ନ ( !), ବ୍ୟବଚ୍ଛେଦ ଚିହ୍ନ ବା ଡ୍ୟାସ (-), ଉଦ୍ଧାର ଚିହ୍ନ ('' ''), ସମାନ ଚିହ୍ନ (=),

**ବିରାଟ ରୂପ –** ମହାଶୂନ୍ୟରେ ବିରାଟଙ୍କ ଆସ୍ଥାନ । ବିରାଟ ହିଁ ଅରୂପ ବ୍ରହ୍ମ । ସୃଷ୍ଟିର ପ୍ରାକ୍ କାଳରେ ଏକମାତ୍ର ଥିଲେ ବିରାଟ । ବିରାଟଙ୍କ ମନରେ ସୃଷ୍ଟି ରଚନା ନିମିତ୍ତ 'ହେତୁ' ହେବାରୁ ସେ ଶୂନ୍ୟରୁ ବିନ୍ଦୁ ଛାଡ଼ିଲେ ଓ ସେ ବିନ୍ଦୁର ସମଗ୍ର ସୃଷ୍ଟି ହେଲା । ଏହି ଗୋଟିଏ ବିନ୍ଦୁରୁ ହେଲା କୋଟି କୋଟି ସୃଷ୍ଟି । ବିରାଟ ରୂପ ସୃଷ୍ଟି ତତ୍ତ୍ୱର ମୂଳକଥା ।

**ବିରୋଧାଭାସ ଅଳଙ୍କାର** – ଗୁଣ, ଦ୍ରବ୍ୟ, କ୍ରିୟା ତଥା ଜାତିବାଚକ ପଦାର୍ଥର ଆପାତତଃ ବିରୋଧ ଦେଖାଗଲେ ବିରୋଧାଭାସ ଅଳଙ୍କାର ହୋଇଥାଏ । ବିଚାରକରି ଦେଖିଲେ ବିରୋଧାଭାସ ଦୂର ହୋଇଥାଏ । ଉଦାହରଣ -

ଶୀତଳ ହେମ ଦାମ ଘନ ଜଘନେ
ପିନ୍ଧିଲେ ମନସିଜ ତାପ ମୋଚନେ

**ବିରୂପା** – ବିରୂପା ଆଚାର୍ଯ୍ୟ ଜାଳନ୍ଧରୀପାଦଙ୍କ ଶିଷ୍ୟ ଥିଲେ । ସେ ଓଡ଼ିଶାରେ ଆସିଆ ପାହାଡ଼ ଶ୍ରେଣୀକୁ ପରିବେଷ୍ଟନ କରିଥିବା ବିରୂପା ନଦୀ ତୀରସ୍ଥ ଏକ ଗ୍ରାମରେ ବାସ କରୁଥିଲେ । ତାରାନାଥଙ୍କ ଅନୁସାରେ ଶୈବ ଉପାସନା ପ୍ରତି ତାଙ୍କର ଘୃଣାଭାବ ଥିଲା ଓ ସେ ଏହା ବିରୋଧରେ ପ୍ରଚାର ଚଳାଇଥିଲେ । 'ତାଙ୍ଗୁର' ରେ ତାଙ୍କ କୃତ ଅନ୍ୟୂନ ଦଶଟି ତାନ୍ତ୍ରିକ ଗ୍ରନ୍ଥର ନାମୋଲ୍ଲେଖ ଦେଖିବାକୁ ମିଳେ । ଚର୍ଯ୍ୟାଗୀତିକାସ୍ଥ ୩ୟ ଗୀତିଟି ବିରୂପାଙ୍କ ଦ୍ୱାରା ରଚିତ ।

**ବିଶେଷଣ** – ଯେଉଁ ପଦ ଅନ୍ୟ ପଦର ଗୁଣ, ଅବସ୍ଥା, ସଂଖ୍ୟା, ପରିମାଣ ଇତ୍ୟାଦି ପ୍ରକାଶ କରେ, ତାହାକୁ ବିଶେଷଣ କହନ୍ତି । ବିଶେଷଣ ଦୁଇ ଭାଗରେ ବିଭକ୍ତ - (୧) ନାମ ବିଶେଷଣ (୨) ଭାବ ବିଶେଷଣ ।

**ବିଶେଷ୍ୟ** – ଯେଉଁ ପଦ କୌଣସି ନାମକୁ ପ୍ରକାଶ କରେ ତାହାକୁ ବିଶେଷ କହନ୍ତି । ବିଶେଷ୍ୟ ପାଞ୍ଚ ପ୍ରକାର ଯଥା - ବସ୍ତୁ ବାଚକ, ଗୁଣ ବା ଅବସ୍ଥା ବାଚକ, ବ୍ୟକ୍ତି ବାଚକ, ଭାବ ବାଚକ, କ୍ରିୟା ବାଚକ ।

**ବିଷୟାଶ୍ରୟ (Objective correlative)** – ପରସ୍ପର ସମ୍ବନ୍ଧଯୁକ୍ତ ବିଷୟ ବା ବସ୍ତୁ । ଆଧୁନିକ କବିତାର ଏକ ତଥ୍ୟ । କବି ଟି.ଏସ. ଇଲିଅଟ୍ ଏହି ତଥ୍ୟର ନିୟାମକ । ତାଙ୍କ ମତରେ କବିର ଆବେଗକୁ କଳାରେ ପ୍ରକାଶ କରିବାର ଏକମାତ୍ର ଉପାୟ ହେଉଛି ବିଷୟାଶ୍ରୟ ଅର୍ଥାତ୍ ପରସ୍ପର ସମ୍ବନ୍ଧଯୁକ୍ତ ଗୁଡ଼ିଏ ବସ୍ତୁ, ଏକ ପରିସ୍ଥିତି; ଗୁଡ଼ିଏ ଘଟଣା । ଏହି ସମସ୍ତ ସେହି ବିଶିଷ୍ଟ ଆବେଗ ପ୍ରକାଶର ସୂତ୍ର ।

**ବିଷ୍କମ୍ଭକ**– ପ୍ରାଚୀନ ସାହିତ୍ୟ ତତ୍ତ୍ୱରେ ଧାରାବାହିକ ଗତିରେ ଚାଲିଥିବା ମୁଖ୍ୟ କଥାବସ୍ତୁର ଯେଉଁ ଗୌଣ ଘଟଣାଗୁଡ଼ିକ ପ୍ରଦର୍ଶିତ ନ ହୋଇ ଅତୀତ ହୋଇଗଲାଣି ଏବଂ ଯାହା ଭବିଷ୍ୟତରେ ଘଟିବ ସେହି ଦ୍ୱିବିଧ ଘଟଣାବଳୀର ନାଟକୀୟ ସୂଚନାକୁ ବିଷ୍କମ୍ଭକ କୁହାଯାଏ ।

**ବିଷମ ଅଳଙ୍କାର** – କାର୍ଯ୍ୟ ଓ କାରଣର ଗୁଣ ତଥା କ୍ରିୟା ବିରୁଦ୍ଧ ରୂପେ ବର୍ଣ୍ଣିତ ହେଲେ ଅଥବା ପରିସ୍ଥିତି ବର୍ଣ୍ଣନାରେ ବିରୁଦ୍ଧଭାବ ଦ୍ୟୋତକ ହେଲେ ଏହି ଅଳଙ୍କାର ହୁଏ

କ୍ଷଣେ ଯାଉନାହିଁ ମନୁ
କାଳିଆ କାହ୍ନୁକର ତନୁ
ଆଲୋକ କଲା ତା ଉଜ୍ୱଳ
ଏବନ ସ୍ଥଳ ଗୋ ।

**ବିଲଙ୍କା ରାମାୟଣ** – ବିଲଙ୍କା ରାମାୟଣ ସାରଳା ଦାସଙ୍କର ପ୍ରଥମ ରଚନା । ଶିବ ପାର୍ବତୀଙ୍କ କଥୋପକଥନ ଛଳରେ ସମଗ୍ର ଗ୍ରନ୍ଥଟିର କଥାବସ୍ତୁ ପରିକଳ୍ପିତ । ଲଙ୍କାର ରାଜା ଦଶାନନ ରାବଣକୁ ବଧ କରିବାର ପ୍ରଶଂସାକୁ ସୀତା ଘୋର ପ୍ରତିବାଦ କରି କହନ୍ତି ଯେ ଲଙ୍କା ବିଜୟର ଗୌରବ ରାମଚନ୍ଦ୍ରଙ୍କର ନୁହେଁ, ସୀତାଙ୍କ ଦ୍ୱାରା ସମ୍ଭବ ହୋଇପାରିଛି । ତେଣୁ ରାମଚନ୍ଦ୍ର ଯଦି ବିଲଙ୍କାର ସହସ୍ରଶିର ରାବଣକୁ ବଧ କରିପାରିବେ ତେବେ ଯାଇ ଗୌରବ ପାଇଁ ଦାବି କରିପାରିବେ । ତେଣୁ ସୀତାଙ୍କ ଆହ୍ୱାନକୁ ଗ୍ରହଣ କରି ରାମଚନ୍ଦ୍ର ବିଲଙ୍କାର ରାବଣକୁ ସଂହାର କରିବା ପାଇଁ ବାହାରିଛନ୍ତି ।  ଯୁଦ୍ଧ ହୋଇଛି । ସକଳ ଚେଷ୍ଟା ସତ୍ତ୍ୱେ ସହସ୍ରଶିର ନିହତ ନହେବାରୁ ରାମଚନ୍ଦ୍ର ହତୋତ୍ସାହ ହୋଇପଡ଼ିଛନ୍ତି । ଦେବତାମାନେ ପରାମର୍ଶ ଦେଇଛନ୍ତି ସତୀ ଶିରୋମଣୀ ସୀତାଙ୍କ ସାହାଯ୍ୟ ନେଇ ସହସ୍ରଶିରାକୁ ବଧ କରିବାପାଇଁ । ହନୁମାନ ଅଯୋଧ୍ୟାରୁ ଲକ୍ଷ୍ମଣ ଓ ସୀତାଙ୍କୁ ଆଣିଛି । ମହିଷାମର୍ଦ୍ଦିନୀ ମହାମାୟୀ କାତ୍ୟାୟନୀଙ୍କଠାରୁ ପଞ୍ଚଶର ପ୍ରାପ୍ତ ହୋଇ ସତୀ ସୀତା ତ୍ରୈଲୋକ୍ୟ ମୋହିନୀ ବେଶରେ ସହସ୍ରଶିରା ସମ୍ମୁଖରେ ପହଞ୍ଚିଛନ୍ତି ଓ ସହସ୍ରଶିରାକୁ ନିଜର ଉଲଗ୍ନ ଶରୀର ଦେଖାଇ ହୀନବୀର୍ଯ୍ୟ କରାଇଛନ୍ତି । ଏହି ଅବସରରେ ରାମ ଓ ଲକ୍ଷ୍ମଣ ଶରବିଦ୍ଧ କରି ଦୁଷ୍ଟ ଦାନବକୁ ସଂହାର କରିଛନ୍ତି । ତାପରେ ରାମ, ଲକ୍ଷ୍ମଣ, ସୀତା ଅଯୋଧ୍ୟା ଫେରିଛନ୍ତି ଓ ସେଠାରେ ତାଙ୍କର ଅଭିଷେକ ହୋଇଛି । ଏହି ଗ୍ରନ୍ଥରେ ରାମଚନ୍ଦ୍ରଙ୍କ ଅପେକ୍ଷା ସତୀ ସୀତା ଅଧିକ ଶକ୍ତିସଂପନ୍ନ ଭାବରେ ଚିତ୍ରିତ । ବାଲ୍ମିକୀଙ୍କ ଦ୍ୱାରା ରଚିତ ଅଦ୍ଭୁତ ରାମାୟଣ ର ଛାୟାରେ ସାରଳା ଦାସଙ୍କ 'ବିଲଙ୍କା ରାମାୟଣ' ରଚିତ ହୋଇଥିଲେ ହେଁ ଗ୍ରନ୍ଥର ବହୁ ସ୍ଥଳରେ କବିଙ୍କ ମୌଳିକତା ପରିଦୃଷ୍ଟ ହୁଏ । ଏ ଗ୍ରନ୍ଥଟି ଦାଣ୍ଡିବୃତ୍ତରେ ରଚିତ ।

**ବୀଜ** – ନାଟକୀୟ ପ୍ରୟୋଜନ ସିଦ୍ଧିର ପ୍ରଥମ କାରଣର ନାମ 'ବୀଜ' । ଏହା ନାଟକର ପଞ୍ଚ ଅର୍ଥ ପ୍ରକୃତି ମଧ୍ୟରୁ ଅନ୍ୟତମ । ଗଛରୁ ଫଳ ପାଇବା ପାଇଁ ଯେପରି ପ୍ରଥମେ ବୀଜ ବପନ କରିବାକୁ ହୁଏ ଏବଂ ଫଳପ୍ରାପ୍ତି ପାଇଁ ମଞ୍ଜି ଯେପରି ପ୍ରଥମ କାରଣ, ଠିକ୍ ସେହିପରି ଏହି ନାଟକୀୟ ବୀଜ କଥାର ଆରମ୍ଭରେ କ୍ଷୁଦ୍ରାଦପି କ୍ଷୁଦ୍ର ହେଲେ ମଧ୍ୟ ଅବିଳମ୍ବେ ବିଭିନ୍ନ ବିଚିତ୍ରତାରେ ବିସ୍ତୃତ ହୋଇଥାଏ ।

**ବୀଥୀ** – ଏହା ଏକ ରୂପକ । କଳ୍ପିତ ବସ୍ତୁ, ଏକ ଅଙ୍କ, ଶୃଙ୍ଗାର ପ୍ରିୟ ନାୟକ, ଶୃଙ୍ଗାର ରସ ଓ କୌଶିକୀ ବୃତ୍ତିର ସମାହାରରେ ବୀଥୀ ରୂପକ ରଚିତ ହୁଏ ।

**ବୀରରସ** – ସ୍ଥାୟୀଭାବ - ଉତ୍ସାହ । ଆଲମ୍ବନ - ଶତ୍ରୁ, ଯାହାକୁ ..... କରିବାକୁ ହୁଏ । ଉଦ୍ଦୀପନ - ଚତୁର, ପ୍ରତାପ ଓ ଶୌର୍ଯ୍ୟ, ରଣବାଦ୍ୟ, ଯୁଦ୍ଧ, କୋଳାହଳ । ଅନୁଭାବ - ଅସ୍ତ୍ର ଚାଳନା, ଆଖି ଲାଲ ପଡ଼ିବା, ରୋମ ଟାଙ୍କୁରି ଉଠିବା ଇତ୍ୟାଦି । ସଂଚାରୀ - ମତି, ଗର୍ବ, ଧୃତି । ଆଲୋଚକମାନେ ବୀରରସର ଚାରୋଟି ଭେଦ କଳ୍ପନା କରିଛନ୍ତି - ଦାନବୀର, ଦୟା, ବୀର, ଯୁଦ୍ଧବୀର ତଥା ଧର୍ମବୀର । କିନ୍ତୁ ଯୁଦ୍ଧବୀରକୁ ବୀରରସ ଭାବରେ ଗ୍ରହଣ କରାଯାଇଥାଏ ।

ଏହାର ସ୍ଥାୟୀ ଭାବ ଜୁଗୁପ୍‌ସା ବା ଘୃଣା । ଏହାର ଆଲମ୍ବନ ରକ୍ତ, ମାଂସ ଓ ପଚାସଡ଼ା ଦୁର୍ଗନ୍ଧଯୁକ୍ତ ବସ୍ତୁ, ଯାହାକୁ ଦେଖିଲେ ମନରେ ଘୃଣା ଜାତ ହୁଏ । ସେସବୁ ବସ୍ତୁରେ ପୋକ ସାଲୁସାଲୁ ହେବା, ଦୁର୍ଗନ୍ଧ ହେବା, ଶାର୍ଗୁଣା ଓ ବିଲୁଆମାନେ ଟଣା ଓଟରା କରିବା ଇତ୍ୟାଦି ଏହାର ଉଦ୍ଦୀପନ ବିଭବ । ନାସାକୁଞ୍ଚନ, ଘୃଣାଜଡ଼ିତ, ମୁଖ ବିକୃତି, ରୋମାଞ୍ଚ, ଛେପ ପକାଇବା ଇତ୍ୟାଦି ଅନୁଭାବ । ଆବେଗ, ଆର୍ତ୍ତି, ଶଙ୍କା, ମୋହ, ବ୍ୟାଧି ଆଦି ସଞ୍ଚାରି ଭାବ ।

ବେଷ୍ଟିତ ଶ୍ୱାପଦ କୂଳେ ସଦ୍ୟୋମୃତ କେହୁ
ଢ଼ୋଲ ହୋଇ ଫୁଲି କେହୁ ସଡ଼ଇ ମାଟିରେ । (ଶ୍ମଶାନଦୃଶ୍ୟ)

**ବେଦ** – ପ୍ରାଚୀନ ଓଡ଼ିଆ ସନ୍ଥ ସାହିତ୍ୟରେ ଓଡ଼ିଆ ସନ୍ଥ କବିଗଣଙ୍କ ଦ୍ୱାରା ରଚିତ ଧର୍ମଚିନ୍ତନକୁ ନେଇ ବେଦ ରଚନା ହୋଇଥାଏ । ଏହା ବ୍ରାହ୍ମଣ୍ୟ ଧର୍ମଗ୍ରନ୍ଥ ଚାରିବେଦଠାରୁ ସ୍ୱତନ୍ତ୍ର । ପ୍ରାକୃତ ଭାଷାରେ ରଚିତ ଯାହା ଶିଶୁବେଦ ନାମରେ କଥିତ । ତତ୍‌କାଳୀନ ନ୍ୟସ୍ତସ୍ୱାର୍ଥ ଉଚ୍ଚାଙ୍ଗଗୋଷ୍ଠୀ ପ୍ରତିବାଦରେ ଏହା ରଚନା ହୋଇଥିବାର ଅନୁମାନ କରାଯାଏ ।

**ବେତାର ନାଟକ** – ନାଟ୍ୟ ସାହିତ୍ୟ ଭିତରେ ଏହା ଶ୍ରାବ୍ୟ ନାଟକ । ଏହା ସ୍ଥାନ, କାଳ ନିରପେକ୍ଷ ନାଟକ । ଯାହା ରଙ୍ଗ ମଞ୍ଚରେ ଦେଖିହୁଏ ନାହିଁ । ତାହା ଶୁଣିବାକୁ ମିଳେ । ଏହି ନାଟକରେ ଶବ୍ଦ ଓ ସ୍ୱର ପ୍ରାଧାନ୍ୟ ତଥା ସଂଯୋଜନା ଏତେ ତୀବ୍ର ଯେ ଅଭିନୟଗତ ଆବେଗ ଶ୍ରୋତା ଅନ୍ତରରେ ସୃଷ୍ଟିକରି ପାରିଥାଏ ।

**ବୋଇତ** – ମନର ଭକ୍ତି ଭାବରେ ଭଗବାନ ଗୁରୁରୂପୀ ବୋଇତ ଅଦ୍ଭୁତ ଭାବରେ ନିଯୋଜନ କରିଛନ୍ତି । ନାଆର ୨୫ ଆହୁଲା (ପଚିଶ ପ୍ରକୃତି) ଓ ପଞ୍ଚକେତୁଆଳ କଥା ରହିଛି । ସେ ନାଆର ଜ୍ୟୋତି ଚନ୍ଦ୍ର ସୂର୍ଯ୍ୟ ଜ୍ୟୋତିପରି । କାଳନ୍ଦୀନଦୀ ପାରହେଲେ ଅନନ୍ତ ଭୂବନ ସାଧକ ଦେଖିପାରିବ । କାଳନ୍ଦୀ ହେଉଛି ମାନସ ସରୋବର । ଚନ୍ଦ୍ରସୂର୍ଯ୍ୟ

ନାଡି ରୂପୀ ଆଲୋକରେ ଯେଉଁ ବୋଇତ ଝଲସିତ ତାହାର ସାହାଯ୍ୟରେ ସହସ୍ରାସ୍ଥଳ ରୂପକ କାଳିନ୍ଦୀ ପାରିହୋଇ ସାଧକ ବ୍ରହ୍ମସ୍ଥଳ ଅନନ୍ତ ଭୁବନକୁ ଯିବ ।

**ବୋଲି** – ଓଡ଼ିଆରେ ଅନେକ ବୋଲି ସାହିତ୍ୟ ରହିଅଛି । ଏହି ଦୀର୍ଘ ଗୀତିକାଗୁଡ଼ିକ ସରଳ ଭାଷାରେ ଲେଖାଯାଇଥାଏ ଏବଂ ତାହା ବର୍ଣ୍ଣନାତ୍ମକ ଅଟେ । ଏଗୁଡ଼ିକୁ ଲୋକେ ସୁନ୍ଦର ଭାବରେ ଗାନ କରୁଥିଲେ ବା ବୋଲୁଥିଲେ ବୋଲି ଏହାର ନାମ ବୋଲି ରଖାଯାଇଛି । ଯଶୋବନ୍ତଙ୍କ 'ବଣଭୋଜୀବୋଲି', ଦୀନକୃଷ୍ଣଙ୍କ 'ଅମୃତସାଗର ବୋଲି' ଅନ୍ୟତମ ।

**ବୈଷ୍ଣବ** – ବିଷ୍ଣୁଙ୍କ ଭକ୍ତ । ନାରାୟଣ, ବାସୁଦେବ, ଜଗନ୍ନାଥ, ରାମ, କୃଷ୍ଣ ଆଦି ବିଷ୍ଣୁରୂପରେ ଉପାସ୍ୟ । ରାମାୟଣ, ମହାଭାରତ, ବିଷ୍ଣୁ ପୁରାଣ, ଭାଗବତ, ବ୍ରହ୍ମ ବୈବର୍ତ୍ତ ପୁରାଣ, ପଦ୍ମ ପୁରାଣ ଆଦି ବୈଷ୍ଣବ ସାହିତ୍ୟର ଅନ୍ତର୍ଗତ । ଓଡ଼ିଶାରେ ଜଗନ୍ନାଥ ସାହିତ୍ୟ ରାମ ଓ କୃଷ୍ଣ ସାହିତ୍ୟ । ପୁରାଣ, ଉପପୁରାଣ, ଛାନ୍ଦ, କୋଇଲି, ଚଉତିଶା ପଦାବଳୀ, ଚଂପୁ ଆଦି ବୈଷ୍ଣବ ସାହିତ୍ୟରେ ଅନ୍ତର୍ଗତ ।

**ବୃତ୍ତୌଚିତ୍ୟ** – କବିତାରେ ଉପଯୁକ୍ତ ଛନ୍ଦ ବା ବୃତ୍ତ ଯୋଜନାକୁ ବୃତ୍ତୌଚିତ୍ୟ କୁହାଯାଏ । ପପ୍ରତ୍ୟେକ ଭାଷାରେ ଛନ୍ଦମାନଙ୍କର ସ୍ୱାତନ୍ତ୍ର୍ୟ ପରିଲକ୍ଷିତ ହୁଏ । ସଂଗୀତ ଶାସ୍ତ୍ର ଅନୁସାରେ ଗୁରୁବାହୁ ନିୟମରେ ବୃତ୍ତ ଯୋଜନା କରାଯାଏ । ସଂସ୍କୃତରେ ମାତ୍ରା ଛନ୍ଦର ପ୍ରୟୋଗ ଭାବାନୁସାରୀ ହୋଇଥାଏ ।

**ବାଚ୍ୟୋତ୍‌ପ୍ରେକ୍ଷା** – କି, ସତେ, ଯେପରି, କିବା ଇତ୍ୟାଦି ଉତ୍‌ପ୍ରେକ୍ଷା ବାଚକ ଶବ୍ଦ ବ୍ୟବହୃତ ହେଲେ ବାଚ୍ୟୋତ୍‌ପ୍ରେକ୍ଷା ହୁଏ । ବାଚକ ଶବ୍ଦର ଉଲ୍ଲେଖ ନଥିଲେ ପ୍ରତୀୟମାନୋତ୍‌ପ୍ରେକ୍ଷା ଅଳଙ୍କାର ହୁଏ ।

ଶ୍ୱେତାଙ୍ଗ ଚଢ଼େଇ ଗୁହା ସମୁଦଗତ
ନୀର ଭେଦି କିବା ଉଠେ ଐରାବତ ।

**ବ୍ୟଙ୍ଗ୍ୟ** – ଏହା ବାଚ୍ୟାର୍ଥଠାରୁ ସମ୍ପୂର୍ଣ୍ଣ ଭିନ୍ନ ଏକ ଅର୍ଥ ପ୍ରକାଶ କରିଥାଏ, ବାଚ୍ୟାର୍ଥର ପ୍ରତୀତି ହୋଇ ସାରିବାପରେ ବ୍ୟଙ୍ଗ୍ୟାର୍ଥର ପ୍ରତୀତି ହୁଏ ।

**ବ୍ରହ୍ମତାଲୁକା** – ପରମ ବ୍ରହ୍ମଙ୍କର ସ୍ଥାନ ତାଲୁକା ଭାବେ କଥିତ ।

''ବ୍ରହ୍ମ ତାଲୁକା ବୋଲି ଯା ପରମର ଘର
ସେହିଠାରୁ ସୁଧାରସ ପଡ଼େ ଝର ଝର''।

(ରାଧାରସାମୃତ ଗୀତା,ପୃ. ୫୨)

## ଭ

**ଭକ୍ତକବି** – କବି ମଧୁସୂଦନ ରାଓଙ୍କୁ ଭକ୍ତକବି କୁହାଯାଏ । ଇଂରେଜ ସରକାର ତାଙ୍କୁ ମଧ୍ୟ ରାୟ ବାହାଦୁର ଉପାଧି ଦେଇଥିଲେ । ତାଙ୍କର ପ୍ରତିଟି କବିତା ଭକ୍ତିଭାବନା ଓ ଆଧ୍ୟାତ୍ମିକତାର ପରିପୂର୍ଣ୍ଣ ବୋଲି ତାଙ୍କୁ ଭକ୍ତକବି ବୋଲି କୁହାଯାଏ । ଭକ୍ତକବି ମଧୁସୂଦନ ରାଓଙ୍କ ଜନ୍ମ ୧୮୫୩ ମସିହା ଜାନୁୟାରୀ ୨୯ ଶ୍ରୀପଞ୍ଚମୀରେ ପୁରୀ ସହରର ପଥୁରିଆ ସାହିରେ ହୋଇଥିଲା । ତାଙ୍କ ପିତାଙ୍କ ନାମ ଭାଗୀରଥି ରାଓ ଓ ମାତାଙ୍କ ନାମ ଅମ୍ବିକା ଦେଇ । ଭକ୍ତକବି ଏକାଧାରରେ ପ୍ରାବନ୍ଧିକ, କବି ଓ ସୁଦକ୍ଷ ଅନୁବାଦକ ଥିଲେ । ତାଙ୍କ ରଚନା ମଧ୍ୟରେ ବର୍ଣ୍ଣବୋଧ, ଛାନ୍ଦମାଳା, କବିତାବଳୀ, ଭାରତଭାବନା, ପ୍ରବନ୍ଧମାଳା, ବସନ୍ତଗାଥା, ଉତ୍କଳଗାଥା, କୁସୁମାଞ୍ଜଳୀ, ବାଳ ରାମାୟଣ, ହେମମାଳା ପ୍ରଧାନ ।

**ଭକ୍ତି** – ଭଜ୍ ଧାତୁରୁ ନିଷ୍ପନ୍ନ ଅର୍ଥାତ୍ ଭକ୍ତି ଶବ୍ଦର ଅର୍ଥ ହେଲା ଅନୁରକ୍ତି, ପ୍ରୀତି, ଅନୁରାଗ ଇତ୍ୟାଦି । ଅନ୍ୟ ଅର୍ଥରେ ପରମେଶ୍ୱରଙ୍କଠାରେ ଅନୁରକ୍ତି କୁ ଭକ୍ତି କୁହାଯାଏ । ଶଙ୍କରଙ୍କ ମତରେ ''ସ୍ୱ ସ୍ୱ ରୂପାନୁସନ୍ଧାନମ୍ ''ଭକ୍ତି । ଈଶ୍ୱରଙ୍କ ଉପସ୍ଥିତି ନିଜ ଭିତରେ ତଥା ବାହ୍ୟ ଜଗତର ପ୍ରତ୍ୟେକ ବସ୍ତୁରେ ଦେଖିବା କର୍ମ ହେଉଛି ଭକ୍ତି । ପାଣିନିଙ୍କ ମତରେ ''ବାସୁଦେବା ର୍ଜ୍ଜନ ଭ୍ୟାଂ ହୁନ''। ସେହିପରି ଗୀତାରେ ଆତ୍ମସମର୍ପଣ କରିବା ହେଉଛି ଭକ୍ତି ।

ଭକ୍ତିର ଲକ୍ଷଣ ବା ସଂଜ୍ଞା ନିର୍ଦ୍ଦେଶ କରିବାକୁ ଯାଇ ବ୍ରହ୍ମମୁନି ନାରଦ ତାଙ୍କର ପ୍ରସିଦ୍ଧ ଗ୍ରନ୍ଥ 'ଭକ୍ତିସୂତ୍ର'ରେ କହିଅଛନ୍ତି ''ସା x x x ପରମ ପ୍ରେମରୂପା''। ଅର୍ଥାତ୍ ଭଗବାନଙ୍କଠାରେ ଯେଉଁ ପରମ ପ୍ରେମ, ଅଖଣ୍ଡ, ଅକଳନୀୟ ଓ ଅବର୍ଣ୍ଣନୀୟ ପ୍ରେମ ଭାବ ହିଁ ଭକ୍ତି । ଭକ୍ତିତତ୍ତ୍ୱର ସୁପ୍ରସିଦ୍ଧ ବ୍ୟାଖ୍ୟାକାର ମହର୍ଷି ଶାଣ୍ଡିଲ୍ୟ କହିଅଛନ୍ତି – ''ସା ପରାନୁରକ୍ତିରୀଶ୍ୱରେ''। ଅର୍ଥାତ୍ ଈଶ୍ୱରଙ୍କଠାରେ ଯେଉଁ ପରମ ଅନୁରକ୍ତି ହିଁ ଭକ୍ତି । 'ଭକ୍ତି' ଶବ୍ଦ ସେବାର୍ଥକ ଭଜ ଧାତୁରୁ ନିଷ୍ପନ୍ନ । ପରମ ବୈୟାକରଣିକ ପାଣିନିଙ୍କ ମତରେ ''ଭଜ ସେବାୟାମ', ସେବା ହେଉଛି ପ୍ରୀତି ଉତ୍ପାଦକ ବ୍ୟାପାର ବିଶେଷ । ଅର୍ଥାତ୍ ମାନବ ଯେଉଁ କର୍ମ କରିବା ଦ୍ୱାରା ଭଗବାନଙ୍କ ପ୍ରୀତି ସଂପାଦନକାରୀ ହୁଏ, ତାହା ହିଁ ସେବା । ସେବାର ଚରମ ଓ ପରମ ପରିଣତି ହେଉଛି ବିଭୁପ୍ରେମ ।

ଅଳଙ୍କାର ଶାସ୍ତ୍ରରେ ବେଦ ବିଷୟକ ରୀତିର ନାମ ଭକ୍ତି ରଖାଯାଇଛି । ତେଣୁ ସେମାନେ ଭକ୍ତିକୁ ଏକ ରସ ଭାବରେ ଗ୍ରହଣ ନକରି ଏକ ଭାବ ବିଶେଷ ବୋଲି କହିଛନ୍ତି । ବଲ୍ଲଭ ସଂପ୍ରଦାୟରେ ଭକ୍ତି ଗ୍ରନ୍ଥ ''ହରିଭକ୍ତି ରସାମୃତ ସିନ୍ଧୁ''ରେ ଭକ୍ତିକୁ ଏକ ରସ ଭାବରେ ଗ୍ରହଣ କରାଯାଇଛି । ଉତ୍କଳରେ ପଞ୍ଚସଖାଙ୍କ ଜ୍ଞାନମିଶ୍ରା ଭକ୍ତି ପଞ୍ଚସଖା ସାହିତ୍ୟରେ ବିଶେଷଭାବରେ ଲକ୍ଷଣୀୟ ।

**ଭକ୍ତିପ୍ରକରଣ** – ପରମେଶ୍ୱରଙ୍କଠାରେ ଅନୁରକ୍ତିକୁ ଭକ୍ତି କୁହାଯାଏ । ଅର୍ଥାତ୍ ଲୌକିକ, ବୈଦିକ, ଆଧ୍ୟାତ୍ମିକ, ମାନସୀ, ବାଚିକୀ ଓ କାୟିକୀ ଭେଦରେ ଭକ୍ତିର ଶ୍ରେଣୀ ବିଭାଗ । ବ୍ରହ୍ମାଣ୍ଡ ପୁରାଣ ଅନୁସାରେ ଉତ୍ତମା, ମଧ୍ୟମା ଓ କନଷ୍ଠା ରୂପେ ଭକ୍ତି ତ୍ରିବିଧା । ଭାଗବତ ଅନୁସାରେ ସ୍ୱାତ୍ତିକୀ, ରାଜସୀ ଓ ତାପସୀ ଭେଦରେ ଭକ୍ତି ତ୍ରିବିଧ । ବୈଷ୍ଣବ ଗ୍ରନ୍ଥରେ ସଂକଳ୍ପ, ତ୍ୟାଗ, ଭଗବଦ୍ ଭଜନ ଓ ଅସହାୟ ଭାବ ପ୍ରଦର୍ଶନ ବର୍ଣ୍ଣନା କରାଯାଏ । ଭକ୍ତିରୁ ଭଗବଦ୍ ପ୍ରସାଦ ଓ ପ୍ରସାଦରୁ ନିର୍ବାଣ ଲାଭ ହୁଏ । ଷଡ଼୍‌ଗୁଣର ସମାହାର 'ଭଗ' ଶବ୍ଦରୁ ବତ୍ ଓ ଭଗବତ୍ ବା ସବୁଦେବଙ୍କ ପୂଜାକୁ ଭକ୍ତି ରୂପେ ଅଭିହିତ ।

'ହରିଭକ୍ତି ରସାମୃତ ସିନ୍ଧୁ' ସୁପ୍ରସିଦ୍ଧ ଗ୍ରନ୍ଥରେ କୁହାଯାଇଛି -

''ସା ଭକ୍ତିଃ ସାଧନଂ ଭବଃ ପ୍ରେମାଚେତି ତ୍ରିଧୋଦିତା''

ତତ୍ର ସାଧନ ଭକ୍ତିଃ -

କୃତି ସାଧ୍ୟାଭବେତ୍ ସାଧ୍ୟ ଭାବାସା ସାଧନାଭିଦା

x x x

ବୈଦୀରାଗାନୁଗା ଚେତି ସା ଦ୍ୱିଧା ସାଧନାଭିଜା''

(ପୂର୍ବ ବିଭାଗ, ୨ୟ ଲହରୀ, ଶ୍ଳୋକ ୧-୩)

ଭକ୍ତି ତିନ ଭାଗରେ ବିଭକ୍ତ । ଯଥା - ସାଧନ ଭକ୍ତି, ଭାବଭକ୍ତି ଓ ପ୍ରେମଭକ୍ତି । ପୁଣି ସାଧନ ଭକ୍ତି ଦୁଇ ଭାଗରେ ବିଭକ୍ତ । ଯଥା - ବୈଧୀ ଓ ରାଗାନୁଗା ।

ଭଗବାନଙ୍କ ଉଦ୍ଦେଶ୍ୟରେ ଶାସ୍ତ୍ର ବିହିତ କ୍ରିୟା ଅନୁଷ୍ଠାନ ହିଁ ବୈଧୀ ଭକ୍ତିରେ ପର୍ଯ୍ୟବେଶିତ । ଏହି ବୈଧୀ ଭକ୍ତି ପାଳନରେ ପ୍ରେମଭକ୍ତି ଲାଭ । କେବଳ ଅନୁରାଗବଶତଃ ଶାସ୍ତ୍ରସୀମା ଅତିକ୍ରମ କରି, ଲୋକଲଜ୍ଜା ସମାଜରୀତି ସମସ୍ତ ପରିହାର ପୂର୍ବକ ଜାତିକୁଳଶୀଳ ଉପେକ୍ଷାରେ ଯେଉଁ ଭଗବାନଙ୍କ ନିମିତ୍ତ ପ୍ରେମ ସାଗରରେ ମଗ୍ନ ହୋଇ ପାରନ୍ତି ସେଇମାନେ କେବଳ ରାଗାନୁରାଗ ମାର୍ଗର ଅଧିକାରୀ । ରାଗାନୁରାଗ ଭକ୍ତି ମଧ୍ୟ ଦ୍ୱିବିଧ ।

ଅନ୍ୟ ଦୃଷ୍ଟିକୋଣରୁ ଭକ୍ତିର ଦ୍ୱିବିଧ ବିଭାଗ କରାଯାଏ ଯଥା- ସାଧନରୂପୀ, ସାଧରୂପ । ଶାସ୍ତ୍ରଲିଖିତ ବିଧି ଅନୁସାରେ, ଭଗବାନଙ୍କର ଯେଉଁ ସେବାପୂଜା ଓ ଆରାଧନା, ତାହା ସାଧନ ରୂପା ଭକ୍ତିର ଅନ୍ତର୍ଗତ । ଏହା କରିବା ଦ୍ୱାରା ଭଗବାନଙ୍କଠାରେ ଯେଉଁ ପରମପ୍ରେମ ଜାତ ହୁଏ ତାହା ହିଁ ସାଧ୍ୟ ।

ବୈଷ୍ଣବ ସାହିତ୍ୟରେ ଭକ୍ତିର ଯେଉଁ ବିଭାଗ ଅଛି ତାହା ନବଧା ଭକ୍ତି ଯଥା - ଶ୍ରବଣ, କୀର୍ତ୍ତନ, ସ୍ମରଣ, ପାଦସେବନ, ଆର୍ଚ୍ଚନ, ବନ୍ଦନ, ଦାସ, ସଖ୍ୟ ଓ ଆତ୍ମନିବେଦନ ।

**ଭକ୍ତିବାଦ** – ଈଶ୍ୱରଙ୍କଠାରେ ଯେଉଁ ଅଚଳ, ଅଟଳ ଅନୁରାଗ ଅଥବା ପରମ ଅନୁରକ୍ତି, ତାହାହିଁ ଭକ୍ତିତତ୍ତ୍ୱର ମୂଳସୂତ୍ର । ଈଶ୍ୱରଙ୍କର ଅସ୍ତିତ୍ୱ, ସର୍ବବ୍ୟାପକତା, ସର୍ବଶକ୍ତିମତା,

ସନାତନତତ୍ତ୍ୱ ବା ନିତ୍ୟତା, କଲ୍ୟାଣମୟତା, ସବାଧିକାରୀ ଇତ୍ୟାଦି ଉପରେ ଯେଉଁ ଅଖଣ୍ଡ ବିଶ୍ୱାସ ବା ଗଭୀର ଆସ୍ଥା, ତାହା ହିଁ ଭକ୍ତିବାଦର ସ୍ୱରୂପ । ସର୍ବବ୍ୟାପକ, ସନାତନ ଓ ସର୍ବାରାଧ ଈଶ୍ୱର ମୂଳତଃ ଏକ ''ଏକଂସତ୍, ବିପ୍ରା, ବହୁଧା କହନ୍ତି''-କୁହାଯାଇଥିଲେ ମଧ ହିନ୍ଦୁମାନେ ତେତିଶକୋଟି ଦେବତାଙ୍କୁ ମାନନ୍ତି । ଜଡ଼ ଓ ଚେତନ ଉଭୟରେ ବ୍ରହ୍ମଦର୍ଶନ, ଈଶ୍ୱରଙ୍କ ବିଭିନ୍ନ ଶକ୍ତିଙ୍କୁ ସ୍ୱତନ୍ତ୍ର ଭାବେ ପୂଜିତ ହୋଇ ବହୁ ଦେବଦେବତା ପୂଜାବିଧି ଭେଦରେ ଶୈବ, ଶାକ୍ତ, ବୈଷ୍ଣବ, ଗାଣପତ୍ୟ, ସୌର ପ୍ରଭୃତି ନାନା ସଂପ୍ରଦାୟ ଓ ସେମାନଙ୍କର ମତ ପ୍ରତିଷ୍ଠାପକ ସାହିତ୍ୟ ଭକ୍ତିବାଦର ସୁପ୍ରଶସ୍ତ ବିସ୍ତାର କୁହାଯାଇଥାଏ ।

ଭଗବତ ଗୀତା – ହିନ୍ଦୁଧର୍ମର ପ୍ରଧାନ ଧର୍ମଗ୍ରନ୍ଥ । କୁରୁକ୍ଷେତ୍ର ଯୁଦ୍ଧକ୍ଷେତ୍ରରେ ଯୁଦ୍ଧାର୍ଥେ ଉପସ୍ଥିତ ଅର୍ଜ୍ଜୁନ ଓ ତାଙ୍କ ସାରଥି ଶ୍ରୀକୃଷ୍ଣଙ୍କ ମଧ୍ୟରେ ପ୍ରଶ୍ନୋତ୍ତର ଛଳରେ ଜ୍ଞାନଯୋଗ, ଭକ୍ତିଯୋଗ ଓ କର୍ମଯୋଗ ସମ୍ବନ୍ଧୀୟ ପାରମାତ୍ମିକ ତତ୍ତ୍ୱ ଉପଦେଶ ଶ୍ରୀମଦ୍ ଭଗବତ୍ ଗୀତା ନାମରେ ଖ୍ୟାତ । ଏଥିରେ ୧୮ଟି ଅଧ୍ୟାୟ ଅଛି । ୧ମ ଅଧ୍ୟାୟ ବିଷାଦ ଯୋଗ, ୨ୟ ଅଧ୍ୟାୟ ସାଂଖ୍ୟଯୋଗ, ୩ୟ ଅଧ୍ୟାୟ କର୍ମଯୋଗ, ୪ର୍ଥ ଅଧ୍ୟାୟ କର୍ମ-ବ୍ରହ୍ମାର୍ପଣ ଯୋଗ, ୫ମ - କର୍ମ ସନ୍ନ୍ୟାସ ଯୋଗ, ୬ଷ୍ଠ ଆତ୍ମସଂଯମ ଯୋଗ, ୭ମ ଜ୍ଞାନବିଜ୍ଞାନ ଯୋଗ, ୮ମ ଅକ୍ଷରବ୍ରହ୍ମଯୋଗ, ୯ମ ରାଜବିଦ୍ୟା ରାଜଗୁହ୍ୟ ଯୋଗ, ୧୦ମ ବିଭୂତି ଯୋଗ, ୧୧ଶ ବିଶ୍ୱରୂପ ଦର୍ଶନଯୋଗ, ୧୨ଶ ଭକ୍ତିଯୋଗ, ୧୩ଶ କ୍ଷେତ୍ରବିଜ୍ଞାନ ଯୋଗ, ୧୪ଶ ଗୁଣତ୍ରୟବିଭାଗ ଯୋଗ, ୧୫ଶ ପୁରୁଷୋତ୍ତମ ଯୋଗ, ୧୬ଶ ଦୈବାସୁରସମ୍ପଦ୍ ବିଭାଗ ଯୋଗ, ୧୭ଶ ଶ୍ରଦ୍ଧାତ୍ରୟବିଭାଗ ଯୋଗ, ୧୮ଶ ମୋକ୍ଷଯୋଗ ।

ଭଜନ – ଈଶ୍ୱରଙ୍କ ସ୍ତୁତି ଅଥବା ଭଗବାନଙ୍କ ଲୀଳା ବର୍ଣ୍ଣନା ଥିବା ଗୀତକୁ ଭଜନ କୁହାଯାଏ । ଭଜନ ଶବ୍ଦ ଭଜ୍ ଧାତୁରୁ ନିଷ୍ପନ୍ନ । ଭଜ୍ ଧାତୁର ଅର୍ଥ ସେବା, ପୂଜା ଆଦି । ଓଡ଼ିଆ ଗୀତିକାବ୍ୟରେ ଭଜନ ଏକ ସମୃଦ୍ଧ ବିଭାଗ । ଭଜନ, ଜଣାଣ, ପ୍ରାର୍ଥନା ଆଦିରେ ଭାବଧାରା ଏବଂ ଆଙ୍ଗିକ ଏକାପରି । ଏଥିରେ ସମସ୍ତ ଦେବାଦେବୀଙ୍କ ଗୁଣ କୀର୍ତ୍ତନ, ରୂପ କୀର୍ତ୍ତନ, ମହାତ୍ମ୍ୟ ବଚନିକା, ପିଣ୍ଡବ୍ରହ୍ମାଣ୍ଡ ତତ୍ତ୍ୱ, ନିର୍ଗୁଣ ତତ୍ତ୍ୱ ପ୍ରଭୃତି ଭକ୍ତି, ଜ୍ଞାନର ଅପୂର୍ବ ସମନ୍ୱୟ ଆଣିଥାଏ । ଜଗନ୍ନାଥ ଭଜନ ଓଡ଼ିଶାରେ ସ୍ୱତନ୍ତ୍ର ଭୂମିକା ଗ୍ରହଣ କରେ ।

ଭଣଚି – ପଦ୍ୟ ଶେଷରେ କବିଙ୍କ ନାମ ସଂଯୋଗକୁ ଭଣତି କୁହାଯାଏ । ମଧ୍ୟଯୁଗୀୟ ସାହିତ୍ୟରେ କାବ୍ୟ କବିତାର ରଚୟିତାଙ୍କ ନାମ ଯୋଡ଼ି ପଦ ପକାଇ କାବ୍ୟ କବିତାକୁ ସଂପୂର୍ଣ୍ଣ ଭଣିତାକୁ ଭଣତି କୁହାଯାଏ ।

ଭବଜଳ – ସନ୍ଥ ସାହିତ୍ୟରେ 'ଯୋନି' କୁ ଭବଜଳ ଭାବେ କୁହାଯାଇଥାଏ । ଏହା ସନ୍ଧାଭାଷା । 'ବିରାଟ ଗୀତା'ରେ କୁହାଯାଛି –

''ଯୋନିକୁ ଭବଜଳ କହି । ତହିଁ ବୁଡ଼ିଲେ ସ୍ଥଳ ନାହିଁ ।''

ଭବିଷ୍ୟବାଦ – ୧୯୦୯ - ୧୪ରେ ଇଟାଲୀୟ କଳା ସାହିତ୍ୟରେ ଏକ ବିପ୍ଳବ ସୃଷ୍ଟି ହୋଇଥିଲା ଭବିଷ୍ୟକୁ ନେଇ । ଭବିଷ୍ୟବାଦୀ ଚିନ୍ତାଧାରା ମୂଳତଃ ଏକ ବିଶ୍ୱାସ, ଅଦୃଷ୍ଟ ଶକ୍ତିର ବିଶ୍ୱାସ । ଚିତ୍ରକଳାରେ ଭବିଷ୍ୟବାଦ ଏକ ପରିବର୍ତ୍ତନ ଆଣିଲା । ଘନବାଦୀ ଚିତ୍ର ଥିଲା ଗତିହୀନ କିନ୍ତୁ ଭବିଷ୍ୟବାଦୀ ଚିତ୍ର ହେଲା ଗତିଯୁକ୍ତ ।

ଭୟାନକ ରସ – ଏହାର ସ୍ଥାୟୀ ଭାବ ଭୟ । ଏହା ବିକୃତ ଭାବ, ତ୍ରାସ, ଉଦ୍‌ବେଗୀ, ମରଣ, ଗୃହଶୂନ୍ୟ ପ୍ରଭୃତି ଦର୍ଶନ ଓ ଶ୍ରବଣ ପ୍ରଭୃତି ବିଭାବରୁ ଉତ୍ପନ୍ନ । ହସ୍ତପଦକୁ କମ୍ପିତ କରିବା, ଚକ୍ଷୁକୁ ଘନ ଘନ ବୁଲାଇବା, ଲୋମ ଟାଙ୍କୁରୀ ଉଠିବା, ମୁଖ ବିକୃତ କରିବା ଛକ୍ଷକୁ ଘନ ଘନ ବୁଲଇବା, ଲୋମ ଟାଙ୍କୁରୀ ଉଠିବା, ମୁଖ ବିକୃତ ଦେଖାଦେବା ପ୍ରଭୃତି ଅନୁଭବ । ସ୍ତମ୍ଭ, ସ୍ୱେଦ, ଗଦ ଗଦ, ରୋମାଞ୍ଚ, ବେପଥୁ, ତ୍ରାସ, ଅପସ୍ମାର ଇତ୍ୟାଦି ବ୍ୟଭିଚାର ଭାବ ।

ଭ୍ରମର ଗୁମ୍ଫା – ଓଡ଼ିଆ ସନ୍ଥ ସାହିତ୍ୟରେ ଭ୍ରମର ଗୁମ୍ଫାର ପ୍ରୟୋଗ ରହିଛି । ଏଥିରେ ଭ୍ରମର ଗୁମ୍ଫା କୁ ନାସା ବୁଝାଏ । 'ରାଧା ରସାମୃତ ଗୀତା'ରେ ଚାରିଟି ଗୁମ୍ଫାର ବିବରଣୀ ମିଳେ ଯଥା - ମୁଖଦ୍ୱାର, ନୀଳୋତ୍ପଳ, ନାସାଭ୍ରମର ଗୁମ୍ଫା, ନୟନପରମ ଗୁମ୍ଫା ଓ କର୍ଣ୍ଣ ଅନାହତ ଗୁମ୍ଫା ।

ଭୁସୁକୁପାଦ – ସିଦ୍ଧାଚାର୍ଯ୍ୟ ଭୁସୁକୁପାଦ ଅନ୍ୟତମ ବିଶିଷ୍ଟ ଚର୍ଯ୍ୟାକାର । ତାଙ୍କର ଅନ୍ୟନାମ ଶାନ୍ତିଦେବ । ତାଙ୍କର ଜୀବନୀ ଅନେକ କିମ୍ବଦନ୍ତୀ ପୂର୍ଣ୍ଣ । ତାଙ୍ଗୁରରେ ତାଙ୍କୁ ଜାହୋରର ଅଧିବାସୀ ଅର୍ଥାତ୍ ଆଧୁନିକ କେଉଁଝରର ଅଧିବାସୀ ହିସାବରେ ଚିହ୍ନିତ କରାଯାଇଛି । ସେ ମହାଯାନୀ ଶାନ୍ତିଦେବଙ୍କ ଠାରୁ ଭିନ୍ନ । ତାଙ୍କ ନାମରେ 'ଶ୍ରୀଗୁହ୍ୟସମାଜ' ମହାଯୋଗ ତନ୍ତ୍ର-ବଳିବିଧି ଓ 'ସହଜଗୀତ' ନାମରେ ଦୁଇଟି ରଚନା ତାଙ୍ଗୁର ତାଲିକାରେ ଦେଖିବାକୁ ମିଳେ । ପାଗ୍ ସାମ ଜୋନ ଜାଙ୍ଗ୍ ରେ ତାଙ୍କର ଅନ୍ୟନାମ ଭୁସୁକୁ ଓ ରାଉତ । ଚର୍ଯ୍ୟାଗୀତିକୋଷରେ ଭୁସୁକୁପାଦଙ୍କ ନାମରେ ଆଠଗୋଟି ଗୀତି (୬, ୨୧, ୨୩, ୨୭, ୩୦, ୪୧, ୪୩ ଓ ୪୯) ରହିଅଛି ।

ଭାଟ – ସ୍ତୁତି ପାଠକଙ୍କୁ ଭାଟ କୁହାଯାଏ ।

ଭାବ – ସାହିତ୍ୟରେ ବ୍ୟବହାର ଦୃଷ୍ଟିରୁ ଭାବର ସଂଜ୍ଞା - ''ନିର୍ବିକାରାତ୍ମକ ଚିତ୍ତେ ଭାବ ପ୍ରଥମ ପ୍ରକ୍ରିୟା'' ଅର୍ଥାତ୍ କୌଣସି କଥାବସ୍ତୁର ଚିନ୍ତନ ଦର୍ଶନରେ, ଶ୍ରବଣରେ କିମ୍ବା ପଠନରେ ହୃଦୟର ଯେଉଁ ପ୍ରଥମ ବିକାର ଅଙ୍କୁରିତ ହୁଏ ତାହା ଭାବ । ଭରତ ମୁନିଙ୍କ

ମତରେ ଭାବ ଠିକ୍ ରସ ପରି ଅଲୌକିକ ଏବଂ ତାହା ବାକ୍ୟ ଦ୍ୱାରା ଆନୀତ, ବିଭବଦ୍ୱାରା ଆହୃତ, ଅନୁଭବ ଦ୍ୱାରା ବୁଦ୍ଧିର ବିଷୟୀକୃତ ଏବଂ ଅଭିନୟ ଦ୍ୱାରା ସ୍ପଷ୍ଟୀକୃତ ହୁଏ । ଆଚାର୍ଯ୍ୟ ଅଭିନବ ଗୁପ୍ତା ଭାବର ବ୍ୟାଖ୍ୟା କରନ୍ତି - ''ଭାବ ଶବ୍ଦେନ ତାବତ୍ ଚିତ୍ତବୃତ୍ତି ବିଶେଷ ଏବ ବିବକ୍ଷିତାଃ'' ଅର୍ଥାତ୍ ଭାବ ଚିତ୍ତ ବୃତ୍ତି ସମୂହ । ଅଳଙ୍କାର ଶାସ୍ତ୍ରରେ ଭାବର ବିଭାଜନ - ସ୍ଥାୟୀଭାବ, ବିଭାବ, ଅନୁଭବ, ଭାବାଭାସ, ଭାବ ଶାନ୍ତି, ଭାବୋଦୟ, ଭାବସିଦ୍ଧି, ଭାବ ଶାବଳତା ଓ ଭାବପ୍ରଶମନ ।

- ଭାବ ରସ ସହିତ ଅନବରତ ରହିଲେ ସେହି ଭାବ ସ୍ଥାୟୀଭାବ ।

- ସ୍ଥାୟୀଭାବ ଗୋଟିଏ ରସକୁ ଛାଡ଼ି ଅନ୍ୟରସକୁ ଆଶ୍ରୟକଲେ ତାହା ହୁଏ ବ୍ୟଭିଚାର ଭାବ ।

- ସହୃଦୟ ବ୍ୟକ୍ତିଠାରେ ସଂସ୍କାରବଶତଃ ଥିବା ସ୍ଥାୟୀଭାବକୁ ଯାହା ଆସ୍ୱାଦନ ଯୋଗ୍ୟ କରାଏ ତାହା ବିଭାବ ।

- ଅଙ୍କୁରିତ ଅବସ୍ଥାକୁ ଆସିଥିବା ଭାବକୁ ଯାହା ରସରେ ପରିଣତ କରେ ତାହା ଅନୁଭାବ ।

- ଯେଉଁଭାବ ସଞ୍ଚାରିତ ହୁଏ ତାହା ସଞ୍ଚାରିତ ଭାବ ।

- ଭାବର ଅନୁଚିତ ଓ ଅସଂଗତ ବର୍ଣ୍ଣନା ହୁଏ ଭାବାଭାସ ।

- ଯଦି ଗୋଟିଏ ଭାବର ପ୍ରକାଶ ସମୟରେ ଅନ୍ୟ ଗୋଟିଏ ବିରୁଦ୍ଧଭାବର ଉଦୟ ହୁଏ ଏବଂ ପ୍ରଥମ ଭାବ ଶାନ୍ତ ହୋଇଥିଲେ ବି ଚମତ୍କାର ସୃଷ୍ଟିହୁଏ, ତାହା ହୁଏ ଭାବଶାନ୍ତି ।

- ଗୋଟିଏ ଭାବ ଶାନ୍ତ ହେବାପରେ ଅନ୍ୟଭାବ ସୃଷ୍ଟି ହୋଇ ଚମତ୍କାର ସୃଷ୍ଟିକରିବା ।

- ଗୋଟିଏ ଭାବର ଶେଷ ଓ ଅନ୍ୟ ଗୋଟିଏ ଭାବର ଉଦୟକାଳକୁ ଭାବସନ୍ଧି କୁହାଯାଏ ।

- ଏକାଧିକ ଭାବର ମିଶ୍ରଣକୁ ଭାବଶାବଲ୍ୟ କୁହାଯାଏ ।

- ଭାବ ସଂଯୋଗ ପୂର୍ବରୁ ଯେଉଁ ଭାବ ସୃଷ୍ଟି ହୋଇଥିଲା ତାହାର ଶେଷ ଅବସ୍ଥାକୁ ଭାବ ପ୍ରଶମନ କୁହାଯାଏ ।

**ଭାବୋଦ୍ଦୀପନା ବାଦ** – ଏହା କଳା ସାହିତ୍ୟ କ୍ଷେତ୍ରରେ ଏକ ଆନ୍ଦୋଳନ । ଇଂରାଜୀ *Impressionism* ଶବ୍ଦର ଅର୍ଥାନ୍ତର ହେଉଛି ଭାବୋଦ୍ଦୀପନା ବାଦ । କେତକଙ୍କ ମତରେ ଭାବୋଦ୍ଦୀପନା ବାଦ ସାହିତ୍ୟ କ୍ଷେତ୍ରରେ ବାସ୍ତବବାଦ ଓ ପ୍ରକୃତି ବାଦରୁ ସୃଷ୍ଟି ଲାଭ କରିଛି । ଆଉ କେତେକଙ୍କ ମତରେ ଏହି ଭାବୋଦ୍ଦୀପନା ବାଦ ହେଉଛି ବ୍ୟକ୍ତିନିଷ୍ଠ ସ୍ୱଭାବବାଦ । କାରଣସ୍ୱରୂପ ଭାବୋଦ୍ଦପନାବାଦୀ କବିମାନେ ସ୍ୱାଭାବିକ୍ ଇନ୍ଦ୍ରିୟାନୁଭୂତିକୁ ତାଙ୍କ କବିତାରେ ରୂପାୟିତ କରନ୍ତି । ଚିତ୍ରାଙ୍କନ ସମୟରେ ରଙ୍ଗସଂଚାର ଭଳି ଇମ୍ପ୍ରେସନିଷ୍ଟ

ମାନଙ୍କର କବିତାରେ ବୌଦ୍ଧିକ ବିଚାର ନଥାଏ । ମାତ୍ର ମୁହୂର୍ତ୍ତର ଉଚ୍ଛ୍ୱାସକୁ ଧରି ରଖିବାରେ ପ୍ରବଣତା ଥାଏ । ଇମ୍ପ୍ରେସନିଷ୍ଟ କବିତା ସମ୍ବନ୍ଧରେ କୁହାଯାଇଛି ଯେ ଏମାନେ ସ୍ନାୟବିକ ଆବେଗ ପ୍ରତି ଅଧିକ ଗୁରୁତ୍ୱ ଦିଅନ୍ତି ଏବଂ ଅସ୍ପଷ୍ଟ ଅନୁଭବ ମଧ୍ୟ ସ୍ନାୟବିକ ଆବେଗ ନେଇ ଏଥିରେ ଦାନାବାନ୍ଧେ । ଫଳରେ କବିତାର ଏକ ମାଧ୍ୟମ ପାଲଟିଯାଏ ସ୍ନାୟୁକେନ୍ଦ୍ର ଏବଂ ଇନ୍ଦ୍ରିୟାଦିର ଅସ୍ପଷ୍ଟ ଅନୁଭୂତି ପ୍ରକାଶ ପାଇଥାଏ । କଳା ସୃଜନାତ୍ମକ ସାହିତ୍ୟ ଉପରେ ଅନ୍ୟାନ୍ୟ ସାହିତ୍ୟିକ ମତବାଦ ଗୁଡ଼ିକ ଉତ୍ପତ୍ତି ଲାଭ କରିଥିବାବେଳେ ଭାବୋଦ୍ଦୀପନା ବାଦଟି ସାହିତ୍ୟ ସମାଲୋଚନା କ୍ଷେତ୍ରରେ ବିଶେଷ ପ୍ରାଧାନ୍ୟ ବିସ୍ତାର କରିଥାଏ । ପରିଶେଷରେ ଏତିକି କୁହାଯାଇପାରେ ଯେ ଭାବୋଦ୍ଦୀପନା ବାଦୀ ସ୍ରଷ୍ଟା କ୍ଷଣସ୍ଥାୟୀ ଅନୁଭୂତିକୁ ଉପଯୁକ୍ତ ସମୟରେ ପ୍ରକାଶ କରିପାରେ । ଏହାର ଦୃଷ୍ଟିକୋଣ ସ୍ଥାୟୀ ମୂଲ୍ୟବୋଧ ଉପରେ ପ୍ରତିଷ୍ଠିତ ନୁହେଁ । ବରଂ ସମୟକ୍ରମେ ଏହା ପରିବର୍ତ୍ତନ ହୋଇଥାଏ । ଭାବୋଦ୍ଦୀପନା ବାଦ ଆଧୁନିକ କଳା, ବିଜ୍ଞାନ ଓ ଦର୍ଶନରୁ ସମନ୍ୱୟରେ ଭିନ୍ନ ଭାବରେ ଗଠିତ । ପାଶ୍ଚାତ୍ୟ ସାହିତ୍ୟିକ ଚିନ୍ତାଧାରାରେ ଏହି ମତବାଦଟି ଅଳ୍ପକ୍ଷଣ ଆସି ଲିଭିଯାଇଥିଲା ।

ଭାଷା – ସଂସ୍କୃତ 'ଭାଷ୍' ଧାତୁରେ କର୍ମବାଚ୍ୟରେ 'ଆ' ପ୍ରତ୍ୟୟ ଯୁକ୍ତ ହେଲେ 'ଭାଷା' ଶବ୍ଦ ସୃଷ୍ଟି ହୁଏ, ଅର୍ଥାତ୍ ଯାହା କୁହାଯାଏ ତାହା ଭାଷା । ଏହାର ପ୍ରତିଶବ୍ଦ ହୋଇପାରେ 'ବଚନ' ବା ବ୍ୟକ୍ତବାଣୀ । ଗ୍ରୀକ୍ ଭାଷାରେ 'ଭାଷା'କୁ କୁହାଯାଏ ଲୋଗସ୍ (logos) ଅର୍ଥାତ୍ ଚିନ୍ତାଶକ୍ତି, କାରଣ ମଣିଷର ଚିନ୍ତାଧାରା, 'ଧ୍ୟାନ-ଧାରଣା' ଏହାରି ମାଧ୍ୟମରେ ପ୍ରକଟିତ ହୋଇଥାଏ । ତେଣୁ 'ଭାଷା' କେବଳ ମନୁଷ୍ୟର ଉଚ୍ଚାରଣକ୍ଷମ ଅବୟବରୁ ଉଦ୍‌ଗତ ଧ୍ୱନି ସମଷ୍ଟି ନୁହେଁ, ମାନବର ଚିନ୍ତାଶକ୍ତି ଉପଲବ୍ଧିର ଅଭିବ୍ୟକ୍ତି କୁ ବୁଝାଇଥାଏ ।

# ମ

**ମଙ୍ଗଳ ଆରତି** – ପ୍ରାତଃକାଳୀନ ମଂଗଳ ଆରତି ଗୀତିକା ପ୍ରାଚୀନ ଓଡ଼ିଆ ଗୀତି କବିତାର ଅନ୍ୟ ଏକ ପ୍ରକାର ଭେଦ । ପ୍ରାତଃ, ମଧ୍ୟାହ୍ନ, ସଂଧ୍ୟା ଓ ଅନ୍ୟାନ୍ୟ ସମୟରେ ଦେବତାଙ୍କ ନିକଟରେ ଆରତି ହୋଇଥାଏ । ମଂଗଳ ଆରତିର ଗାନ ବିଭିନ୍ନ ବାଦ୍ୟଯନ୍ତ୍ରର ମଧୁର ଝଙ୍କାର ମଧ୍ୟରେ ଭକ୍ତ ଚିତ୍ତ ଆନନ୍ଦବିହ୍ୱଳିତ ହୋଇ ଗାନ କରିଥାଏ । ଓଡ଼ିଶାର ବହୁମଂଗଳ ଗାନ ବା ମାଂଗଳିକ ଭାବରେ ଖ୍ୟାତ ଏହି ଗୀତିକାଗୁଡ଼ିକ ଭକ୍ତରସାଶ୍ରିତ ।

**ମଙ୍ଗଳଗୀତ** – ବିବାହ, ବ୍ରତ, ଗୃହ ପ୍ରତିଷ୍ଠାଦି କର୍ମରେ ମଙ୍ଗଳ ଉଦ୍ଦେଶ୍ୟରେ ଗାନ କରାଯାଉଥିବା ଗୀତ । ଶ୍ୟାମସୁନ୍ଦର ଧୀର ଉତ୍କଳସଂଗୀତ ପଦ୍ଧତିରେ ମଙ୍ଗଳ ଶବ୍ଦର ବ୍ୟାଖ୍ୟା କରିଛନ୍ତି ''ଶୁଭୈଶ୍ଚବାକ୍ୟୈ ବ୍ରହ୍ମ ବୌରୂପେତଂ ସ୍ୱରେଣ ଶୁଦ୍ଧେନ ଚ ପଞ୍ଚମେନ ଗେୟଂ ବିବାହାଦି ମହୋତ୍ସବେଷୁ ବଧୂପ୍ରିୟଂ ମଙ୍ଗଳଗାନ ମେତତ୍ ।''ଦ୍ରାବିଡ଼ ଭାଷାରେ 'ମଙ୍ଗଳ' ଅର୍ଥ ବିବାହ ଓ ବିବାହ ବାସରରେ ଗୀତ ହେଉଥିବା ସଂଗୀତର ନାମ ମଙ୍ଗଳଗୀତି । ଦେବାଦେବୀଙ୍କର ବିବାହ ମଙ୍ଗଳକାବ୍ୟର ଅନ୍ୟ ଅନ୍ୟରୂପ । ଦେବାଦେବୀଙ୍କ ମାହାତ୍ମ୍ୟ ବର୍ତ୍ତକ 'ବିଜୟ' କାବ୍ୟର ରୀତିରେ ମଥୁରାମଙ୍ଗଳ ରଚିତ ହୋଇଛି ।

ଓଡ଼ିଆ ମଙ୍ଗଳ କାବ୍ୟରେ ମଧୁମଙ୍ଗଳ, ମଥୁରାମଙ୍ଗଳ କାବ୍ୟ ପ୍ରଧାନ । ଓଡ଼ିଆ ମଙ୍ଗଳ କାବ୍ୟ ଦୁଇଟି ନାମକୁ ମାତ୍ର ମଙ୍ଗଳକାବ୍ୟ । ସେଥିରେ ରୀତି କାବ୍ୟଧର୍ମ ଦେଖାଯାଏ । ପରବର୍ତ୍ତି ସମୟରେ ଜଗନ୍ନାଥ ମଙ୍ଗଳ, ଶ୍ରବଣ ମଙ୍ଗଳ, ଶ୍ରୀମୁଖ ମଙ୍ଗଳ ପ୍ରଭୃତି କାବ୍ୟ ଆତ୍ମପ୍ରକାଶ କଲା ।

ବଙ୍ଗଳା ମଙ୍ଗଳ କାବ୍ୟ ଓ ଓଡ଼ିଆ ମଙ୍ଗଳ କାବ୍ୟର ଗଠନ ପୃଥକ । ବଙ୍ଗଳା ମଙ୍ଗଳକାବ୍ୟ ଦୁଇଟି ଭାଗରେ ବିଭକ୍ତ - ଗୋଟିଏ ଭାଗରେ ଗୀତ ଗାଇବାପାଇଁ ଉଦ୍ଦିଷ୍ଟ ଥିଲା ଅନ୍ୟଟି ଯାହା ପୟାର ଜାତୀୟ ଏବଂ କେବଳ ଆବୃତ୍ତି ପାଇଁ ଉଦ୍ଦିଷ୍ଟ ।

**ମନସ୍ତତ୍ତ୍ୱ** – ମନ ସମ୍ବନ୍ଧୀୟ ତତ୍ତ୍ୱ । ଫ୍ରୟେଡ଼ଙ୍କ ମନସ୍ତାତ୍ତ୍ୱିକ ତତ୍ତ୍ୱ । ଫ୍ରୟେଡ଼ଙ୍କ ମତରେ ବ୍ୟକ୍ତିର ମାନସିକ କ୍ରିୟାକଳାପ ତିନୋଟି ସ୍ତରରୁ ସୃଷ୍ଟି । ଗୋଟିଏ ଆଦିମ ପ୍ରବୃତ୍ତି (Id), ଅହମ (Igo) ଏବଂ ଶ୍ରେଷ୍ଠ ଅହମ୍ (Super Ego) । ଆଦିମ ପ୍ରବୃତ୍ତି ହିଁ ଚେତନାହୀନ ଓ ଯୌନ ସ୍ୱଭାବ ବିଶିଷ୍ଟ ।

**ମନାସ** – ଓଡ଼ିଆ ସାହିତ୍ୟର ପଦ୍ୟାତ୍ମକ ରଚନା । ଏଥିରେ କବିତ୍ୱ ଅପେକ୍ଷା ପାଣ୍ଡିତ୍ୟର ପରିଚୟ ମିଳେ । ଏଥିରେ କେତେକ ଫଳ, ଫୁଲ କିମ୍ବା ଅଳଙ୍କାରର ନାମ ଥାଏ । ଜଣେ କୌଣସି ଗୋଟିକର ନାମ ମନେ ରଖିବ ଓ ଆଉ ଜଣେ ସେହି ନାମଟି କହିଦେବ । ମନାସ କରିଥିବା ନାମଟି କେଉଁ ପଦରେ ଅଛି କହିଦେଲେ ତାହା ପଦ ପଢୁଥିବା ଲୋକ

କହିଦେବ । ମନେରଖିଥିବା ଲୋକଟି ସଂଖ୍ୟାଟି କହିଦିଏ । ପଦ୍ୟରେ ଫୁଲ, ଫଳ ଓ ଅଳଙ୍କାର କୌଶଳପୂର୍ଣ୍ଣ ସଜ୍ଜିକରଣ କବିର ବିଶେଷତା ପ୍ରତିପାଦନ କରେ ।

ମହାକବି – ସଂସ୍କୃତ ସାହିତ୍ୟରେ କବି ଭେଦରେ ଶ୍ରେଷ୍ଠ ଶ୍ରେଣୀୟ କବି । ଯେଉଁ କବିମାନଙ୍କର ଦୃଷ୍ଟିଶକ୍ତି ତୀବ୍ର ଓ ପ୍ରକାଶଭଙ୍ଗୀ ଅସାଧାରଣ, ଯେଉଁମାନେ ଚମତ୍କାରପୂର୍ଣ୍ଣ ଦୀର୍ଘକାବ୍ୟ ଲେଖିବାରେ ଏକାନ୍ତ ସମର୍ଥ ସେମାନେ ମହାକବି ଆଖ୍ୟା ଅର୍ଜନ କରନ୍ତି ।

ମହାକାବ୍ୟ – ମହାକାବ୍ୟ କାବ୍ୟ ପରଂପରାରେ ଶ୍ରେଷ୍ଠତମ ପରିଚୟ । ମହାକାବ୍ୟର ଗଠନ ରୀତି ସଂସ୍କୃତ ମହାକାବ୍ୟର କାବ୍ୟାଦର୍ଶରେ ଥିଲା । ଏହା ସର୍ଗବନ୍ଧ । ଆଠଟି କିମ୍ବା ତଦୂର୍ଦ୍ଧ୍ୱ ସର୍ଗର ପରିକଳ୍ପନାରେ ମହାକାବ୍ୟଟି ରୂପ ନିଏ । ଏହି ସର୍ଗଗୁଡ଼ିକ ଅତ୍ୟନ୍ତ ବିସ୍ତୃତ କିମ୍ବା ସଂକ୍ଷିପ୍ତ ହେବା ଉଚିତ ନୁହେଁ । ପ୍ରତ୍ୟେକ ସର୍ଗ ଗୋଟିଏ ଛନ୍ଦରେ ରଚିତ ହୁଏ କିନ୍ତୁ ସର୍ଗର ଶେଷରେ ଆଗାମୀ ସର୍ଗର କଥାବସ୍ତୁ ବିଷୟରେ ସୂଚନା ଥାଏ ଓ ସର୍ଗ ଶେଷରେ ବିଭିନ୍ନ ଛାନ୍ଦର ପ୍ରୟୋଗ ଦେଖାଯାଏ । ନାୟକ ଦେବତା କିମ୍ବା ଉଚ୍ଚ ବଂଶରେ ଜନ୍ମିତ ଉଦାତ୍ତଗୁଣଯୁକ୍ତ ହେବା ଏକାନ୍ତ ଆବାଶ୍ୟକ । ଶୃଙ୍ଗାର, ବୀର କିମ୍ବା ଶାନ୍ତରସ ମଧ୍ୟରୁ ଯେକୌଣସି ଗୋଟିଏ ଏଥିରେ ଅଙ୍ଗୀରସ ଭାବରେ ଏଥିରେ ମୁଖ୍ୟସ୍ଥାନ ଗ୍ରହଣ କରିଥାଏ ଏବଂ ଅନ୍ୟାନ୍ୟ ରସ ସେହି ଅଙ୍ଗୀରସର ପୁଷ୍ଟିସାଧନ କରିବାରେ ଅଙ୍ଗ ଭାବରେ ବିନସ୍ତ ହୋଇଥାନ୍ତି । ଆଦର୍ଶଗତ ସଂଘର୍ଷ ଏବଂ ଏ ସଂଘର୍ଷ ମାଧ୍ୟମରେ ଧର୍ମ ଓ ନ୍ୟାୟର ବିଜୟ ଓ ଅଧର୍ମ ଓ ଅନ୍ୟାୟର ଚରମ ବିପର୍ଯ୍ୟୟ ଇତ୍ୟାଦି ପରିଦୃଷ୍ଟ ହୁଏ ।

ଇଂରାଜୀ ସାହିତ୍ୟରେ ମହାକାବ୍ୟ ଆଦି, ମଧ୍ୟ, ଅନ୍ତ ସମନ୍ୱିତ ବର୍ଣ୍ଣନାକ୍ରମ କାବ୍ୟ । ଆଧୁନିକ କବି ଏଜରା ପାଉଣ୍ଡ ତାଙ୍କ ABC of Reading ଗ୍ରନ୍ଥରେ ମହାକାବ୍ୟକୁ An epic is a poem including history ଏବଂ କଥାଶିଳ୍ପୀ ମେରି ମାକାର୍ଥି ମହାକାବ୍ୟ " xx of a work of art supressing the dimension of realism" ଅର୍ଥାତ୍ ମହାକାବ୍ୟର ଐତିହାସିକ ଚେତନା, ସମକାଳୀନ ବାସ୍ତବତାର ଆୟତନକୁ ଅତିକ୍ରମ କରି ଚିରକାଳୀନତା ଲାଭ କରିବାର ଶକ୍ତି - ଏହାହିଁ ହେଉଛି ତାର ଦୁଇ ପ୍ରଧାନ ପ୍ରବୃତ୍ତି । ଇଂରାଜୀରେ ଅଛି "Epic is not a matter of length and size but of weight" ଗ୍ରନ୍ଥର ଦୈର୍ଘ୍ୟ କିମ୍ବା ପୃଷ୍ଠଭୂମିର ବିଶାଳତା ନୁହେଁ, ଭାବବସ୍ତୁର ଗଭୀରତା ଏବଂ ଓଜସ୍ୱିନୀତା ହିଁ ଆଧୁନିକ ମହାକାବ୍ୟର ପ୍ରଧାନ ବୈଶିଷ୍ଟ୍ୟ ।

ମହାଭାରତ – କବି ସାରଳା ଦାସଙ୍କ କୃତିମାନଙ୍କ ମଧ୍ୟରେ ବୃହତ୍ତମ କୃତି । ଏହା ଓଡ଼ିଶାର ଜାତୀୟ ମହାକାବ୍ୟ, ଉତ୍କଳୀୟ ଆଚାର ବ୍ୟବହାର, ଚଳଣୀ, ବିଶ୍ୱାସ, ପରମ୍ପରା, ବେଶଭୂଷା, ଖାଦ୍ୟପେୟ ପ୍ରଭୃତି ଆଖ୍ୟାନ ହେବାର ଓଡ଼ିଆ ସଂସ୍କୃତିର ଜୟଗୀତିକା । ତେଣୁ 'ଯାହା ନାହିଁ ଭାରତେ, ତାହା ନାହିଁ ଭାରତେ''ବୋଲି କୁହାଯାଇଛି । ସାରଳା

ମହାଭାରତ ସଂସ୍କୃତ ମହାଭାରତର ଅନୁଗତ ନୁହେଁ କିମ୍ବା ଅବିକଳ ଅନୁକରଣ ନୁହେଁ । ଏହା ଦାଣ୍ଡିବୃତ୍ତରେ ରଚିତ । ସାରଳା ମହାଭାରତ ଏକ ପୁରାଣ କେବଳ ନୁହେଁ, ଏହାର ଐତିହାସିକ ମୂଲ୍ୟ ମଧ କମ୍ ନୁହେଁ । ସାରଳା ମହାଭାରତରେ ସାରଳା ଦାସଙ୍କର ମୌଳିକତା ଲକ୍ଷଣୀୟ । ମୂଳ ସଂସ୍କୃତ ମହାଭାରତର ଶ୍ଳୋକ ସଂଖ୍ୟା ଏକଲକ୍ଷ ହେବାସ୍ଥଳେ ସାରଳା ମହାଭାରତର ପଦସଂଖ୍ୟା ଏକଲକ୍ଷ ଚାଳିଶ ହଜାର । ପୁନଶ୍ଚ ଦୁଇ ଗ୍ରନ୍ଥରେ ପର୍ବ ସଂଖ୍ୟା ଅଠର ହୋଇଥିଲେ ହେଁ ସାରଳାଙ୍କ ଗ୍ରନ୍ଥରେ ଏଗୁଡ଼ିକର ସଜ୍ଜିକରଣ ଏବଂ ବିଷୟବସ୍ତୁର ସଂଯୋଜନାରେ ପାର୍ଥକ୍ୟ ଦେଖାଯାଏ । ସାରଳା ଦାସ ଏହି ଗ୍ରନ୍ଥର ବହୁ ସ୍ଥଳରେ ଅନେକ ଲୋକକଥା, ଉପାଖ୍ୟାନ ଇତ୍ୟାଦି ନିଜର କଳ୍ପନାରୁ ସୃଷ୍ଟି କରି ମହାଭାରତରେ ସ୍ଥାନ ଦେଇଛନ୍ତି ।

**ମହିମା** – ଊନବିଂଶ ଶତକରେ ଓଡ଼ିଶାରେ ଦେଖାଦେଇଥିବା ଧର୍ମ ବିଶେଷ । ଧର୍ମଦୃଷ୍ଟିରୁ ମହିମା ଧର୍ମର ଅନ୍ୟନାମ ଅଲେଖ ଧର୍ମ । ଏହା ବହୁଦେବତା ବାଦର ବିରୋଧରୁ ଜନ୍ମନେଇଛି । ପୌରହିତ୍ୟ କର୍ମକାଣ୍ଡ ଓ ରକ୍ଷଣଶୀଳତାର ପ୍ରତିପକ୍ଷ ଧର୍ମୀୟ ଆଚରଣ । ମହିମା ଧର୍ମରେ ସମାଜର ନିମ୍ନତମ ବର୍ଗର ପ୍ରବେଶାଧିକାର ଅଧିକ । ପଞ୍ଚସଖା ସାହିତ୍ୟ, ଭୀମଭୋଇ, ଅରକ୍ଷିତ ଦାସ, ଆର୍ତ୍ତଦାସ ଓ କୃଷ୍ଣଦାସ ବହୁ ମାଳିକା, ଭଜନ, ଜଣାଣ, ଗୀତା, ଚନ୍ଦିକା ଆଦି ରଚନା ହୋଇଛି ।

**ମତ୍ସ୍ୟେନ୍ଦ୍ର ଗୀତା** – ଏ ଗ୍ରନ୍ଥଟିର ରଚୟିତା ମତ୍ସ୍ୟେନ୍ଦ୍ରନାଥ । ଏହା ଚର୍ଯ୍ୟାସାହିତ୍ୟର ପରବର୍ତ୍ତୀ ପ୍ରଥମ ରଚନା ଭାବରେ ଅନୁମାନ କରାଯାଏ । କେତେକ ଆଲୋଚକ ମତ୍ସ୍ୟେନ୍ଦ୍ରନାଥଙ୍କ ଜୀବନକାଳ ୧୧ଶ-୧୨ଶ ଶତାବ୍ଦୀ ବୋଲି ଧରିଥିବାରୁ ଏହାକୁ ଦ୍ୱାଦଶ ଶତାବ୍ଦୀର ରଚନା ଭାବରେ ସ୍ଥାନ ଦିଅନ୍ତି ।

**ମାର୍କସବାଦ** – କାର୍ଲମାର୍କସ ଯେଉଁ ରାଜନୀତିକ ଚିନ୍ତାଧାରା ପ୍ରକାଶ କରିଥିଲେ ତାହାକୁ ମାର୍କସବାଦ କୁହାଯାଏ । କେତେକ ଏହାକୁ ସାମ୍ୟବାଦ ବୋଲି କହନ୍ତି । ଏହି ମତବାଦ ୭ଟି ନୀତି ଉପରେ ପ୍ରତିଷ୍ଠିତ (୧) ଦ୍ୱନ୍ଦ୍ୱମୂଳକ ବସ୍ତୁବାଦ (୨) ଉଦ୍‌ବୃତ୍ତ ମୂଲ୍ୟ (୩) ଶ୍ରେଣୀ ସଂଘର୍ଷ (୪) ପୁଞ୍ଜିବାଦର ଧ୍ୱଂସ (୫) ବିପ୍ଳବାତ୍ମକ ପନ୍ଥା (୬) ସର୍ବହରାର ଏକଛତ୍ରବାଦ (୭) ରାଷ୍ଟ୍ରର ବିଲୋପସାଧନ ପ୍ରଭୃତି । କାର୍ଲମାର୍କସ ଥିଲେ ସମାଜବାଦର ପ୍ରଧାନ ପ୍ରବକ୍ତା । ଏହାର ପ୍ରଭାବରେ ସାହିତ୍ୟରେ ମାର୍କସବାଦ ବିସ୍ତାର କଲା ।

**ମାତ୍ରା** – ସ୍ୱରବର୍ଣ୍ଣ ବ୍ୟଞ୍ଜନବର୍ଣ୍ଣ ସହିତ ମିଳିତ ହେଲେ ସ୍ୱରବର୍ଣ୍ଣର ଗୋଟିଏ ଚିହ୍ନ ମାତ୍ର ରହେ । ଏହାକୁ ମାତ୍ରା କହନ୍ତି । ଯଥା - କ + ଅ = କ

ମାତ୍ରାଛନ୍ଦ – ସଂଗୀତ ଓ କବିତା ଉଭୟର ମାତ୍ରା କହିଲେ ଉଚ୍ଚାରଣର କାଳ ପରିମାଣ ବୁଝାଯାଏ । ଏହିକାଳ ଘଡ଼ିଘଣ୍ଟାର କାଳନୁହେଁ, ଏହା ଅକ୍ଷର ଉଚ୍ଚାରଣ ନିମିତ୍ତ ଆବଶ୍ୟକ ହେଉଥିବା ବାକ୍‌ଯନ୍ତ୍ରର ପ୍ରୟାସର କାଳ । ଏହି ପ୍ରୟାସର ପରିମାଣ ଅନୁସାରେ ଅକ୍ଷରର ମାତ୍ରାବୋଧ ଆସେ । ଏହି ଭିନ୍ନ ଭିନ୍ନ ମାତ୍ରା – ହ୍ରସ୍ୱ, ଦୀର୍ଘ ଓ ପ୍ଳୁତ । ଓଡ଼ିଆରେ ମାତ୍ରାବୃତ୍ତର ବିଭାଜନ ତିନିପ୍ରକାର – ବର୍ଣ୍ଣମାତ୍ରିକ, ଧ୍ୱନିମାତ୍ରିକ ଓ ସ୍ୱରମାତ୍ରିକ ହୋଇପାରେ । ବର୍ଣ୍ଣ ଗଣନା ଅନୁସାରେ ବକ୍ତବ୍ୟ ପରିମିତ ହୋଇ ଛନ୍ଦ ସୃଷ୍ଟି ହୁଏ ଏବଂ ତାହା ହୁଏ ବର୍ଣ୍ଣମାତ୍ରିକ ଛନ୍ଦ । ଅକ୍ଷର ଅନୁଯାୟୀ ବିଭାଜନକୁ ଧ୍ୱନିମାତ୍ରିକ ଛନ୍ଦ କୁହାଯାଏ । ସ୍ୱରର ହ୍ରସ୍ୱ ଓ ଦୀର୍ଘକା ଗୁରୁଲଘୁ ଅନୁସାରେ ବକ୍ତବ୍ୟର ପରିମାପ ପଦ୍ଧତି ସ୍ୱରମାତ୍ରିକ ।

ଭାଷାତତ୍ତ୍ୱ ଅନୁଯାୟୀ କୌଣସି ଧ୍ୱନି ଉଚ୍ଚାରଣ ପାଇଁ ଯେଉଁ ସମୟ ଲାଗେ ତାକୁ ଭାଷା ଅଧ୍ୟୟନରେ ମାତ୍ରା ବା ମାତ୍ରାକାଳ କୁହାଯାଏ ।

ମାଦଳାପାଞ୍ଜି – ପୁରୀ ଜଗନ୍ନାଥ ମନ୍ଦିରର ରୀତିନୀତି, ସେବା, ପୂଜାବିଧି, ଉତ୍କଳ ଗଜପତି ମହାରାଜାମାନଙ୍କର ରାଜ୍ୟଶାସନର ବିବରଣୀ ଏବଂ ସମକାଳୀନ ସାମାଜିକ ଓ ରାଜନୀତିକ ଚିତ୍ର ଇତ୍ୟାଦିର ସମୃଦ୍ଧ ଲିଖିତ ପାଞ୍ଜ 'ମାଦଳାପାଞ୍ଜି' ନାମରେ ଅବିହିତ । ମାଦଳାପାଞ୍ଜି ଲେଖିବା ଶ୍ରୀମନ୍ଦିରର ଏକ ସେବା । ମାଦଳାପାଞ୍ଜିର ପାଞ୍ଚଟି ବିଭାଗ ରହିଛି ଯଥା (୧) ରାଜଖଞ୍ଜା (୨) ଦେଶ ଖଞ୍ଜା (୩) କର୍ମାଙ୍ଗୀ (୪) ଦିନପାଞ୍ଜି (୫) ଚକଡ଼ା ।

ରାଜଖଞ୍ଜା ମାଦଳାରେ ରାଜାମାନଙ୍କ ବିଶେଷ ଘଟଣାବଳୀ ଲିପିବଦ୍ଧ ହେଉଥିଲା । ଏହା ଚଢ଼ାଉକରଣଙ୍କ ପାଖରେ ରହୁଥିଲା । ଦେଶଖଞ୍ଜାରେ ଦାନ, ଦକ୍ଷିଣା, ସ୍ଥାବର ଓ ଅସ୍ଥାବର ସମ୍ପତ୍ତି ଇତ୍ୟାଦିର ତାଲିକା ରଖାଯାଉଥିଲା । ଏହା କୋଠକରଣଙ୍କ ପାଖରେ ରହୁଥିଲା । କର୍ମାଙ୍ଗୀରେ ଜଗନ୍ନାଥ ମନ୍ଦିରର ପ୍ରତିଦିନର ରୀତି-ନୀତି, ପର୍ବ-ପର୍ବାଣୀ ଓ ଅନ୍ୟାନ୍ୟ ମୁଖ୍ୟ ଘଟଣାବଳୀ ଲିପିବଦ୍ଧ ହେଉଥିଲା । ପ୍ରତିଦିନ ଏହା ବେହରଣରେ ପଠିତ ହେଉଥିଲା । ଦିନପାଞ୍ଜି ମାଦଳାରେ ଲେଖା ପ୍ରତିବର୍ଷ ବିଷୁବସଂକ୍ରାନ୍ତି ଦିନଠାରୁ ଆରମ୍ଭ ହେଉଥିଲା । ଦୈବଜ୍ଞ ଉପାଧିଧାରୀ ଶ୍ରୀ ମନ୍ଦିରର ଗଣକ ଏହାକୁ ପ୍ରତ୍ୟହ ପ୍ରସ୍ତୁତ କରି ଶ୍ରୀମନ୍ଦିରରେ ଶ୍ରୀଜୀଉଙ୍କ ଅବକାଶ ସମୟରେ ପାଠ କରୁଥିଲେ । ଚକଡ଼ା କେବଳ ମାଦଳାକରଣମାନେ ଶ୍ରୀକ୍ଷେତ୍ରଠାରେ ମାଦଳାପାଞ୍ଜି ଲିଖନ କରୁଥିଲେ । ବିଭିନ୍ନ ଅଂଚଳରେ ସେମାନଙ୍କ ବଂଶଧରମାନେ ମଧ୍ୟ ପାଞ୍ଜି ରଚନା କରୁଥିଲେ ।

'ପ୍ରାଚୀନ ଉତ୍କଳ'ରେ ଐତିହାସିକ ଜଗବନ୍ଧୁ ସିଂହ କହନ୍ତି ''ମର୍ଦ୍ଦଳାକାରରେ ପାଞ୍ଜି ବନ୍ଧା ହୋଇ ରହେ, ତେଣୁ ଏହାର ନାମ ମାଦଳାପାଞ୍ଜି ।'' ତେଣୁ ଯେକୌଣସି ଏମ ଅସଂଲଗ୍ନ ବୃହଦାକାରର ଖାତା ବା କାଗଜବିଡ଼ାକୁ ଓଡ଼ିଆମାନେ ବେଳେବେଳେ ମାଦଳାପାଞ୍ଜି ବୋଲି କହିଥାନ୍ତି । 'ମାଦଳା'ର ଆଭିଧାନିକ ଅର୍ଥ ହସ୍ତପଦ ହୀନ ଶରୀର ।

ଜଗନ୍ନାଥ ମହାପ୍ରଭୁ ଅସମ୍ପୂର୍ଣ୍ଣ ବା ହସ୍ତପଦହୀନ ମାଦଳ ହୋଇଥିବାରୁ ତାକୁ କେନ୍ଦ୍ରକରି ରଚିତ ଏହି ପାଞ୍ଜିକୁ ମାଦଳାପାଞ୍ଜି ଭାବରେ ନାମିତ କରାଯାଇଛି । କେତେକଙ୍କ ମତରେ ପ୍ରାଚୀନ ଶାସ୍ତ୍ରାନୁସାରେ ମାଦଳା ଦୁଇଟି ଶବ୍ଦ (ମାଦ+ଲା)ର ସମଷ୍ଟି । 'ମାଦ'ର ଅର୍ଥ ଗୌରବ ବା ପ୍ରଶଂସାମୂଳକ ଉକ୍ତି ଓ 'ଲା'ର ଅର୍ଥ ସଂକଳନ ଓ ସଂଗ୍ରହ । ଅତଏବ ମାଦଳାର ଅର୍ଥ ରାଜାମାନଙ୍କ ପ୍ରଶସ୍ତି ସଂକଳନ ଏବଂ ଯେଉଁ ପାଞ୍ଜିରେ ଏହି ଇତିହାସ ସଂକଳିତ ତାହା 'ମାଦଳାପାଞ୍ଜି' । ପ୍ରାଚୀନ ଗଦ୍ୟ ସାହିତ୍ୟରେ ଓ ଓଡ଼ିଆ ଗଦ୍ୟ ସାହିତ୍ୟର କ୍ରମବିକାଶର ଏହାର ଭୂମିକା ଗୁରୁତ୍ୱପୂର୍ଣ୍ଣ ।

**ମାନବତତ୍ତ୍ୱ** – ଏହା ଏକ ବୌଦ୍ଧିକ ଆନ୍ଦୋଳନ । ରେନାଁସା ଯୁଗର ଏକ ବିଶିଷ୍ଟ ଆନ୍ଦୋଳନ ରୂପେ ଏହା ପରିଚିତ । ମଧ୍ୟଯୁଗୀୟ ଅନେକ ଭାବନାଠାରୁ ପୃଥକ ଚିନ୍ତାଧାରା ନେଇ ଏ ମାନବବାଦ ଆନ୍ଦୋଳନର ସୂତ୍ରପାତ । ଏହା ମନୁଷ୍ୟର ସମ୍ମାନ ବା ମର୍ଯ୍ୟାଦା ତଥା ପୂର୍ଣ୍ଣାଙ୍ଗକରଣ ଉପରେ ବିଶେଷ ଗୁରୁତ୍ୱ ଆରୋପ କରିଥିଲା । ଏହି ଆନ୍ଦୋଳନ ପୃଥିବୀକୁ ଏକ ପ୍ରେମ ତଥା ଆକର୍ଷଣ ବସ୍ତୁରୂପେ ଅଭିହିତ କରିବା ସଂଗେ ସଂଗେ ହେତୁବାଦ ଉପରେ ବିଶ୍ୱାସ କରୁଥିଲେ । ଏ ଆନ୍ଦୋଳନ ରୋମ ତଥା ଗ୍ରୀକ୍ ସଭ୍ୟତାର ସାହିତ୍ୟ ଓ ଶିକ୍ଷାକୁ ବିଶେଷ ସମ୍ମାନ ପ୍ରଦର୍ଶନ କରିଥିଲା କାରଣ ଗ୍ରୀକ୍ ବା ରୋମ୍ ସଭ୍ୟତାରେ ମାନବର ମର୍ଯ୍ୟାଦାକୁ ସମ୍ମାନିତ କରାଯାଉଥିଲା । ମାନବାଦୀମାନେ ପୁରାତନ ସାହିତ୍ୟ ତଥା ପରମ୍ପରା ପ୍ରଚଳନ ଓ ଆବିଷ୍କାର ଦିଗରେ ଚେଷ୍ଟିତ ଥିଲେ । ବିଶୁଦ୍ଧ ବାଇବେଲର ପ୍ରଚଳନ ଓ ଚର୍ଚ୍ଚ କ୍ଷେତ୍ରରେ ସଂସ୍କାର ମଧ୍ୟ ଏ ଆନ୍ଦୋଳନର ଅନ୍ୟତମ ଦିଗଥିଲା । ଶିକ୍ଷାକ୍ଷେତ୍ରରେ ସେମାନେ ମାନସିକ ତଥା ଶାରିରୀକ ଶିକ୍ଷାର ପ୍ରବର୍ତ୍ତନ ପାଇଁ ଚେଷ୍ଟିତଥିଲେ ।

**ମାନବିକତା** – ମଣିଷ ପଣିଆ ସମ୍ବନ୍ଧୀୟ ଚେତନା । ଯେଉଁ ଗୁଣ ଦ୍ୱାରା ମନୁଷ୍ୟର ଅନ୍ତଃ ଓ ବହିଃ ସଂପର୍କ, ଜଗତ୍ ଓ ଜୀବନର ଏକ ସୁସ୍ଥ ସୁନ୍ଦର ଓ ସ୍ୱାଭାବିକତା ନେଇ ଗଢ଼ିଉଠିଥାଏ ଏବଂ ତାହାର ଅବବୋଧରେ ସତ୍ୟର ଅନୁସନ୍ଧାନ, ଅହିଂସାପୂର୍ଣ୍ଣ ସହାବସ୍ଥାନ, ସୃଜନାତ୍ମକ ସ୍ୱାଧୀନତା, ଶାନ୍ତି ଓ ସୋହାର୍ଦ୍ଦପୂର୍ଣ୍ଣ ଉଚ୍ଚାରଣ, ଆଭିଜାତ୍ୟ ଓ ଅଭିମତର ମୁକ୍ତଧାରା, ଅର୍ଥନୈତିକ ସାମ୍ୟ  ତଥା ସର୍ବୋପରି ଏକ ସତ୍ୟନିଷ୍ଠ ସତ୍ ସଚିତ୍ର ସଂସ୍କୃତି ନିରୂପଣ ହୋଇପାରେ ତାହାକୁ ମାନବିକତା ବୋଲି କୁହାଯାଏ ।

**ମାୟା** – ମାୟାବାଦର ମୁଖ୍ୟ ପ୍ରବକ୍ତା ଶଙ୍କରାଚାର୍ଯ୍ୟଙ୍କ ମତରେ ବେଦାନ୍ତରେ ବର୍ଣ୍ଣିତ ବ୍ରହ୍ମ ନିର୍ବିକଳ୍ପ ସତ୍ୟ । ମାୟାରେ ସେ ସଂଯୁକ୍ତ । ତେଣୁ ସେହି ବ୍ରହ୍ମ ଅନେକ ପ୍ରପଞ୍ଚରେ ପ୍ରକଟିତ ହୋଇଛି । ମାୟା ତ୍ରିଗୁଣାତ୍ମକ କିନ୍ତୁ, ଅନିର୍ବଚନୀୟ । ମାୟାର ଦୁଇଟି ଶକ୍ତି ଆବରଣ ଓ

ବିକ୍ଷେପଣ । ମାୟାର ଆବରଣ ଶକ୍ତି ବ୍ରହ୍ମର ନିରୁପାଧିକ ଓ ନିର୍ଗୁଣ ସ୍ୱରୂପକୁ ଆବୃତ କରି ରଖେ ଓ ବିକ୍ଷେପଣ ଶକ୍ତିଦ୍ୱାରା ନାମର ରୂପାତ୍ମକ ସୃଷ୍ଟିର ସମ୍ଭବହୁଏ । ଏଥିରୁ ମାୟା ହେଉଛି ପ୍ରକୃତି । ଭାରତୀୟ ସନ୍ଥ ସାହିତ୍ୟ ଓ ଓଡ଼ିଆ ପଞ୍ଚସଖା ସାହିତ୍ୟରେ ମାୟାର ବର୍ଣ୍ଣନା ଦେଖାଯାଏ ।

**ମାଳଶ୍ରୀ** – ଶାକ୍ତ ଭଜନକୁ ଓଡ଼ିଆ ସାହିତ୍ୟରେ ମାଳଶ୍ରୀ କୁହାଯାଉଛି । ମାଳଶ୍ରୀ ଶବ୍ଦ ସମ୍ଭବତଃ ମୌଳୀଶ୍ରୀ ଅର୍ଥାତ୍ ମୌଳୀ ଅର୍ଥ ଶିର ଓ ଶ୍ରୀ ପୃଥିବୀ ଶବ୍ଦରୁ ଗୃହୀତ । ମହାମାୟା ପୃଥିବୀରେ ସର୍ବଶ୍ରେଷ୍ଠ ଶକ୍ତିଦେବୀ ବୋଲି ତାଙ୍କ ଉଦ୍ଦେଶ୍ୟରେ ରଚିତ ଭଜନ, ଜଣାଣ ମୌଳଶ୍ରୀ ନାମରେ କଥିତ ଓ ପରବର୍ତ୍ତୀ ସମୟରେ ଏହା ମାଳଶ୍ରୀ ଭାବେ କଥିତ ।

**ମାଳଶ୍ରୀ** – ସଂଗୀତର ଏକ ରାଗକୁ ବୁଝାଏ । ଏହା କଲ୍ୟାଣୀ ଥାଟ୍‌ରୁ ଉତ୍ପନ୍ନ । ଏହାର ଜାତି ଔଡ଼ବ । ଏଥିରେ 'ରେ' 'ଧା' ସ୍ୱର ବର୍ଜ୍ଜିତ । ଏହାର ସମୟ ସାୟଂକାଳ ।

**ମାଳିକା** – ଦେଶ, କାଳ, ପାତ୍ର ସଂପର୍କୀୟ ଭବିଷ୍ୟତ କଥା ଜଣାଇ ଦିଆଯାଇଥିବା ବାଣୀ ବା ପ୍ରବଚନ ବା ଗୀତ ମାଳିକା ନାମରେ ଖ୍ୟାତ । ଯୋଗ ସିଦ୍ଧ ସାଧକମାନେ ଦ୍ରଷ୍ଟାଭାବେ ଭବିଷ୍ୟତକାଳର ଲକ୍ଷଣ ସଂପର୍କରେ ସୂଚନା ପ୍ରଦାନ କରିଥାନ୍ତି । ଅଚ୍ୟୁତାନନ୍ଦଙ୍କ ଲିପିବଦ୍ଧ ବାଣୀ ମାଳିକା ନାମରେ ଓଡ଼ିଶାରେ ପରିଚିତ ।

**ମାହାତ୍ମ୍ୟ** – ପୌରାଣିକ ତଥା ପୌରହିତ୍ୟ ପରଂପରାର ବିଶିଷ୍ଟ ପରିଚୟ ବହନ କରୁଥିବା ସୃଷ୍ଟି ମାହାତ୍ମ୍ୟ ନାମରେ କଥିତ । ପୁରାଣରେ ତୀର୍ଥ, ମାସ, ଦେବାଦେବୀଙ୍କ ମାହାତ୍ମ୍ୟ ବର୍ଣ୍ଣନା ରହିଛି ।

**ମିନିଗଳ୍ପ** – ଊନବିଂଶ ଶତାବ୍ଦୀର ପ୍ରଥମ ଭାଗରେ କ୍ଷୁଦ୍ର ଉପନ୍ୟାସ ଯେପରି କ୍ଷୁଦ୍ରଗଳ୍ପର ଜନ୍ମପାଇଁ ପଥ ସୁଗମ କରିଦେଲା, ବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ କ୍ଷୁଦ୍ରଗଳ୍ପ ସେହିପରି ମିନିଗଳ୍ପ ରଚନାର କ୍ଷେତ୍ର ପ୍ରସ୍ତୁତ କରିଦେଲା । ନିଜର ଗଳ୍ପ ଭାବନାକୁ ଚିତ୍ରାୟିତ କରିନୁହେଁ, ରେଖାନ୍ୱିତ କରି ପ୍ରକାଶ କରିବାର ଶୈଳୀ ଚିତ୍ରଶିଳ୍ପୀଠାରୁ ପ୍ରେରଣା ପାଇଲା ଗାଳ୍ପିକ । ଅଣୁରୁ ପରମାଣୁ ଭଳି କ୍ଷୁଦ୍ରଗଳ୍ପ ଭିତରୁ ମିନିଗଳ୍ପର ଉଦ୍ଭବ । ମିନିଗଳ୍ପର ଆବେଦନ ଏହାର ଆକାର ହ୍ରସ୍ୱତା ଯୋଗୁ ନୁହେଁ, ତା'ର କାରଣ ଗାଳ୍ପିକର ଆତ୍ମାନୁଶୀଳନ ଓ ବସ୍ତୁଭିତ୍ତିକ ଭାବ ଏଥିରେ ଆଭାସଚିତ୍ର ଭାବରେ ଅଙ୍କିତ । ଏହାର ବୌଦ୍ଧିକ ଆବେଦନ ଏତେ ତୀବ୍ର । କ୍ଷୁଦ୍ରଗଳ୍ପଠାରୁ ମିନିଗଳ୍ପର ଭାଷା ଓ ଭାଷ୍ୟ ଆହୁରି ସଂଯତ ଓ ଶୃଙ୍ଖଳିତ ।

**ମିଶ୍ର ବୃତ୍ତ** – ସାଧୁଭାଷାରେ ରଚିତ ପଲ୍ଲୀର ଜାତୀୟ ଛନ୍ଦରେ ଶବ୍ଦ ମଧ୍ୟବର୍ତ୍ତୀ ଯୁଗ୍ମ ଧ୍ୱନିକୁ ଏକ କଳା ବା ମାତ୍ରା କୁହାଯାଏ ଏବଂ ଶବ୍ଦାନ୍ତ ଯୁଗ୍ମ ଧ୍ୱନିକୁ ଦୁଇକଳା ବା ମାତ୍ରା ଦିଆଯାଏ । କାରଣ ଶବ୍ଦ ମଧ୍ୟବର୍ତ୍ତୀ ଯୁଗ୍ମଧ୍ୱନିକୁ ସଂଶିଷ୍ଟ ଉଚ୍ଚାରଣ କରାଯାଏ ଏବଂ

ଶବ୍ଦାନ୍ତ ଯୁଗ୍ମଧ୍ୱନିକୁ ବିଶିଷ୍ଟ ଉଚ୍ଚାରଣ କରାଯାଏ । ମାତ୍ରା ବା କଳା ଗଣନାର ଏହି ବୈଚିତ୍ର୍ୟ ଯୋଗୁ ଏହି ଛନ୍ଦର ନାମ ଜଟିଳ ବା ମିଶ୍ର କଳା ମାତ୍ରିକ, ଅକ୍ଷର ମାତ୍ରିକ ଛନ୍ଦ ରଖାଯାଇଛି ।

**ମୁକ୍ତକ** – ସଂସ୍କୃତ ଅଳଙ୍କାର ଶାସ୍ତ୍ରରେ ମୁକ୍ତକ କାବ୍ୟର ଲକ୍ଷଣ ହେଉଛି ''ଛନ୍ଦୋବଦ୍ଧ ପଦଂ ପଦ୍ୟଂତେନ ମୁକ୍ତେନ ମୁକ୍ତକମ'' । ମୁକ୍ତକ ହେଉଛି ଏକ ପ୍ରକାର ପଦ୍ୟ ରଚନା । ଏହି ରଚନାରେ ଗୋଟିଏ ପଦ ଅନ୍ୟପଦକୁ ଅପେକ୍ଷା ନକରି ଅର୍ଥ ପ୍ରକାଶ କରେ । ସଂସ୍କୃତ କାବ୍ୟ ପରମ୍ପରାରେ ତିନି ପ୍ରକାର ମୁକ୍ତକ ଦେଖାଯାଏ ଯଥା - ଶୃଙ୍ଗାରୀମୁକ୍ତକ, ନୀତି ମୁକ୍ତକ ଓ ସ୍ତୋତ୍ରମୁକ୍ତକ । ପ୍ରାଚୀନ ଭାରତୀୟ ଗୀତିକାବ୍ୟ ଦୁଇଟି ଶୈଳୀରେ ରଚିତ- ମୁକ୍ତକ ଓ ପ୍ରବନ୍ଧ । ମୁକ୍ତକକୁ କେହି କେହି ଛାନ୍ଦସିକ ଯୌଗିକ ମୁକ୍ତକ, ସ୍ୱରବୃତ୍ତ ମୁକ୍ତକ, ମାତ୍ରାବୃତ୍ତ ମୁକ୍ତକ, ଭାବରେ ପରିଚିତ କରାଇ ବଳକାକୁ ଯୌଗିକ ବୃତ୍ତ ପର୍ଯ୍ୟାୟରେ ରଖନ୍ତି ।

**ମୁକ୍ତିତତ୍ତ୍ୱ** – ପୃଥିବୀର ପ୍ରାୟ ପ୍ରତ୍ୟେକ ଧର୍ମର ଶେଷ ଲକ୍ଷ୍ୟ ମୁକ୍ତି ବା ନିର୍ବାଣ । ବୈଷ୍ଣବତତ୍ତ୍ୱରେ ମୁକ୍ତି ଚାରିପ୍ରକାର ଯଥା ସାରୋପ୍ୟ, ସାରୋଷ୍ଟ୍ୟ, ସାଲୋକ୍ୟ ଓ ସାଯୁଜ୍ୟ । ଚୈତନ୍ୟଙ୍କ ପ୍ରଚାରିତ ଆଦର୍ଶରେ ମୁକ୍ତି ଶେଷ ଲକ୍ଷ୍ୟ ନୁହେଁ । ଶେଷ ଲକ୍ଷ୍ୟ କୃଷ୍ଣ ପାଦସେବା । ଭକ୍ତର ଏହା ଆବେଗମୟ ଆବେଦନ ହୋଇଥିବାରୁ ଏହା ସାଯୁଜ୍ୟ ବ୍ୟତୀତ ମୁକ୍ତି ତହିଁରେ ସ୍ୱୀକୃତି ପାଇଚି । କିନ୍ତୁ ପଞ୍ଚସଖା ମାନେ ଥିଲେ ସାଯୁଜ୍ୟ ମୁକ୍ତିର ଉପାସକ । ଏହି ସାଯୁଜ୍ୟ ମୁକ୍ତି ପ୍ରକାରନ୍ତରରେ ଶୂନ୍ୟ ବ୍ୟତୀତ କିଛିନୁହେଁ । ଅସ୍ଥାୟୀ ଦୁଃଖମୟ ସଂସାର ପାର୍ଥିବ ଐଶ୍ୱର୍ଯ୍ୟ ଓ ପ୍ରଭାବକୁ ସେମାନେ ଅସ୍ୱୀକାର କରି ପରମାନନ୍ଦ (ଶୂନ୍ୟାନନ୍ଦ) କୁ ସ୍ୱୀକାର କରିବା ହିଁ ପଞ୍ଚସଖାଙ୍କ ମୁକ୍ତିତତ୍ତ୍ୱର ସାରକଥା । ସେଥିପାଇଁ ଭୋଗ ସେମାନଙ୍କ ଦୃଷ୍ଟିରେ ବଡ଼ ନୁହେଁ । ଶୂନ୍ୟ ସହ ନିଜକୁ 'ଯୋଗ' କରିବା (ସାଯୁଜ୍ୟ ମୁକ୍ତି) ହିଁ ତାଙ୍କଠାରେ ବଡ଼ ହୋଇଛି ।

**ମୁଖସନ୍ଧି** – ସଂସ୍କୃତ ନାଟକର ନାଟକୀୟ କ୍ରମପରିଣତିର ପାଞ୍ଚଟି ସ୍ତର ଥାଏ । ଯଥା (କ) ମୁଖ ବା ମୁଖସନ୍ଧି (ଖ) ପ୍ରତିମୁଖସନ୍ଧି (ଗ) ଗର୍ଭ (ଘ) ଅବମର୍ଶ (ଙ) ନିର୍ବହଣ । ମୁଖସନ୍ଧିରେ ମୂଳଘଟଣାର ଉତ୍ପତ୍ତି ସୂଚିତ ହୋଇଥାଏ ।

**ମୁଦ୍ରା** – ଓଡ଼ିଆ ରୀତିକାବ୍ୟର ଏକ ଲକ୍ଷଣ । ସ୍ୱ-ଅଭିପ୍ରାୟ ଯୁକ୍ତ ଯୋଜନାକୁ ମୁଦ୍ରା କୁହାଯାଏ । ବୌଦ୍ଧ ତାନ୍ତ୍ରିକ ପଦ୍ଧତିରେ ଏହା ଏକ ଆନନ୍ଦଦାୟକ କ୍ରିୟା । ବୌଦ୍ଧ ସିଦ୍ଧମାନେ ନୈରାତ୍ମାକୁ ମହାମୁଦ୍ରା ରୂପେ ଗ୍ରହଣ କରନ୍ତି । ସାହିତ୍ୟରେ ଏହା ଏକପ୍ରକାର ବର୍ଣ୍ଣନା । ମୁଦ୍ରା ହେଉଛି ପଦ, ବାକ୍ୟ, ବିଭକ୍ତି, ବଚନ, ସମୁଚୟ ଓ ସଂବୃତ୍ତି ଭେଦରେ ଛଅପ୍ରକାର । ଯଥା - ପଦମୁଦ୍ରା, ବିଭକ୍ତିମୁଦ୍ରା, ବଚନମୁଦ୍ରା ଇତ୍ୟାଦି । ଏପରି ରଚନାରେ କାବ୍ୟିକ ବିଶେଷତା ହେଉଛି କବିର ବୁଦ୍ଧି ଓ ବିଦ୍ୟାର କସରତ ।

**ମେଟାଫିଜିକ୍ସ** – ଭୌତିକ ବିଜ୍ଞାନର ପରବର୍ତ୍ତୀ କଥାକୁ ମେଟାଫିଜିକ୍ସ କୁହାଯାଏ । ଓଡ଼ିଆରେ ଆଧିଭୌତିକ ଜ୍ଞାନ ଏହାର ସମାନ୍ତରାଳ ଶବ୍ଦ । ମେଟାଫିଜିକଲ କବିତାର ପରିଚୟ ହେଉଛି ପ୍ରକାଶଭଙ୍ଗୀର ନୂତନତା, ତାର ଚିନ୍ତା, ଅଚିନ୍ତ୍ୟ ଚିତ୍ରକଳ୍ପର ପ୍ରୟୋଗ, ଦୁର୍ବୋଧ୍ୟ ଭାବ, ଅତିରଞ୍ଜନ ଓ ଜ୍ଞାନର ବ୍ୟବହାର । ବୁଦ୍ଧିର ଖେଳ ସ୍ୱରୂପ ବିକୃତ କଳ୍ପନା ଓ ବୈଷମ୍ୟ ମୂଳକ ଚିତ୍ରକଳ୍ପର ପ୍ରୟୋଗ ଏହାର ଅନ୍ୟ ଏକ ବିଶେଷତା । ଏହି କବିତା ଦୁଇଟି ବର୍ଗରେ ବିଭକ୍ତ - ପ୍ରେମ ଓ ଧର୍ମ । ଜୀବନ ଓ ଜଗତର ନଞ୍ଚାତ୍ମକ ଦୃଷ୍ଟିଭଙ୍ଗୀ ହେଉଛି ମେଟାଫିଜିକାଲ ବା ଆଧିଭୌତିକ ।

**ମେଟାଫିଜିକାଲ କବିତା(Metaphysical Poetry)**– ସପ୍ତଦଶ ଶତାବ୍ଦୀରେ ଇଂରାଜୀରେ ଲିଖିତ ଏକ ପ୍ରକାର କବିତାକୁ ବୁଝାଏ । ଇଂଲଣ୍ଡରେ ଜନ୍ ଡନ୍ (John Donne) ଏହି ଧରଣର କବିଗୋଷ୍ଠୀର ନେତୃତ୍ୱ ନେଇଥିଲେ । ମେଟାଫିଜିକାଲ କବିତାର ଆଭିମୁଖ୍ୟ ବା ଚରିତ୍ରଗୁଡ଼ିକ ହେଲେ (୧) ବିଭିନ୍ନ ସ୍ଥାନରୁ ଆନୀତ ଚିତ୍ରକଳ୍ପର ଏକତ୍ର ସମାବେଶ (୨) ନୂତନ ଚିନ୍ତା ତଥା ପ୍ରକାଶଭଙ୍ଗୀ (୩) ଅତିଶୟୋକ୍ତି ଓ କୃତିମତା (୪) ଦୁର୍ବୋଧ୍ୟତା (୫) ବୌଦ୍ଧିକ ଉତ୍କର୍ଷତା ପ୍ରଦର୍ଶନ । ଗୋଟିଏ କ୍ଷୁଦ୍ର କବିତାର ପରିସର ମଧ୍ୟରେ ଏକାଧିକ ଭାବନା ତଥା ଜ୍ୟୋତିଷ ବିଜ୍ଞାନ, ବାଣିଜ୍ୟ, ପଦାର୍ଥ ବିଜ୍ଞାନ ଓ ଭୁଗୋଳ ଇତ୍ୟାଦି କ୍ଷେତ୍ରରୁ ଇଚ୍ଛାକୃତ ଭାବେ ଆନୀତ ଉପମା ପ୍ରଭୃତିର ସମନ୍ୱୟ ହିଁ ମେଟାଫିଜିକାଲ କବିତା । ଆବେଗ ଓ ଚିନ୍ତାଧାରା, ଯୁକ୍ତିତର୍କ, ଅସଂଲଗ୍ନ ତଥା ଭିନ୍ନ କ୍ଷେତ୍ରରୁ ଆହରିତ ତୁଳନା, କଥିତ ଭାଷା ଇତ୍ୟାଦି ଏହାର ମୂଳ ଲକ୍ଷଣ ।

**ମୋଗଲ ତାମସା** – ମୋଗଲ ତାମସା ପ୍ରହସନ ବା ଫାର୍ସ ଜାତୀୟ ହାସ୍ୟରସାତ୍ମକ ରଚନା । ତାମସାର ଭାଷା ପ୍ରଧାନତଃ ଉର୍ଦ୍ଦୁ ହେଲେ ହେଁ ଅଭିନେତା ମାନେ ମଝିରେ ମଝିରେ ଫାର୍ସୀ, ବଂଗଳା, ବ୍ରଜାବୋଲି, ହିନ୍ଦୀ ଓ ଓଡ଼ିଆ ଭାଷାରେ ଗୀତ ବୋଲନ୍ତି । ତାମସା ହିନ୍ଦୁମାନେ ସାଂସ୍କୃତିକ ଐକ୍ୟର ପ୍ରତୀକ । ଏହି ଅଭିନୟରେ ହିନ୍ଦୁ, ମୁସଲମାନ ଉଭୟ ଶ୍ରେଣୀର ଲୋକ ଅଂଶ ଗ୍ରହଣ କରନ୍ତି । ମୁସଲମାନ ଚରିତ୍ରମାନେ ହିନ୍ଦୁ ଚରିତ୍ର ମାନଙ୍କ ପରି ମହାଦେବଙ୍କୁ ସ୍ତୁତିଗାନ କରନ୍ତି ଏବଂ ମୋଗଲବାଦ୍‌ସା ପଟୁଆର ଆରମ୍ଭ କରି ପଣାସଂକ୍ରାନ୍ତି ଦିନ ମହାଦେବଙ୍କ ମନ୍ଦିର ନିକଟରୁ ବାହାରିଥାନ୍ତି । ବିଭିନ୍ନ ଭାଷାରେ ଏ ପ୍ରକାର ବିଚିତ୍ର ସମିଶ୍ରଣ ଅନ୍ୟତ୍ର କ୍ୱଚିତ୍ ଦେଖାଯାଏ ।

# ଯ

**ଯଜୁର୍ବେଦ** – ବୈଦିକ ସାହିତ୍ୟର ଅନ୍ତର୍ଗତ ଏହା ହିନ୍ଦୁମାନଙ୍କର ପ୍ରଧାନ ଧର୍ମଗ୍ରନ୍ଥ ଚାରି ବେଦରୁ ଅନ୍ୟତମ । ଯଜୁର୍ବେଦ ଯଜନ କରିବାର ବେଦ ଅଟେ । ଋକ୍‌ବେଦ ମନ୍ତ୍ରଯଜ୍ଞରେ କାର୍ଯକରେ । ସାମବେଦରେ ମନ୍ତ୍ରଗୁଡ଼ିକ ଗାନ ହୁଏ ଓ ବ୍ୟକ୍ତିଗତ ଇଷ୍ଟଯଜ୍ଞାଗୁଡ଼ିକର ଅଥର୍ବବେଦ ବିହିତ ପ୍ରୟୋଗ ହୁଏ । ଯଜୁର୍ବେଦର ଦୁଇ ସଂସ୍କାଂଶ ବା ପାଠ ଅଛି । ଗୋଟିକର ନାମ ଶୁକ୍ଳ ଯଜୁର୍ବେଦ ଅନ୍ୟଟିର ନାମ କୃଷ୍ଣ ଯଜୁର୍ବେଦ । ଶୁକ୍ଳ ଯଜୁର୍ବେଦରେ ୧୫ଟି ଶାଖା ଅଛି ଯଥା - କାଣ୍ୱ, ସାଧଂଦିତ, ଜାବାଳ, କୃଧେୟ, ଶାକେୟ, ତପନୀୟ, କପୀସ, ପୌଣ୍ଡଦହା, ଆବର୍ତ୍ତକ, ପରମାର୍ତ୍ତକ, ପରଖରୀୟ, ବୈଦେୟ, ବୌଧେୟ, ଔଧେୟ ଓ ଗାଲକ । ଏଥିରେ ୧୯୯୦ ସୂକ୍ତ ଅଛି । କୃଷ୍ଣ ଯଜୁର୍ବେଦ ବା ତୈବତ୍ତରୀୟ ସଂହିତା, କାଠକ, କପିସ୍ଥଳକଠ, ମୈପୟଣୀ ଓ ତୈଭରୀୟ ଏହିପରି ଚାରିଶାଖାରେ କୁହାଯାଇଛି ।

**ଯତି** – କାବ୍ୟ କବିତା ମଧ୍ୟରେ ଥିବା ଶବ୍ଦ ଓ ଛନ୍ଦର ଉଚ୍ଚାରଣ ବନ୍ଧକୁ ଯତି କୁହାଯାଏ । ଯତି କବିତା ପାଠକୁ ନିୟନ୍ତ୍ରଣ କରେ । ଯଦି ଯତି ଠିକ୍ ସ୍ଥାନରେ ନପଡ଼େ ତେବେ ତାହାକୁ ଯତିଭଙ୍ଗ କୁହାଯାଏ । ଯତି ଦୁଇପ୍ରକାର - ଭାବଯତି (Sense pause) ଓ ଛନ୍ଦୋଯତି (Metrical pause) । ଉଚ୍ଚାରଣର ବିଶ୍ରାମ ସ୍ଥାନ ଓ କାଳ ଭେଦରେ ଚାରିପ୍ରକାର - ପୂର୍ଣ୍ଣ ଯତି, ଅର୍ଦ୍ଧଯତି, ଲଘୁଯତି ଓ ଉପଯତି ।

ପଂକ୍ତି - କବିତାର ଆବୃତ୍ତିର ଆରମ୍ଭରୁ ପୂର୍ଣ୍ଣ ଯତି ଧ୍ୱନି ପ୍ରବାହର ସୀମାକୁ ପଂକ୍ତି କୁହାଯାଏ ।

ପଦ - ଅର୍ଦ୍ଧ ଯତି ଦ୍ୱାରା ଖଣ୍ଡିତ ପଂକ୍ତି ବିଭାଗକୁ ପଦ (clause) କୁହାଯାଏ ।

ପର୍ବ - ଲଘୁଯତି ଦ୍ୱାରା ଖଣ୍ଡିତ ପଦ ବିଭାଗକୁ ପର୍ବ (foot) କୁହାଯାଏ ।

ଯତିଦ୍ୱାରା କବିତା ଭିନ୍ନ ଭିନ୍ନ ନାମରେ ପରିଖଚିତ । ଅର୍ଦ୍ଧଯତି ଦ୍ୱାରା ଅବିଭାଜ୍ୟ ଛନ୍ଦ ପଂକ୍ତିକୁ ଏକପଦୀ କୁହାଯାଏ । ଯଥା -

ଉଦାହରଣ - କର୍ଣ୍ଣେ ନନ୍ଦ / ସୁତ ହେବାକୁ ଶୁଣିଲେ
କଳାକାର / ମୁଖୀ ଗୋପୀ / ଧାଇଁଲେ ।

ଯେଉଁଠି ପଂକ୍ତି ବା ଚରଣ ଗୋଟିଏ ଅର୍ଦ୍ଧ ଯତି ଦ୍ୱାରା ଦୁଇଟି ପଦରେ ବିଭକ୍ତ ହୁଏ, ତାହାକୁ ଦ୍ୱିପଦୀ କୁହାଯାଏ ।

ଉଦାହରଣ - ଅପ୍ରାକୃତ / ପ୍ରେମମୂର୍ତ୍ତି // ଜୟରାଧା ହରି ।

ଅର୍ଦ୍ଧ ଯତି ଦ୍ୱାରା ତିନିପଦରେ ବିଭକ୍ତ କବିତାକୁ ତ୍ରିପଦୀ ଓ ତିନୋଟି ଅର୍ଦ୍ଧଯତି ଦ୍ୱାରା ବିଭକ୍ତ କବିତାକୁ ଚୌପଦୀ କୁହାଯାଏ ।

ତ୍ରିପଦୀ - ବର ବର୍ଣ୍ଣନୀ ଅ ॥ ନୁପମା ସୁଷମା ॥ ସକଳଗୁଣରେ ଝଳି ।

ଚୌପଦୀ - ଏବେ କରକୁ ମୋହର ବୁଦ୍ଧି । ରତ୍ନମୃଗ ହୋଇବୁ ଅବଧି
ରାମ ଆଶ୍ରମ ନିକଟେ ତରୁ ॥ ଥିବୁ ଦେଖି ଲଭାଇବେ ବିଧି ।

ପୟାର - ଚଉଦମାତ୍ରାର ପଂକ୍ତି ଗୋଟିଏ ଅର୍ଦ୍ଧଯତି ଦ୍ୱାରା ୮, ୬ ମାତ୍ରାର ଦୁଇଟି ପଦରେ ବିଭକ୍ତ ଦ୍ୱିପଦୀରେ ନାମ ହେଉଛି ପୟାର ।

ଯୁଗ୍ମକ - ଦୁଇଟି ପଂକ୍ତି ବିଶିଷ୍ଟ କବିତାକୁ ଯୁଗ୍ମକ (couplet) କୁହାଯାଏ ।

ସ୍ତବକ - ଦୁଇଟି ପଂକ୍ତିରୁ ଅଧିକ ପଂକ୍ତି ବିଶିଷ୍ଟ କବିତାକୁ ସ୍ତବକ କୁହାଯାଏ ।

ପର୍ବ - ଗୋଟିଏ ଯତିଠାରୁ ପରବର୍ତ୍ତୀ ଯତି ପର୍ଯ୍ୟନ୍ତ ଚରଣାଂଶକୁ ପର୍ବ କୁହାଯାଏ ।

**ଯନ୍ତ୍ର** – ପଞ୍ଚସଖା ଯୁଗର ସିଦ୍ଧାଚାର୍ଯ୍ୟମାନେ ବହୁ ଯନ୍ତ୍ର ତଥା ତହିଁର ଆଧ୍ୟାତ୍ମିକ ତତ୍ତ୍ୱ ପଦ୍ୟରେ ଲେଖିଯାଇଛନ୍ତି । ପ୍ରାୟ ପ୍ରତ୍ୟେକ ସିଦ୍ଧ ସାଧକ ଯନ୍ତ୍ର ସାହିତ୍ୟ ରଚନା କରିଅଛନ୍ତି । ପିଣ୍ଡ ବ୍ରହ୍ମାଣ୍ଡ ତତ୍ତ୍ୱ ସହିତ ଚଉରାଶି (୮୪) ଯନ୍ତ୍ର ଶରୀର ମଧ୍ୟସ୍ଥ ତତ୍ତ୍ୱ ବୁଝାଇବା ନିମିତ୍ତ ଯନ୍ତ୍ର ପ୍ରଣାଳୀ ସୃଷ୍ଟି କରଛନ୍ତି । ତାତ୍ତ୍ୱିକ ମୂଲ୍ୟ ବ୍ୟତୀତ ଏହାର କଳାଗତ ମୂଲ୍ୟ ମଧ୍ୟ ରହିଛି । ଯନ୍ତ୍ରମାନଙ୍କରେ ଯନ୍ତ୍ରର ଅଙ୍କନ, ତତ୍‌ପରେ ସଂସ୍କୃତ ଭାଷାରେ ମନ୍ତ୍ର ଓ ତାହାର ଆଧ୍ୟାତ୍ମିକ ବ୍ୟାଖ୍ୟା ଓଡ଼ିଆରେ ଦିଆଯାଇଥାଏ । ଯନ୍ତ୍ରଗୁଡ଼ିକ ହେଉଛି ରହସ୍ୟାତ୍ମକ ରେଖାଚିତ୍ର ଯେଉଁଥିରେ ବିଭିନ୍ନ ବୀଜମନ୍ତ୍ର ଲିପିବଦ୍ଧ ହୋଇଥାଏ । ଯନ୍ତ୍ରଗୁଡ଼ିକ ଶତ୍ରୁଭୟ ବଶୀକରଣ, ଉଚ୍ଚାଟନ ଓ ଯାବତୀୟ ଦୁଃଖ ଦୁର୍ଦ୍ଦଶା ରେ ବ୍ୟବହୃତ ହେବାର ବିଧି ରହିଛି ।

**ଯବନିକା** – ରଙ୍ଗମଞ୍ଚରେ ବ୍ୟବହୃତ ପରଦା । ଯବନିକା ଭାଦ୍ଦ 'ଜୁ' ଧାତୁରୁ ଗତି ଅର୍ଥ ବୁଝାଏ । ଏଥିରୁ ଶୀଘ୍ର ଅପସାରଣ କରିବା ଅର୍ଥ ଗୃହୀତ ହୋଇ ରଙ୍ଗମଞ୍ଚରେ ବ୍ୟବହୃତ ପରଦା ହୋଇଛି । ଅମରକୋଷରେ ଯବନିକା ଶବ୍ଦର ଅର୍ଥ ପଟବେଷ୍ଟ ବା ବସ୍ତ୍ର ନିର୍ମିତ ଗୃହ ।

**ଯମକ ଅଳଙ୍କାର** – ବିଭିନ୍ନାର୍ଥବୋଧକ ଏକ ପ୍ରକାର ଶବ୍ଦମାନଙ୍କର ପୁନାରାବୃତ୍ତି ହେଲେ 'ଯମକ ଅଳଙ୍କାର' ହୁଏ । ଏହା ବିଭିନ୍ନ ପ୍ରକାର ଯଥା - ଆଦ୍ୟ ଯମକ, ମଧ୍ୟ ଯମକ, ଅନ୍ତ୍ୟ ଯମକ, ମାଳ ଯମକ, ସର୍ବ ଯମକ ।

ଆଦ୍ୟ ଯମକ: ପଦ୍ୟର ଆଦ୍ୟରେ ଯମକ ରହିଲେ ଆଦ୍ୟ ଯମକ ଅଳଙ୍କାର ହୁଏ ।

ଉଦାହରଣ – "ବାଡ଼ ବର ଚିତ୍ର ପ୍ରତିମା ପରି ଧରି ତା ଉଭା
ବାଡ଼ ବର ମଧେ ପକାଅ ଆନ ସମାନ ଶୋଭା ।"

(ବୈଦେହୀଶ ବିଳାସ)

ମଧ୍ୟ ଯମକ : ପଦର ମଝିରେ ଯମକ ରହିଲେ ମଧ୍ୟ ଯମକ ହୁଏ ।

ଉଦାହରଣ – ''ଦେଖରେ ନଳିନି ନଳିନୀ ନଳିନୀରେ ପୂରିତ
ଭ୍ରମନ୍ତି ଭ୍ରମରେ ଭ୍ରମରେ ଭ୍ରମରେ ଏ ଶୋଭିତ ।'' (ଲାବଣ୍ୟବତୀ)

ଅନ୍ତ୍ୟ ଯମକ: ପଦର ଶେଷରେ ଯମକ ରହିଲେ ଅନ୍ତ ଯମକ ଅଳଙ୍କାର ହୁଏ ।

ଉଦାହରଣ – ସ୍ନାନ ସମୟେ ମୋ ପୟରେ
ଦୟାମୟୀ, ନ ପେଲିବୁ ତାଙ୍କୁ ପୟରେ'' (ତପସ୍ୱିନୀ)

ମାଳ ଯମକ: ପଦ ମଧ୍ୟରେ ଭିନ୍ନାର୍ଥବୋଧକ ସମୋଚ୍ଚାରିତ ସମୂହ ବାରମ୍ବାର ପ୍ରୟୋଗ ହେଲେ 'ମାଳ ଯମକ' ସୃଷ୍ଟିହୁଏ ।

ଉଦାହରଣ – ବୃହଦ୍ଭାନୁ ଭନୁ ଭାନୁ ପ୍ରଭାତାପ ନାହିଁ
ବୃତ ତମାଳ ମାଳ ମାଳତୀ ଲତା ଯହିଁ ।'' (ବୈଦେହୀଶ ବିଳାସ)

ସର୍ବ ଯମକ: ପଦର ସର୍ବତ୍ର ଯମକ ରହିଲେ ସର୍ବ ଯମକ ଅଳଙ୍କାର ହୁଏ ।

ଉଦାହରଣ – ''ବିରାଜି ବର କନକ କଦମ୍ବ ରୁଚିରେ
ବିରାଜି ବର କନକ କଦମ୍ବ ରୁଚିରେ ।'' (ବୈଦେହୀଶ ବିଳାସ)

**ଯାତ୍ରା** – ଲୋକ ଗହଳି ଭିତରେ ନାଚଗୀତ, ଅଭିନୟକୁ ଯାତ୍ରା କୁହାଯାଏ । ନାଟକର ପୂର୍ବାବସ୍ଥା ସୁଆଙ୍ଗ ବା ଯାତ୍ରା ।

**ଯୁଗ** – ଏକ ନିର୍ଦ୍ଦିଷ୍ଟ ନୂତନ ଆଭିମୁଖ୍ୟ ବହନ କରୁଥିବା ସମୟଖଣ୍ଡକୁ ସାହିତ୍ୟିକ ଯୁଗ କୁହାଯାଇଥାଏ । ବିଭିନ୍ନ ସାମାଜିକ, ରାଜନୈତିକ, ଅର୍ଥନୈତିକ ପରିବେଶର ପରିବର୍ତ୍ତନରେ ଯେଉଁ ସାଂସ୍କୃତିକ ଓ ମାନସିକ ପରିବର୍ତ୍ତନ ଘଟିଥାଏ, ସାହିତ୍ୟିକର ଆଭିମୁଖ୍ୟରେ ଅନୁରୂପ ପରିବର୍ତ୍ତନ ହୋଇଥାଏ । ସାହିତ୍ୟର ଦୃଷ୍ଟିକୋଣ ଭେଦରେ ସାହିତ୍ୟିକ ଯୁଗ ନିରୂପଣ ହୋଇଥାଏ ।

**ଯୁଗଚେତନା** – ସାହିତ୍ୟ ପରିପ୍ରେକ୍ଷୀରେ ଯୁଗଚେତନା ଗୋଟିଏ ଯୁଗର ଭାବ, ଭାବନା, ଐତିହାସିକ ପ୍ରବୃତ୍ତି, ସାଂସ୍କୃତିକ ପ୍ରବାହ, ସାମାଜିକ ଚଳଣି, ଚାହାଣି ଓ ଚମକର ଧ୍ୱାନମୟ, ରସମୟ, ମନମୟ ଚେତନାକୁ ବୁଝାଯାଏ । କବିତା ଗୋଟିଏ ଯୁଗର ପ୍ରବୃତ୍ତିକୁ ଅବଲମ୍ବନ କରି ବିକାଶ ଲାଭ କରିଥାଏ । କବିତା ଓ ଯୁଗୀୟପ୍ରଜ୍ଞା ପରସ୍ପର ସଂପର୍କିତ ହେବାକୁ ବାଧ୍ୟ । ଗୋଟିଏ ଯୁଗ ଭିତରେ କବିର ଜନ୍ମ ଓ ବିକାଶ ତେଣୁ ଯୁଗ ବଳୟର ଚିତ୍ତସଂଘର୍ଷ ହିଁ କବିର ଚେତନାବିଳାସର ଚିତ୍ତସଂଘର୍ଷ । ଯୁଗ ପ୍ରବୃତ୍ତି ହିଁ କବିର ଚେତନା ପ୍ରବୃତ୍ତି ।

**ଯୁଗରୁଚି** – ପ୍ରତ୍ୟେକ ଯୁଗର ସ୍ୱତନ୍ତ୍ର ଆଭିମୁଖ୍ୟ, ନୂତନ ଭାବ ସଂପଦ, ପରିବର୍ତ୍ତିତ ଜୀବନ ଶୈଳୀ ତଥା ଜନଜୀବନର ସ୍ୱୀକୃତ ତଥା ପ୍ରତିଷ୍ଠିତ ମୂଲ୍ୟବୋଧ, ଧାରଣା, ଜୀବନଧାରାକୁ ସେହି ଯୁଗର ଯୁଗରୁଚି ବା ଯୁଗୀୟଚେତନା ଭାବରେ ଚିହ୍ନିତ କରାଯାଇଥାଏ ।

**ଯୁଗସ୍ରଷ୍ଟା** – ପ୍ରତ୍ୟେକ ଯୁଗରେ ଏପରି ଜଣେ ସାହିତ୍ୟିକଙ୍କର ଆବିର୍ଭାବ ଘଟେ, ଯେ ପ୍ରଚଳିତ ଧାରାରେ ପରିବର୍ତ୍ତନ ଆନୟନ କରି ନୂତନ ଦିଗନ୍ତର ସନ୍ଧାନ ଦିଅନ୍ତି । ସମକାଳୀନ ସାହିତ୍ୟର ପ୍ରତିନିଧିରୂପେ ସେ ସମ୍ମାନ ଲାଭ କରନ୍ତି ଓ ତାଙ୍କ ପରିଦର୍ଶିତ ମାର୍ଗରେ ଗତି କରି ପରବର୍ତ୍ତୀକାଳୀନ ସାହିତ୍ୟଗଣ ସାହିତ୍ୟ ସୃଷ୍ଟି କରନ୍ତି । ସେହି ଯୁଗଜନ୍ମାଙ୍କ ପ୍ରଭାବ ଅନାହତ ରହେ ଏବଂ ସେହି ଯୁଗଜନ୍ମାମାନେ ନୂତନ ଯୁଗ ସୃଷ୍ଟି କରିଥିବାରୁ ସେମାନଙ୍କୁ ଯୁଗସ୍ରଷ୍ଟା ବା ଯୁଗ ପ୍ରବର୍ତ୍ତକ କୁହାଯାଏ । ସେମାନଙ୍କ ନାମାନୁସାରେ ସେହି ସାହିତ୍ୟ କାଳକୁ ନାମିତ କରିବା ଅବଶ୍ୟମ୍ଭାବୀ ହୋଇଥାଏ ।

**ଯୋଗ** – ସନ୍ଥ ସାହିତ୍ୟରେ ଯୋଗଦର୍ଶନର ଏକ ମୁଖ୍ୟ ଭୂମିକା ରହିଛି । ଯୋଗ ଶବ୍ଦଟି ମୂଳ ସଂସ୍କୃତ ଧାତୁ ''ଯୁଜ୍''ରୁ ନିଷ୍ପନ୍ନ ହୋଇଛି । ଯାହାର ଅର୍ଥ ହେଲା ଯୁକ୍ତ କରିବା । ତେଣୁ ଯୋଗର ମୌଳିକ ଅର୍ଥ ହେଲା ଆତ୍ମା ସହ ପରମାତ୍ମାର ସଂଯୋଗ ସାଧନ କରିବା । ସଂଜ୍ଞା ଓ ପ୍ରକରଣ ଦୃଷ୍ଟିରୁ ଚିତ୍ତବୃତ୍ତି ନିରୋଧକୁ ଯୋଗ କୁହାଯାଏ । ଯୋଗ ମୁଖ୍ୟତଃ ଦୁଇପ୍ରକାର ହଠଯୋଗ ଓ ରାଜଯୋଗ । ହଠଯୋଗ କୃଚ୍ଛ ସାଧନା । ରାଜଯୋଗ ହଠଯୋଗର ଊର୍ଦ୍ଧ୍ୱରେ କୈବଲ୍ୟ ପ୍ରାପ୍ତି । ଯୋଗ ସାଧନାର ଆଠଟି ଅଙ୍ଗ ରହିଛି । ଯଥା- ଯମ, ସତ୍ୟ, ନିୟମ, ଆସନ, ପ୍ରାଣାୟାମ, ପ୍ରତ୍ୟାହାର, ଧାରଣା, ଧ୍ୟାନ, ସମାଧି । ସାହିତ୍ୟର ସୁଷୁମ୍ନା, ଇଡ଼ା, ପିଙ୍ଗଳା, ନାଭିଦ୍ୱାର, ସହସ୍ରାର, ଆଜ୍ଞା, ବିଶୁଦ୍ଧ, ଅନାହତ, ମଣିପାର, ସ୍ୱାଧିଷ୍ଠାନ ଚକ୍ର ଭେଦକରି ବ୍ରହ୍ମରନ୍ଧ୍ରରେ ପହଞ୍ଚିବାର ପ୍ରକ୍ରିୟା ହିଁ ଯୋଗ ଦର୍ଶନ ବୋଲି କଥିତ ହୁଏ ।

**ଯୋଗରୂଢ଼ ଶବ୍ଦ** – ଯେଉଁ ଶବ୍ଦର ବ୍ୟୁତ୍ପତ୍ତିଗତ ଅର୍ଥ ଅନେକ ବସ୍ତୁକୁ ବୁଝାଇବା ସମ୍ଭବପର ହେଲେ ହେଁ ସେ ଶବ୍ଦ ଗୋଟିଏ ମାତ୍ର ବସ୍ତୁକୁ ବୁଝାଏ, ତାହାକୁ ଯୋଗରୂଢ଼ ଶବ୍ଦ ବୋଲଯାଏ ।

**ଯୌଗିକ ବାକ୍ୟ** – ଦୁଇ ବା ତତୋଧିକ ପରସ୍ପର ନିରପେକ୍ଷ ସରଳ ବାକ୍ୟର ସଂଯୋଗରେ ଯେଉଁ ବାକ୍ୟ ଗଠିତ ହୋଇଥାଏ, ତାହାକୁ ଯୌଗିକ ବାକ୍ୟ କହନ୍ତି ।

**ଯୌଗିକ ଶବ୍ଦ** – ଯେଉଁ ଶବ୍ଦ ପ୍ରକୃତି ପ୍ରତ୍ୟୟଗତ ଅର୍ଥକୁ ପ୍ରକାଶ କରେ ତାହାକୁ ଯୌଗିକ ଶବ୍ଦ ବୋଲାଯାଏ ।

## ର

**ରଙ୍ଗମଞ୍ଚ** – ନାଟକ ଓ ନୃତ୍ୟ ଅଭିନୟ ପ୍ରଦର୍ଶନ ପାଇଁ ଉଦ୍ଦିଷ୍ଟ ମଞ୍ଚକୁ ରଙ୍ଗମଞ୍ଚ କୁହାଯାଏ । ନାଟ୍ୟକଳାର ପରିବର୍ତ୍ତନ ସହିତ ରଙ୍ଗମଞ୍ଚର ପରିବର୍ତ୍ତନ ଦେଖାଯାଏ । ଭରତଙ୍କ ନାଟ୍ୟଶାସ୍ତ୍ର ଅନୁଯାୟୀ ରଙ୍ଗମଞ୍ଚ ତିନି ପ୍ରକାର ।

ମୁକ୍ତ ରଙ୍ଗମଞ୍ଚ, ୨- ଗୁପ୍ତ ରଙ୍ଗମଞ୍ଚ, ୩- ପ୍ରେକ୍ଷାଳୟ ରଙ୍ଗମଞ୍ଚ । ପ୍ରେକ୍ଷାଳୟ ରଙ୍ଗମଞ୍ଚ ତିନି ପ୍ରକାର - ଆୟତାକାର, ବର୍ଗାକାର ଓ ତ୍ରିକୋଣାକାର । ପୁଣି ପ୍ରତ୍ୟେକ ପ୍ରେକ୍ଷାଳୟ ତିନୋଟି ମାପର - ଜ୍ୟେଷ୍ଠ (୧୦୮ ହାତ), ମଧ୍ୟମ (୬୪ ହାତ) ଓ ଆବାର (୩୨ ହାତ) ଦୈର୍ଘ୍ୟ ବିଶିଷ୍ଟ ।

ପ୍ରାଚୀନକାଳର ମୁକ୍ତମଞ୍ଚ କାଳକ୍ରମେ ଏକମୁଖୀ ମଞ୍ଚ, ଶକଟ ମଞ୍ଚ, ଘୂର୍ଣ୍ଣାୟମାନ ମଞ୍ଚ, ଦ୍ୱିତଳ ମଞ୍ଚ, ସରଳ ମଞ୍ଚ ଇତ୍ୟାଦି । ପ୍ରାଚୀନ ରଙ୍ଗମଞ୍ଚର ବିବରଣ ଏହିପରି -

ବିକୃଷ୍ଟ ମଞ୍ଚ - ୬୪ x ୩୨ ବର୍ଗ ହାତ ବିଶିଷ୍ଟ ଆୟତାକାର କ୍ଷେତ୍ର । ଏହା ଦୁଇ ଭାଗରେ ବିଭକ୍ତ - ଗୋଟିଏ ଅଭିନୟ କ୍ଷେତ୍ର ଓ ସଜଘର, ଅନ୍ୟଟି ରଙ୍ଗମଣ୍ଡଳ ବା ଅଡ଼ିଟୋରିୟମ ।

ତ୍ରସ୍ୟ ମଞ୍ଚ - ନାଟ୍ୟଗୃହ ଓ ମଞ୍ଚ ଏଥିରେ ତ୍ରିକୋଣାକାର ।

ଚତୁରସ୍ର ମଞ୍ଚ - ବର୍ଗାକାର ମଞ୍ଚ । ୩୨x ୩୨ ହାତ ବିଶିଷ୍ଟ ବର୍ଗକ୍ଷେତ୍ର ।

ବୃତ୍ତମଞ୍ଚ - ଗୋଲାକାର ରଙ୍ଗମଞ୍ଚ ।

ରଙ୍ଗଶୀର୍ଷ - ଏହା ନାଟ୍ୟ ଦେବତାର ମସ୍ତକ ଭାବରେ ଗଣ୍ୟହୁଏ । ଏହିଠାରେ ନାଟକର କୁଶୀଳବମାନେ ଅଭିନୟ କରିବା ଆଗରୁ ସମବେତ ହୁଅନ୍ତି ।

ରଙ୍ଗପୀଠ - ନାଟ୍ୟ ଦେବତାର ଶରୀର ରୂପେ ଗଣ୍ୟହୁଏ । ମଞ୍ଚ ଦୁଇଭାଗରେ ବିଭକ୍ତ- ଗୋଟିଏ ଭାଗ ଦର୍ଶକଙ୍କ ପାଇଁ ଉଦ୍ଦିଷ୍ଟ, ଅନ୍ୟଭାଗରେ ମଞ୍ଚ, ନେପଥ୍ୟ ଓ ସଜଘର ରହେ ।

ମତ୍ତବାରଣୀ - ରଙ୍ଗପୀଠର ଆଗରେ ୮ ହାତ ଦୁଇଟି ସ୍ତମ୍ଭ ଦୁଇ ପାଖରେ ରହେ । ଏହା ମତ୍ତବାରଣୀ ।

ଷଡ଼ ଦାରୁକ - ରଙ୍ଗପୀଠ ଓ ରଙ୍ଗଶୀର୍ଷକୁ ନେପଥ୍ୟ ଗୃହଠାରୁ ପୃଥକ କରିବାପାଇଁ ନିର୍ମିତ ପ୍ରାଚୀର । ସେହି ପ୍ରାଚୀର ୬ ଖଣ୍ଡି କାଠରେ ନିର୍ମିତ ହୋଇଥାଏ ଉପର ଛାତକୁ ଧରିବା ପାଇଁ ।

ଯବନିକା - ଆବରଣ ପରଦା ।

ଦ୍ୱିଭୂମି ମଞ୍ଚ - ଦ୍ୱିତଳ ବିଶିଷ୍ଟ ପ୍ରେକ୍ଷାଗୃହ । ଏହା ଦର୍ଶକମାନଙ୍କ ପାଇଁ ବସିବାର ବ୍ୟବସ୍ଥା ।

ରଙ୍ଗ ମଣ୍ଡଳ - ଦର୍ଶକମାନଙ୍କ ପାଇଁ ନିର୍ଦ୍ଦିଷ୍ଟ ପ୍ରେକ୍ଷାଗୃହ । ସୋପାନ ଆକୃତି ବିଶିଷ୍ଟ ।

ସ୍ତମ୍ଭ - ରଙ୍ଗମଞ୍ଚର ଚାରି କୋଣରେ ଚାରିଟି ସ୍ତମ୍ଭ ଥାଏ । ସ୍ତମ୍ଭଗୁଡ଼ିକର ନାମ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ, ଶୂଦ୍ର । ପ୍ରେକ୍ଷାଳୟକୁ ଚାରିଭାଗରେ ବିଭକ୍ତ କରି ଏମାନଙ୍କ ବସିବା ସ୍ଥାନ ନିର୍ଦ୍ଦିଷ୍ଟ କରି ଦିଆଯାଇଥାଏ ।

**ରମ୍ୟରଚନା** – ଆଭିଧାନିକ ଅର୍ଥରେ ରମଣୀୟ ରଚନାକୁ ରମ୍ୟରଚନା କୁହାଯାଏ । ବାସ୍ତବରେ ରମ୍ୟରଚନା ଫରାସୀ "Bells letters' ଶବ୍ଦରୁ ଗ୍ରହଣ କରଯାଇଛି । ଏହି ଫରାସୀ ଶବ୍ଦ ଦ୍ୱୟର ପ୍ରକୃତ ଅର୍ଥ ହେଉଛି ସୁଚାରୁ ପରିମାର୍ଜିତ ଲଘୁ ସାହିତ୍ୟ । ସୁଲଳିତ ଭଙ୍ଗୀରେ ହାଲକା ମାନସିକତାର ରଚାନ ହିଁ ରମ୍ୟରଚନା । ଏହା ପ୍ରବନ୍ଧ ରଚନାର କଠୋର ଶୃଙ୍ଖଳାରୁ ମୁକ୍ତ । ଭାଷା, ଭାବର ସୌନ୍ଦର୍ଯ୍ୟ ନେଇ ରମ୍ୟରଚନା ଲେଖକର ମନ୍ମୟ ସୃଷ୍ଟି । ରମ୍ୟ ରଚନାରେ ଗୁରୁଗମ୍ଭୀର ବିଷୟବସ୍ତୁକୁ ଆକର୍ଷଣୀୟ ଭଙ୍ଗୀରେ, ତାର୍ଯ୍ୟକ ଦୃଷ୍ଟିକୋଣରେ ଲଳିତ ଭାଷାରେ ଯେପରି ରଚନା କରାଯାଇପାରେ, ଲଘୁ ବିଷୟବସ୍ତୁକୁ ଶ୍ଳେଷାତ୍ମକ ଶୈଳୀରେ ମଧ୍ୟ ପ୍ରକାଶ କରାଯାଇପାରେ । ଗଳ୍ପ ଓ ଉପନ୍ୟାସ ଅପେକ୍ଷା ଏହା ପ୍ରବନ୍ଧର ଅଧିକ ନିକଟବର୍ତ୍ତୀ । ତେଣୁ ରମ୍ୟରଚନାକୁ କେହି କେହି ଲଳିତ ନିବନ୍ଧ ବୋଲି କହନ୍ତି । ରମ୍ୟ ରଚନା ଆଧୁନିକ କାଳର ସୃଷ୍ଟି ଏକ ଲୋକପ୍ରିୟ କଳାରୂପ । ଜଟିଳ ସାମାଜିକ ସମସ୍ୟାକୁ କଥିତ ଭାଷାରେ ଲଘୁ ଭାବରେ ବ୍ୟକ୍ତକରିବା ଓ ଜଟିଳ ଜୀବନ ଦର୍ଶନକୁ ରମଣୀୟ ଭଙ୍ଗୀରେ ପ୍ରକାଶ କରିବା ଓଡ଼ିଆ ରମ୍ୟରଚନାର ଲକ୍ଷଣ । ସୁରେନ୍ଦ୍ର ମହାନ୍ତିଙ୍କ ଭାଷାରେ ''ପ୍ରବନ୍ଧର ଗୁରୁଗାମ୍ଭୀର୍ଯ୍ୟ ବର୍ଜିତ, ଲଘୁ ରସାଶ୍ରିତ କିନ୍ତୁ ଭାବଦ୍ୟୋତକ ଚିନ୍ତାରାଜିର ଶିଥିଳ, ଚଟୁଳ ବିରଚଣ ସାଧାରଣତଃ ରମ୍ୟରଚନା ରୂପେ ଭାରତୀୟ ସାହିତ୍ୟ ସମାଲୋଚନାର ପରିମଣ୍ଡଳରେ ଗୃହୀତ ହୋଇଛି । (ଓଡ଼ିଆ ସାହିତ୍ୟର କ୍ରମବିକାଶ) ।

**ରସ** – ସାହିତ୍ୟରେ ରସ ଭାବାତ୍ମକ । କାବ୍ୟକଳାର ଅନ୍ତର୍ନିହିତ ଶକ୍ତି । ରସଭୋଗରେ ବା ରସନିଷ୍ପତିରେ - ''ବିଭାବାନୁଭାବ ବ୍ୟଭିଚାରି ସଂଯୋଗାତ୍ ରସନିଷ୍ପତିଃ'' (ନାଟ୍ୟଶାସ୍ତ୍ର) । ରସ ଶବ୍ଦର ବ୍ୟୁତ୍ପତ୍ତି ଦର୍ଶାଇ ବ୍ୟାକରଣକାରମାନେ କହିଛନ୍ତି - ''ରସ୍ୟତେ ଇତି ରସଃ'' ଓ ସରତେ ଇତି ରସଃ''। ସାହିତ୍ୟରେ ନବରସ ପ୍ରଧାନ - ଶୃଙ୍ଗାର, ହାସ୍ୟ, କରୁଣ, ରୌଦ୍ର, ବୀର, ଭୟାନକ, ବୀଭତ୍ସ, ଅଦ୍‌ଭୁତ ଓ ଶାନ୍ତ ।

ଶୃଙ୍ଗାର ରସ - କାମ ବିକାରକୁ ଶୃଙ୍ଗ ଓ କାମ ବିକାର ପ୍ରାପ୍ତିର କାରଣକୁ ଶୃଙ୍ଗାର କୁହାଯାଏ । ରତି ଏହାର ସ୍ଥାୟୀଭାବ । ନାୟକ ନାୟିକା ଆଲମ୍ବନ ବିଭାବ, ଚନ୍ଦ୍ର ଚନ୍ଦନ ଉଦ୍ଦୀପକ ବିଭାବ, କଟାକ୍ଷପାତ ଆଦି ଅନୁଭବ, ଲଜ୍ଜା, ହାସ ଆଦି ବ୍ୟଭିଚାର ଭାବ ।

ଶୃଙ୍ଗାର ରସ ଦୁଇ ପ୍ରକାର - ବିପ୍ରଲମ୍ଭ ଓ ସଂଭୋଗ । ନାୟକ, ନାୟିକା କାମ ଭାବରେ ପୀଡ଼ିତ ଥିଲାବେଳେ କୌଣସି କାରଣ ବଶତଃ ପ୍ରତାରିତ ହେଲେ ବିପ୍ରଲମ୍ଭ ଶୃଙ୍ଗାର ହୁଏ । ଏହା ପୁଣି ପୂର୍ବରାଗ, ମାନ, ପ୍ରବାସ ଓ କରୁଣା ଭେଦରେ ଚାରିପ୍ରକାର । ନାୟକ ଓ ନାୟିକା ପରସ୍ପର ରୂପଗୁଣର କଥାଶୁଣି କିମ୍ବା ଦେଖି ସେମାନଙ୍କର ପ୍ରୀତି ସଞ୍ଚାରିତ ହୋଇ କୌଣସି କାରଣବଶତଃ ଜଣେ ଅନ୍ୟଜଣକୁ ନପାଇଲେ ଯେଉଁ ଅବସ୍ଥା ପଡ଼ନ୍ତି ତାହା ପୂର୍ବରାଗ । ସେହି ଅବସ୍ଥା କାମଦଶା । କାମଦଶା ଦଶପ୍ରକାର ଯଥା - ଅଭିଳାଷ, ଚିନ୍ତା, ସ୍ମୃତି, ଗୁଣକଥନ, ଉଦ୍‌ବେଗ, ପ୍ରଳାପ, ଉନ୍ମାଦ, ବ୍ୟାଧି, ଜଡ଼ତା, ମରଣ । ଯୁବକ ଓ ଯୁବତୀ ପରସ୍ପର ଦର୍ଶନ, ସ୍ପର୍ଶ ପ୍ରଭୃତି ଦ୍ୱାରା ପରସ୍ପର ପ୍ରତି ଆସକ୍ତ ହେଲେ ଯାହା ଅନୁଭବ କରନ୍ତି, ତାହା ସଂଭୋଗ ଶୃଙ୍ଗାର ।

ହାସ୍ୟରସ – ଅନୌଚିତ୍ୟ, ଅସଙ୍ଗତି, ବିକୃତି ହାସ୍ୟ ସୃଷ୍ଟିକରେ । କଥାରେ, କାର୍ଯ୍ୟରେ, ରୂପରେ, ପରିସ୍ଥିତିରେ ଏହିସବୁ ଦେଖାଯାଏ । ଏବଂ ତାହାର ଚିତ୍ରଣ ପାଠକ ଓ ଶ୍ରୋତାକୁ ହସାଇଥାଏ । ପ୍ରାଚୀନ ସାହିତ୍ୟରେ ହାସ୍ୟକୁ ଛଅପ୍ରକାରରେ ବିଭକ୍ତ କରାଯାଇଛି । ଉତ୍ତମ ଲୋକର ହସ -- ସ୍ମିତ ଓ ହସିତ, ମଧ୍ୟମ ଶ୍ରେଣୀ ଲୋକର ହସ - ବିହସିତ, ଅବହସିତ ଓ ଅଧମ ଶ୍ରେଣୀ ଲୋକର ହସ - ଅପହସିତ ଓ ଅତିହସିତ । ସ୍ମିତ- ଅଳ୍ପ ଅଧର ସ୍ପନ୍ଦନ ଓ ନେତ୍ର ବିକାଶ, ହସିତ- ଅଳ୍ପଦାନ୍ତ ଦେଖାଯିବା, ବିହସିତ- ମଧୁର ସ୍ୱରରେ ହସିବା, ଅବହସିତ- କାନ୍ଧ ଓ ମୁଣ୍ଡ ହଲିବା, ଅପହସିତ- ଆଖିରୁ ଲୋତକ ଗଡ଼ିବା, ଅତିହସିତ- ହସରେ ଗଡ଼ିଯିବା, ଲୁଗାଫିଟିଯିବା ।

କରୁଣ ରସ – ଆତ୍ମୀୟସ୍ୱଜନଙ୍କ ବିନାଶ ବା ଅନିଷ୍ଟରେ ଯେଉଁ ଦୁଃଖ ଉତ୍ପନ୍ନ ହୁଏ, ତାହା କରୁଣ ରସ । ଶୋକ ଏହାର ସ୍ଥାୟୀଭାବ, ଯାହାକୁ ନେଇ ଶୋକ ଉତ୍ପନ୍ନ ହୁଏ ତାହା ଆଲମ୍ବନ ବିଭବ, ମୃତବ୍ୟକ୍ତିର ସତ୍କାର ଉଦ୍ଦୀପନ ବିଭବ ଏବଂ କ୍ରନ୍ଦନାଦି ଅନୁଭାବ ।

ରୌଦ୍ର ରସ – କ୍ରୋଧ ଏହାର ସ୍ଥାୟୀ ଭାବ, ଶତ୍ରୁ ଆଲମ୍ବନ ବିଭବ, ଶତ୍ରୁର ଚେଷ୍ଟା ଉଦ୍ଦୀପନ ବିଭବ, ଆକ୍ଷେପୋକ୍ତି ଆଦି ଅନୁଭାବ, ସ୍ୱେଦ, କମ୍ପ ଆଦି ସଞ୍ଚାରୀ ଭାବ ।

ବୀର ରସ – ବୀର ଚାରିପ୍ରକାର - ଦାନବୀର, ଧର୍ମବୀର, ଯୁଦ୍ଧବୀର ଓ ଦୟାବୀର । ଉତ୍ତମ ସ୍ୱଭାବର ଲୋକ ଏହାର ନାୟକ, ଉତ୍ସାହ ସ୍ଥାୟୀଭାବ, ବିଜିତ ଏହାର ଆଲମ୍ବନ ବିଭବ, ପ୍ରତିପକ୍ଷର ଚେଷ୍ଟା ଉଦ୍ଦୀପନ ବିଭବ, ସାହାଯ୍ୟ ଅନ୍ୱେଷଣ ଅନୁଭାବ ।

ଭୟାନକ ରସ – ଭୟ ସ୍ଥାୟୀଭାବ; ଯାହାଠାରୁ ଭୟ ଜାତ ହୁଏ ତାହା ଆଲମ୍ବନ ବିଭାବ, ତାହାର ଚେଷ୍ଟା ଉଦ୍ଦୀପନ ବିଭାବ; ଗଦ୍ ଗଦ୍ ସ୍ୱର ଆଦି ଅନୁଭାବ, ଆବେଗ ଓ ଦୀନତା ଆଦି ବ୍ୟଭିଚାରି ଭାବ ।

ବୀଭତ୍ସ ରସ – ଜୁଗୁପ୍ସା ଏହାର ସ୍ଥାୟୀଭାବ, ପଚାସଢ଼ା ମାଂସ ଆଦି ଆଲମ୍ବନ ବିଭବ; ପଚା ଶରୀରରେ ପୋକ ପଡ଼ିବା ଆଦି ଉଦ୍ଦୀପନ ବିଭବ, ମୁହଁ ବୁଲେଇବା, ଆଖି ପଡ଼ିବା ଆଦି ଅନୁଭବ ।

ଅଦ୍ଭୁତ ରସ – ବିସ୍ମୟ ସ୍ଥାୟୀଭାବ, ଅଲୌକିକ ପଦାର୍ଥ ଆଲମ୍ବନ ବିଭବ, ଆଲମ୍ବନର ଗୁଣ ଉଦ୍ଦୀପନ ବିଭବ, ସ୍ତମ୍ଭ, ସ୍ୱେଦାଦି ଅନୁଭାବ, ହର୍ଷ, ଭ୍ରାନ୍ତି ଆଦି ବ୍ୟଭିଚାରି ଭାବ ।

ଶାନ୍ତରସ – ଶମ ସ୍ଥାୟୀଭାବ, ପରମାତ୍ମା ଆଲମ୍ବନ ବିଭବ, ବେଦାଦି ଶ୍ରବଣ ଉଦ୍ଦୀପନ ବିଭବ, ରୋମାଞ୍ଚ ପ୍ରଭୃତି ଅନୁଭାବ, ନିର୍ବେଦ, ହର୍ଷ ଆଦି ବ୍ୟଭିଚାରି ଭାବ ।

ରସକୁଲ୍ୟା – ଏହି ବୃତ୍ତରେ ପ୍ରତ୍ୟେକ ପଦରେ ଛଅଟି ପାଦ ଥାଏ । ପ୍ରଥମ, ଦ୍ୱିତୀୟ, ତୃତୀୟ ଓ ଚତୁର୍ଥ ପାଦର ଅକ୍ଷର ସଂଖ୍ୟା ଏଗାର ଲେଖାଏଁ । ଏହି ଚାରିପାଦର ପ୍ରତ୍ୟେକରେ ଷଷ୍ଠ ଓ ଏକାଦଶ ଅକ୍ଷର ଉପରେ ଯତିପଡ଼େ । ପଞ୍ଚମ ପାଦରେ ଆଠଟି ଅକ୍ଷର ଥାଏ । ଏହାର ଷଷ୍ଠ ଓ ଶେଷ ଅକ୍ଷର ଉପରେ ଯତି ପଡ଼େ । ଷଷ୍ଠ ପାଦଟି କୋଡ଼ିଏ ଅକ୍ଷର ବିଶିଷ୍ଟ ଓ ଏହାର ଷଷ୍ଠ, ଦ୍ୱାଦଶ, ଅଷ୍ଟାଦଶ ଓ ଶେଷ ଅକ୍ଷର ଉପରେ ଯତିପାତ ହୁଏ ।

ଏକେ ତ ଅଯୋଧ୍ୟା' ନଗରୀ ରାଣୀ
ଦେବସଭା ମଧ୍ୟେ' ଯେହ୍ନେ ଇନ୍ଦ୍ରାଣୀ
ସିନ୍ଧୁ ବକ୍ଷେ ଯଥା' ରମା ସୁନ୍ଦରୀ
ସରଯୂର ଅଙ୍କେ ରମ୍ୟ ନଗରୀ
ବିରାଜିତ ଲୀଳା 'ରଙ୍ଗେ'
ଲୋଚନ କୌମୁଦି' ତାହାରି ପ୍ରତିମା'
ଖେଳଇ ଶୋଭା' ତରଙ୍ଗେ ।

ରସବିରୋଧ – ସ୍ଥାନ, କାଳ, ପାତ୍ର ଭେଦରେ ବିଭିନ୍ନ ରସର ବିରୋଧୀରସ ନିର୍ଣ୍ଣୟ କରାଯାଇଛି । ଶୃଙ୍ଗାର ରସ - ବୀର, ଭୟାନକ, କରୁଣ, ବିଭତ୍ସ ଓ ରୌଦ୍ରରସର ବିରୋଧୀ । ହାସ୍ୟରସ - କରୁଣ ଓ ଭୟାନକ ରସର ବିରୋଧୀ । କରୁଣ ରସ - ଶୃଙ୍ଗାର, ହାସ୍ୟ ଓ ଭୟାନକ ରସର ବିରୋଧୀ । ବୀରରସ - ଶାନ୍ତ ଓ ଭୟାନକ ରସର ବିରୋଧୀ । ବିଭତ୍ସ ରସ - ଶୃଙ୍ଗାର, ବୀର ଓ ରୌଦ୍ର ରସର ବିରୋଧୀ । ଭୟାନକ ରସ - ହାସ୍ୟ, ଶୃଙ୍ଗାର, ବୀର ଓ ରୌଦ୍ର ରସର ବିରୋଧୀ । ଅଭିଜ୍ଞ ଓ ସରସ କାବ୍ୟର ସ୍ରଷ୍ଟାମାନେ କେବେହେଲେ ପରସ୍ପର ବିରୋଧୀ ବିଭବ, ଅନୁଭାବ, ସଞ୍ଚାରୀଭାବମାନଙ୍କର ଏକତ୍ର ଚିତ୍ରଣ କରନ୍ତି ନାହିଁ ।

**ରସାଭାସ** – ଭାରତୀୟ ଦୃଷ୍ଟିକୋଣରୁ ଯେଉଁଠି ସାହିତ୍ୟର ବର୍ଣ୍ଣନା ଚମତ୍କାର ରସାତ୍ମକ ହୋଇଥିଲେ ମଧ୍ୟ ପ୍ରତିଷ୍ଠିତ ରୀତିନୀତିର ବିରୁଦ୍ଧାଚରଣ କରୁଥିବ ଅର୍ଥାତ୍ ଅନ୍ୟଭାଷାରେ ଯେଉଁଠି ଅନୁଚିତ ଭାବ ବର୍ଣ୍ଣିତ ହୋଇଥିବ, ସେଠାରେ ସୂକ୍ଷ୍ମ ଲଳିତ କଳାତ୍ମକ ସୌନ୍ଦର୍ଯ୍ୟ ଦୃଷ୍ଟିରୁ ଚମତ୍କାର ପ୍ରାଣରସ ବ୍ୟଞ୍ଜିତ ହେଉଥିଲେ ମଧ୍ୟ ତାହାକୁ ରସ କୁହାନଯାଇ ରସାଭାସ କୁହାଯିବ ।

**ରସଦୋଷ** – ରସୋତ୍ପତ୍ତିପାଇଁ ନିର୍ଦ୍ଦିଷ୍ଟ କେତୋଟି ସ୍ୱୀକୃତି ନିୟମର ବିରୁଦ୍ଧାଚରଣ କରାଗଲେ, ତାହା ରସଦୋଷରେ ପରିଣତ ହୁଏ । ସେଥିରେ କାବ୍ୟ ସୌନ୍ଦର୍ଯ୍ୟ ବିଶେଷଭାବେ ବାଧାପ୍ରାପ୍ତ ହେବା ସଙ୍ଗେ ସଙ୍ଗେ କାବ୍ୟିକ ବିଷୟ ଉପହାସ୍ପଦ ହୋଇଥାଏ ।

ରସଦୋଷର ବିଭିନ୍ନ କାରଣ ଦର୍ଶାଯାଇଛି । ଯଥା –

(୧) କାବ୍ୟରେ ରସର ବିଭାବ ଅନୁଭାବ ଦ୍ୱାରା ବ୍ୟକ୍ତ ହୁଏ, ଏଥିପାଇଁ ଉପଯୁକ୍ତ ଶବ୍ଦ ବ୍ୟବହାର କରାନଗଲେ, ସେଠାରେ ବାକ୍ୟଟି ସ୍ୱଶବ୍ଦବାଚ୍ୟତା ନାମକ ରସଦୋଷରେ ଶରବ୍ୟ ହୁଏ ।

(୨) ବିଭିନ୍ନ ଭାବର ଅଭିବ୍ୟକ୍ତି ସରଳ ତଥା ସ୍ୱାଭାବିକ ରୀତିର ନହୋଇ କଷ୍ଟ କଳ୍ପନା ଦ୍ୱାରା ବାଧା ସୃଷ୍ଟି ହେଲେ ସେଠାରେ ରସଦୋଷ ହୁଏ ।

(୩) କାବ୍ୟରସମାନଙ୍କ ମଧ୍ୟରେ ମନସ୍ତାତ୍ତ୍ୱିକ ଦୃଷ୍ଟିରୁ ପରସ୍ପର ବିରୋଧୀ ରସର ଅବତାରଣା ହେଲେ ରସଦୋଷ ହୁଏ ।

(୪) କାବ୍ୟରେ ସୁସମଞ୍ଜସ ପରିକଳ୍ପନା ଅଭାବରେ ଯଦି ଅଙ୍ଗୀରସ ବାରମ୍ବାର ବିକ୍ଷିପ୍ତ ଭାବରେ ଉଦ୍ଦୀପ୍ତ ହୁଏ, ତେବେ ରସାନୁଭୂତି ତୀବ୍ରତା ଅଭାବ ହେତୁ ଏଠାରେ ପୁନଃ ପୁନଃ ଦୀପ୍ତି ନାମକ ରସଦୋଷ ହୁଏ ।

(୫) ଅଙ୍ଗୀରସ ଓ ଅନ୍ୟାନ୍ୟ ନାୟକନାୟିକାଦିର ବର୍ଣ୍ଣନା ଯଥାସମ୍ଭବ ସଂକ୍ଷିପ୍ତ ନହୋଇ ଯଦି ଅଙ୍ଗମାନଙ୍କରେ ବିସ୍ତୃତ ବର୍ଣ୍ଣନା କରାଯାଏ, ସେଠାରେ 'ଅଙ୍ଗାଦି ବିସ୍ତୃତି' ନାମକ ରସଦୋଷ ହୁଏ ।

(୬) ମୁଖ୍ୟ ବିଷୟ ସହିତ ସଂପର୍କହୀନ ଭାବରେ ଅବାନ୍ତର ବିଷୟର ଅବତାରଣା କରାଗଲେ ଅଙ୍ଗୀରସର ଅନୁସନ୍ଧାନ ନାମକ ରସଦୋଷ ହୁଏ ।

(୭) ବର୍ଣ୍ଣିତ ପାତ୍ର ପାତ୍ରୀମାନଙ୍କ ବେଶଭୂଷା, ସଂଳାପ, ଚରିତ୍ରଗତ ନହୋଇ ବ୍ୟତିକ୍ରମ ହେଲେ ପ୍ରକୃତି ବିପର୍ଯ୍ୟୟ ନାମକ ରସଦୋଷ ହୁଏ ।

(୮) କାବ୍ୟରେ ରସାଭିବ୍ୟକ୍ତିର କ୍ରମବଦ୍ଧର ପ୍ରସାର ନହୋଇ ପଠନ ଉଚ୍ଛେଦସାଧନ ହେଲେ ଅକାଣ୍ଡେଚ୍ଛେଦ ନାମକ ରସଦୋଷ ହୁଏ ।

**ରହସ୍ୟ ନାଟକ** – ମଧ୍ୟଯୁଗ ଓ ରେନାଁସାର ପ୍ରଥମାର୍ଦ୍ଧରେ ମଂଚସ୍ଥ କରାଯାଇଥିବା ନାଟକକୁ 'ମିଷ୍ଟିରି ନାଟକ' କୁହାଯାଏ । ଏହା ଲାଟିନ୍ ଶବ୍ଦ misterium ଅନୁଯାୟୀ ନାମିତ ହୋଇଛି । ଏ ଧରଣର ନାଟକରେ ଗୁପ୍ତ ବା ରହସ୍ୟ ସହ କିଛି ସମ୍ପର୍କ ନଥାଏ । ମିଷ୍ଟରୀ ଓ ମିରାକଲ ନାଟକ ମଧ୍ୟରେ ଯଦିଓ ପ୍ରଭେଦ ରହିଛି, ବେଳେବେଳେ ଏ ଦୁଇ ପ୍ରକାର ନାଟକ ଏକାଭଳି ମନେହୁଏ । ଏହାର କଥାବସ୍ତୁ ମୁଖ୍ୟତଃ ବାଇବେଲରୁ ଗୃହୀତ ।

**ରହସ୍ୟବାଦ** – ଯେଉଁ ଭାବନା ସହଜ ଓ ସ୍ୱାଭାବିକ ଭାବରେ ପ୍ରକାଶିତ ନହୋଇ ରହସ୍ୟର ଉଦ୍‌ଘାଟନ କରେ ଅଥବା କୌଣସି ନୂତନ ସତ୍ୟର ଇଙ୍ଗିତ ପ୍ରଦାନକରେ, ତାହା ରହସ୍ୟବାଦ । ବିଶ୍ୱାସଯୋଗ୍ୟ ନହୋଇ ବିଶ୍ୱାସ ଜନ୍ମାଉଥିବା କାର୍ଯ୍ୟ, ପରିସ୍ଥିତି, ଗୁଣ, ବ୍ୟକ୍ତି ବା ବସ୍ତୁକୁ ରହସ୍ୟମୟ ବୋଲି କୁହାଯାଇଥାଏ । ଏହା ମଧ ମରମବାଦ, ଅତୀଇନ୍ଦ୍ରୀୟବାଦ କିମ୍ବା ବ୍ରହ୍ମବାଦ ଅର୍ଥରେ କୁହାଯାଇଥାଏ । କେହି କେହି ଏହାକୁ ଛାୟାବାଦ ଅର୍ଥରେ ମଧ ନାମିତ କରିଥାନ୍ତି । ଭାରତୀୟ ସାହିତ୍ୟରେ ଏହି ରହସ୍ୟବାଦର ଧାରଣା ଅତ୍ୟନ୍ତ ପ୍ରାଚୀନ । ଅଜ୍ଞାତ, ଅନନ୍ତ ଶକ୍ତିର ସନ୍ଧାନ ହିଁ ରହସ୍ୟବାଦ ସାହିତ୍ୟର ଆଦିକଥା । ରହସ୍ୟବାଦୀ କବି ଅତୀନ୍ଦ୍ରିୟ ଜଗତରେ ବିଚରଣ କରି ଆଧ୍ୟାତ୍ମିକତାର ପ୍ରଚାର କରିପାରେ । ରୂପ ମଧରେ ରୂପାତୀତର ସନ୍ଧାନ, ସ୍ଥୁଳ ଭିତରେ ସୂକ୍ଷ୍ମ ସତ୍ତାର, କ୍ଷୁଦ୍ର ଭିତରେ ବିରାଟର ଅନୁଭବ ରହସ୍ୟବାଦର ଧର୍ମ ।

**ରାଗ** – ରାଗ ହେଉଛି ସ୍ୱର ନିରୂପଣ । ରାଗ ଓ ବୃତ୍ତ ଗୋଟିଏ ଅର୍ଥରେ ବ୍ୟବହୃତ ହୁଅନ୍ତି । ଏହା ଛାନ୍ଦ, ବାଣୀଠାରୁ ପୃଥକ ଏବଂ ଛନ୍ଦର ଏକ ସଂଜ୍ଞା ରାଗ ଭାବାତ୍ମକ ଏବଂ ବ୍ୟାପକ । ଗୋଟିଏ ରାଗ ଭିନ୍ନ ଭିନ୍ନ ତାଳ ଓ ଛନ୍ଦରେ ବୋଲାଯାଇପାରେ । ଛନ୍ଦ ଏଠାରେ ସଂକୀର୍ଣ୍ଣ ।

**ରାମ ସାହିତ୍ୟ** – ମର୍ଯ୍ୟାଦାପୁରୁଷ ରାମ ବିଷ୍ଣୁଙ୍କର ଅବତାର ଭାବରେ ପୂଜ୍ୟ । ତାଙ୍କୁ ନେଇ ସଂସ୍କୃତ, ପ୍ରାକୃତ ଓ ପ୍ରାନ୍ତୀୟ ସାହିତ୍ୟ ସୌଧ ବିରାଟ । ବାଲ୍ମୀକି ରାମାୟଣ ରାମ ସାହିତ୍ୟର ଆଦି ରସ ।

**ରାସ** – ରାଧାକୃଷ୍ଣ ପ୍ରେମଲୀଳା ସଂପର୍କୀୟ ପର୍ବ । ଏଥିପାଇଁ ଝୁଲଣ, ରାସ ଓଡ଼ିଶାରେ ପର୍ବ ରୂପେ ପାଳିତ ହେଇ ଆସୁଛି । ବୈଷ୍ଣବ ବ୍ରହ୍ମବାଦୀଙ୍କ ମତରେ ରାସ ହେଲା ଆତ୍ମା ପରମାତ୍ମା କ୍ରୀଡ଼ା । ବ୍ରହ୍ମବୈବର୍ତ୍ତ ପୁରାଣରେ ଶ୍ରୀକୃଷ୍ଣ ହେଉଛନ୍ତି ରାସବ୍ରହ୍ମ ଓ ରାଧା ହେଉଛନ୍ତି ରାସେଶ୍ୱରୀ । ରାଧା ହେଲେ ରସର କେନ୍ଦ୍ରବିନ୍ଦୁ ଓ ଗୋପୀମାନେ ରସୋପକରଣ । ଜୈନମାନେ ପ୍ରଥମ ରାସ ଗ୍ରନ୍ଥାକାର ଥିଲେ । ଆଉ କେତେକ କହନ୍ତି ରାସ ଶବ୍ଦର ଉତ୍ପତ୍ତି ରହସ୍ୟ ଲୀଳା ଏବଂ ରାସକ ତାହାର କାବ୍ୟରୂପ ।

**ରୀତି** – ସାହିତ୍ୟ ଅଳଙ୍କାର ଶାସ୍ତ୍ରରେ କାବ୍ୟର ଆତ୍ମା ହେଉଛି ରୀତି । ଆଚାର୍ଯ୍ୟ ବାମନ ହେଉଛନ୍ତି ଏହି ମତବାଦର ପ୍ରତିଷ୍ଠାତା । ରୀତିର ବୈଶିଷ୍ଟ୍ୟ "ବିଶିଷ୍ଟା ପଦଃ ରଚନା ରୀତିଃ" । ଅର୍ଥାତ୍ କାବ୍ୟର ଶୋଭା ବର୍ଦ୍ଧନ ନିମନ୍ତେ ରଚନାରେ ଯେଉଁ ବିଶେଷ ପ୍ରକାର ଶବ୍ଦ ଯୋଜନା କରାଯାଇଥାଏ ତାହା ରୀତି । ଅଳଙ୍କାର ଗ୍ରନ୍ଥରେ ବହୁବିଧ ରୀତିର ଉଲ୍ଲେଖ କରାଯାଏ । ସେଗୁଡ଼ିକ ମଧ୍ୟରେ ଗୌଡ଼ୀ, ବୈଦର୍ଭୀ ଓ ପାଞ୍ଚାଳୀ ପ୍ରଧାନ ।

ଗୁଣ ହେଉଛି ରୀତିର ବିଧାୟକ ଶକ୍ତି । ଏହାର ସଂଖ୍ୟା ଦଶ - ଓଜଃ, ପ୍ରସାଦ, ଶ୍ଳେଷ, ସମତା, ସମାଧି, ମାଧୁର୍ଯ୍ୟ, ସୌକୁମାର୍ଯ୍ୟ, ଉଦାରତା, ଅର୍ଥବ୍ୟକ୍ତି ଓ କାନ୍ତି । ବୈଦର୍ଭୀରେ ସକଳ ଗୁଣ, ଗୌଡ଼ୀରେ ଓଜଃ ଏବଂ ପାଞ୍ଚାଳୀରେ ମାଧୁର୍ଯ୍ୟ ଓ ସୌକୁମାର୍ଯ୍ୟର ସମାବେଶ ଦେଖାଯାଏ ।

(୧) ବୈଦର୍ଭୀ - ଏହା ମାଧୁର୍ଯ୍ୟ ଗୁଣ ସଂପନ୍ନ । ଏଥିରେ ସୁକୁମାର ବର୍ଣ୍ଣ, ଅସମାନ ବା ମଧ୍ୟ ସମାସର ସମାବେଶ ଥାଏ ।

(୨) ଗୌଡ଼ୀ - କଠିନ ବର୍ଣ୍ଣ ତଥା କଠିନ ଯୁକ୍ତାକ୍ଷର ସହିତ ସମାସର ବହୁଳ ବ୍ୟବହାର ।

(୩) ପାଞ୍ଚାଳୀ - ପାଞ୍ଚ ବା ଛଅପଦ ବିଶିଷ୍ଟ ସମାସ ଦ୍ୱାରା ସଂଶ୍ଳିଷ୍ଟ ରଚନା ।

ଶବ୍ଦ ଗୁଣ ଶବ୍ଦ ସୃଷ୍ଟିର କୌଶଳ ଏବଂ ଅର୍ଥଗୁଣ କାବ୍ୟର ସାମଗ୍ରିକ ସୌନ୍ଦର୍ଯ୍ୟକୁ ବୁଝାଏ । ଗୁଣ ଗୁଡ଼ିକର ପରିଚୟ -

(୧) ଶ୍ଳେଷ - ଗାଢ଼ ବନ୍ଧନ । ଏହା ଦୁଇ ପ୍ରକାର - ଶବ୍ଦ ଶ୍ଳେଷ ଓ ଅର୍ଥ ଶ୍ଳେଷ । ଶବ୍ଦ ଶ୍ଳେଷରେ ସନ୍ଧି ହେତୁ ସଜାତୀୟ ପଦ ଏକପଦ ପରି ଦେଖାଯାନ୍ତି । ଏଥିରେ ମହାପ୍ରାଣ ବର୍ଣ୍ଣର ପ୍ରୟୋଗ ଥାଏ ।

(୨) ପ୍ରସାଦ ଗୁଣ - ପଦ ସରଳତା ଯୋଗୁଁ ବିନା ପ୍ରୟାସରେ ଅର୍ଥବୋଧ ଆସେ ।

(୩) ସମତା ଗୁଣ - ଛୋଟ ଛୋଟ ସମାସ ବା ପଦର ଅକ୍ଷର ସଂଖ୍ୟା ସମାନ ଥାଏ । ଏହି ଗୁଣ ତିନିପ୍ରକାର ଯଥା - ମୃଦୁ ବନ୍ଧ (ଅଳ୍ପପ୍ରାଣ ଅକ୍ଷର ଯୋଜନା), ସ୍ଫୁଟ ବନ୍ଧ - କଠିନ ଶବ୍ଦ ଗଠନ, ମଧ୍ୟ ବନ୍ଧ - ଦୁଇ ବନ୍ଧର ସମିଶ୍ରଣ ।

(୪) ମାଧୁର୍ଯ୍ୟ ଗୁଣ - କୋମଳ ଓ ସରସ ପଦରୁ ଚମତ୍କାର ଅର୍ଥ ପ୍ରତୀତି ଆସେ । ବର୍ଗର ପ୍ରଥମ ଓ ପଞ୍ଚମ ବର୍ଣ୍ଣର ସଂଯୋଗ ଟ, ଠ, ଡ଼, ଢ଼ ତଥା ସମାସ ନଥାଏ ।

(୫) ସୌକୁମାର୍ଯ୍ୟ - ଏଥିରେ ଅଶ୍ଳୀଳ ପଦ ପରିହାର କରାଯାଇ ସେଇ ଅର୍ଥ ପ୍ରକାଶ ପାଇଁ ଅନ୍ୟ ଶବ୍ଦ ଯୋଜନା ଥାଏ ।

(୬) ଅର୍ଥବ୍ୟକ୍ତ - ଅର୍ଥର ସ୍ଫୁଟ ପ୍ରତୀତି । ଅର୍ଥପ୍ରକାଶ ଯେତିକି ଶବ୍ଦ ଆବଶ୍ୟକ ଠିକ୍ ସେତିକି ଶବ୍ଦର ପ୍ରୟୋଗ ।

(୭) ଔଦାର୍ଯ୍ୟ - କାବ୍ୟରେ ପ୍ରତିପାଦିତ ଅର୍ଥର ଉତ୍କର୍ଷ ଥାଏ ।

(୮) ଓଜଃ - ଦୀର୍ଘ ବାକ୍ୟକୁ ଅଳ୍ପ ଶବ୍ଦରେ ପ୍ରକାଶ କରାଯାଏ । ବର୍ଗର ପ୍ରଥମ ଓ ତୃତୀୟ ବର୍ଣ୍ଣ ସହିତ ସେହି ବର୍ଗର ଅନ୍ତିମ ବର୍ଣ୍ଣର ସମାବେଶ ।

(୯) କାନ୍ତି - ଲୌକିକ ଅର୍ଥର ଅତିକ୍ରମଣ ହୁଏ ନାହିଁ । ଘଟଣା ବା ଅର୍ଥର ସ୍ୱାଭାବିକ ସନ୍ନିବେଶ ହୋଇଥାଏ ।

(୧୦) ସମାଧି - ଚମତ୍କାର ଅର୍ଥ ଶ୍ରବଣରେ ହୃଦୟ ରସାପ୍ଳୁତ ହୁଏ । ଗୋଟିଏ ଧର୍ମର ଅନ୍ୟବସ୍ତୁରେ ଉପଚାର ହେଉଛି ସମାଧି ।

**ରୂପ** – ସାହିତ୍ୟ ରୂପ ଆକୃତିକୁ କେବଳ ବୁଝାଇ ଥାଏ । ଆକୃତି ନିର୍ମାଣ କରିବାର ତତ୍ତ୍ୱ । ରୂପ କେବଳ ରଚନା ନୁହେଁ ରଚନାର ବିଶେଷତା ନିର୍ଣ୍ଣୟ କରୁଥିବା ତତ୍ତ୍ୱ ମଧ୍ୟ । ବିଷୟ ଚରିତ୍ରର ବିକାଶ ଏବଂ ସେହି ବିକାଶ ଧାରା ବିନ୍ୟାସ ବା ଶୈଳୀ ହେଉଛି ରୂପ । ଶୈଳୀ ରୂପ ନୁହେଁ, ଶୈଳୀ ରୂପର ଅଙ୍ଗ । ଇଂରାଜୀ form ଶବ୍ଦର ପ୍ରତିଶବ୍ଦ । ସାହିତ୍ୟ କ୍ଷେତ୍ରରେ ଏହା କାବ୍ୟକାରର ଧାରଣା, ବସ୍ତୁ ଓ ଭାବଗତ ରୀତି କୁହାଯାଏ ।

**ରୂପକ** – ସଂସ୍କୃତରେ ଗ୍ରୀକ୍ ନାଟକ (Drama) ରୂପକ ନାମରେ ପରିଚିତ । ସଂସ୍କୃତ ରୂପକର ଦର୍ଶକ ମୁଷ୍ଟିମେୟ ଅଭିଜାତ ସଂପ୍ରଦାୟର ଲୋକ ମଧ୍ୟରେ ସୀମାବଦ୍ଧ ଥିଲା ।

**ରୂପକ ଅଳଙ୍କାର** – ସମଧର୍ମାକ୍ରାନ୍ତ ଉପମାନ ଓ ଉପମେୟ ଉଭୟକୁ ସମ ଓ ଅଭିନ୍ନ ବୋଲି କଳ୍ପନା କଲେ ରୂପକ ଅଳଙ୍କାର ହୁଏ । ଅର୍ଥାତ୍ ଉପମେୟଠାରେ ଉପମାନର ଆରୋପ କରାଯାଇ ଅଭେଦ କଳ୍ପନା କରାଗଲେ ରୂପକ ଅଳଙ୍କାର ହୁଏ ।

ଏହା ପ୍ରଧାନତଃ ୫ ପ୍ରକାର । ଯଥା - (୧) ପାରମ୍ପରିତ ରୂପକ (୨) ସାଙ୍ଗ ରୂପକ (୩) ନିରଙ୍ଗ ରୂପକ (୪) ମାଳା ରୂପକ (୬) ଅଧିକାରୂଢ଼ ବୈଶିଷ୍ଟ୍ୟ ରୂପକ ।

ପାରଂପରିତ ରୂପକ – ଯେଉଁଠାରେ ଆରୋପ ଏକ ଆରୋପର ହେତୁ ହୁଏ, ସେଠାରେ ପରମ୍ପରିତ ରୂପକ ଅଳଙ୍କାର ହୁଏ । ଉଦାହରଣ -

''ଚାହିଁ ଅଦଭୁତେ ଅପୂର୍ବ ଲାବଣ୍ୟ
ରୂପସୀ ରୂପ ସାଗରେ
ରୂପଲୋଭୀ ନୃପ କୁମାରଙ୍କ ମନ
ମୀନ ବୁଡ଼ିଗଲା ଖରେ ।'' (ଇନ୍ଦୁମତୀ)

ଏଠାରେ 'ରୂପ' ରେ 'ସାଗର'ର ଅରୋପ ହିଁ 'ମନ'ରେ 'ମୀନ' ଆରୋପର ହେତୁ ହୋଇଛି । ଏଣୁ ଏହା ପରମ୍ପରିତ ରୂପକ ଅଳଙ୍କାର ।

ସାଙ୍ଗ ରୂପକ – ଯେଉଁଠାରେ ଅଙ୍ଗରେ କୌଣସି ବସ୍ତୁର ଆରୋପ କରାଯାଇ ତାହାର ଅଙ୍ଗୀଭୁତ ବସ୍ତୁମାନଙ୍କରେ ଅନ୍ୟସବୁ ବସ୍ତୁର ଆରୋପ କରାଯାଇଥାଏ, ସେଠାରେ

ସାଙ୍ଗରୂପକ ଅଳଙ୍କାର ହୁଏ । ଉଦାହରଣ -

''ପ୍ରବେଶ ହୋଇଲା ବରଷା କାଳ
ପ୍ରମାଦମାନଙ୍କ ଜନମ ସ୍ଥଳ ।'' (ଲାବଣ୍ୟବତୀ)

**ନିରଙ୍ଗ ରୂପକ** – ଯେଉଁଠାରେ ଗୋଟିଏ ଉପମେୟରେ ଗୋଟିଏ ମାତ୍ର ଉପମାନର ଆରୋପ ହୋଇଥାଏ ଅଥବା ଅଭେଦ କଳ୍ପନା କରାଯାଇଥାଏ ସେଠାରେ ନିରଙ୍ଗ ରୂପକ ଅଳଙ୍କାର ହୁଏ । ଉଦାହରଣ -

ସଂଶୟ ଦୋଳାରେ ପଡ଼ି ଚିତ୍ତ ମୋର
ହେଉଅଛି ଆନ୍ଦୋଳିତ,
ଛାର ନାରୀ ହୋଇ କେମନ୍ତେ ବୁଝିବି
ଏ ତୋର ଗୂଢ଼ ଚରିତ । (ପାର୍ବତୀ)

**ମାଳା ରୂପକ** – ଯେଉଁଠାରେ ଏକ ଉପମେୟରେ ବହୁ ଉପମାନର ଆରୋପ ହୋଇଥାଏ, ସେଠାରେ ମାଳା ରୂପକ ଅଳଙ୍କାର ହୁଏ । ଉଦାହରଣ -

ଭାବମୟୀ ଭାରତୀର ଅମର ନନ୍ଦନ
କଳ୍ପନା ନନ୍ଦନ ବନ ବିହର ରସିକ,
ହେ କବୀନ୍ଦ୍ର କାଳିଦାସ କବିକୁଳ - ଧନ
ବିଶ୍ୱ ଶୋଭାରାଣୀଙ୍କର ପରମ ପ୍ରେମିକ । (କାଳିଦାସ)

**ଅଧିକାରୂଢ଼ ବୈଶିଷ୍ଟ୍ୟ ରୂପକ** – ଯେଉଁଠାରେ ବିଶେଷ ପ୍ରୟୋଜନ ଦ୍ୱାରା ଉପମାନ ଅପେକ୍ଷା ଉପମେୟର ଆଧିକ୍ୟ ପ୍ରକଟିତ ହୋଇଥାଏ, ସେଠାରେ ଅଧିକାରୂଢ଼ ବୈଶିଷ୍ଟ୍ୟ ରୂପକ ଅଳଙ୍କାର ହୁଏ । ଉଦାହରଣ -

ଉତ୍କଳ ଆକାଶେ ଅମଳ ଶଶାଙ୍କ
ଗଙ୍ଗେଶ୍ୱର ନରସାଇଁ
ସୁତା ହୋଇ ତାଙ୍କ ଉଜ୍ଜ୍ୱଳ ଶ୍ରୀମୁଖେ
କଳଙ୍କ ଦେବୁ କାପାଇଁ । (ପାର୍ବତୀ)

**ରୂପକଳ୍ପ** – ଆଧୁନିକ କବିତାରେ ରସବାଦ ଅପେକ୍ଷା ରୂପବାଦକୁ ପ୍ରାଧାନ୍ୟ ଦେଲାବେଳେ ରୂପକଳ୍ପର କଥାଉଠେ । ଏହା ଏକ ଶବ୍ଦଚିତ୍ର ଯାହା ଗୋଟିଏ ନିର୍ଦ୍ଦିଷ୍ଟ ସମୟର ବୌଦ୍ଧିକ ଓ ଆବେଗିକ ପ୍ରବୃତ୍ତି ବହନ କରିଥାଏ ।

**ରେ ନାଁସା** – ସାହିତ୍ୟ ବା ଶିଳ୍ପର ପୁନରୁଦ୍ଧାର ବା ପୁନର୍ଜାଗରଣକୁ ବୁଝାଏ । ପ୍ରାଚୀନ ସାହିତ୍ୟ ଓ ସାମନ୍ତବାଦୀ ଚଳଣିର ପରିବର୍ତ୍ତନ ସହିତ ସଂସ୍ଥାପନ ହେଲା । ସାମଗ୍ରିକ ଦୃଷ୍ଟିରୁ ଉଭୟେ ପୁନଃ ସଂସ୍ଥାପନ କୁ ରେନାଁସା - ମାନବିକତା କୁହାଯାଇପାରେ ।

**ରୋମାଣ୍ଟିକ** – ଫରାସୀ ରୋମାନସ୍ (Romance) ଶବ୍ଦ ଏହାର ମୂଳ । ଲଘୁଗଳ୍ପ, ଉପନ୍ୟାସ ଲେଖକଙ୍କୁ ଫ୍ରାନ୍‌ସରେ ଅଦ୍‌ଭୁତ ଅର୍ଥରେ ରୋମାଣ୍ଟିକ୍ କୁହାଯାଏ । ରୋମାଣ୍ଟିକ ସାହିତ୍ୟକୁ କ୍ଲାସିକର ବିପରୀତଭାବେ କଳାତ୍ମକ, ବ୍ୟକ୍ତିକୈନ୍ଦ୍ରିକ, ନିରାନନ୍ଦମୟ, ଭାବାତ୍ମକ, ଚିତ୍ରାତ୍ମକ, ଅସୀମ, ମୁକ୍ତ ଓ ମିଶ୍ରିତ ଭାବେ କୁହାଯାଇଥାଏ । ପରବର୍ତ୍ତୀ କ୍ଷେତ୍ରରେ ଏହା କଳ୍ପନାପ୍ରବଣତା, ବାସ୍ତବ ଜୀବନ ଚିନ୍ତା ଓ ଅନୁଭବର ଅଭାବ, ଅବାନ୍ତର ଆକାଂକ୍ଷା, ରହସ୍ୟମୟ, ସୌନ୍ଦର୍ଯ୍ୟାନୁଭୂତି ପ୍ରକାଶରେ ଶକ୍ତି ବୈଚିତ୍ର ପ୍ରଭୃତି ଲକ୍ଷଣଯୁକ୍ତ ସାହିତ୍ୟକୁ ବୁଝାଏ ।

## ହ

**ହଳନ୍ତ** – ବ୍ୟାକରଣ ସମ୍ମତ ଚିହ୍ନ । ଏହାର ପ୍ରୟୋଗ ଧାତୁ ରୂପରେ ଥାଏ । ସ୍ୱରହୀନ ବ୍ୟଞ୍ଜନ ବର୍ଣ୍ଣ । ବ୍ୟଞ୍ଜନ ବର୍ଣ୍ଣରେ ଦିଆଯାଇଥିବା ସ୍ୱରହୀନ ଚିହ୍ନ " ` " ।

**ହଜ ସହଜ** – ସନ୍ଥ ସାହିତ୍ୟରେ ଦେଖାଯାଏ । ପବନକୁ ଉର୍ଦ୍ଧ୍ୱକୁ ତୋଳିବା 'ସହଜ' ଓ ପବନକୁ ନିବୃତ୍ତ କରିବାକୁ 'ହଜ' କୁହାଯାଇଛି । ଯେତେବେଳେ ମନ ସହଜରେ ରହେ, ସେତେବେଳେ ଜୀବ ପରମ ସହିତ ମିଶିଯାଏ । ନୟନ ମଧ୍ୟରେ ଯେଉଁ ସୂକ୍ଷ୍ମପୁରୁଷ ରହିଛନ୍ତି, ସେ ହେଉଛନ୍ତି ନିରଞ୍ଜନ । ପବନ ହିଁ ଜୀବ, ସେ ମଧ୍ୟ ସହଜ । ନୟନ ମଧ୍ୟସ୍ଥ ସୂକ୍ଷ୍ମ ପୁରୁଷଙ୍କ ସହ ଭେଟର ସହଜପ୍ରାପ୍ତି । ନୟନ ସହ ଯେତେବେଳେ ପବନ ବିହାର କରେ ସେ ହୁଏ ସହଜ ସମାଧି ।

**ହଂସ** – ସିଦ୍ଧ ସାହିତ୍ୟରେ 'ଜୀବାତ୍ମା' ହଂସ ଭାବରେ କଥିତ । ଡାହାଣ ପୁଡ଼ାର ନିଶ୍ୱସ କୁ 'ହଂସ' ମଧ୍ୟ କୁହାଯାଏ ।

**ହ୍ରସ୍ୱସ୍ୱର** – ଉଚ୍ଚାରଣ ଅନୁଯାୟୀ ସ୍ୱରବର୍ଣ୍ଣ ଦୁଇଭାଗରେ ବିଭକ୍ତ (୧) ହ୍ରସ୍ୱ (୨) ଦୀର୍ଘ ସ୍ୱର । ପାଞ୍ଚଟି ହ୍ରସ୍ୱ ସ୍ୱର ଅ, ଇ, ଉ, ଋ ଌ ଏବଂ ଆଠଟି ଦୀର୍ଘସ୍ୱର । ଓଡ଼ିଆ ଭାଷାରେ ୧୩ ଟି ସ୍ୱରବର୍ଣ୍ଣ ଅଛି । ହ୍ରସ୍ୱ ସ୍ୱର ଯେତିକି ସମୟରେ ଉଚ୍ଚାରିତ ହୁଏ, ଦୀର୍ଘ ସ୍ୱର ତାର ଦ୍ୱିଗୁଣ ସମୟରେ ଉଚ୍ଚାରିତ ହୁଏ ।

**ହାମାର୍ସିଆ** – ଗ୍ରୀକ୍ ଦୁଃଖାତ୍ମକ ନାଟକର ଏକ ବିଶିଷ୍ଟ ଲକ୍ଷଣ । ଏହାର ଗୋଟିଏ ଅର୍ଥ ହେଉଛି ଏକ ମୂଳହୀନ ଅଥଚ ନିନ୍ଦନୀୟ କାର୍ଯ୍ୟ ନୁହେଁ । ମଣିଷର ମୌଳିକ ଦୁର୍ବଳତା, ଆଦି ପାପ ଜନିତ କାର୍ଯ୍ୟ ଓ ତା'ର ଦଣ୍ଡ ବିଷୟରେ ନାଟକରେ ବର୍ଣ୍ଣିତ ଥାଏ ।

**ହାସ୍ୟରସ** – ଭାରତୀୟ ଅଳଙ୍କାର ଶାସ୍ତ୍ରର ଅନ୍ୟତମ ରସ । ବିକୃତା ଆକାର, ବେଶଭୂଷା, କଥାବାର୍ତ୍ତା, ଚେଷ୍ଟା ଓ ଆଚରଣ କରୁଥିବା ବ୍ୟକ୍ତି ଯେ କି ହସର ଉଦ୍ରେକ କରାଏ, ସେ ଏଠାରେ ଆଲମ୍ବନ ବିଭାବ । ତାହାର ବିକୃତ ବେଶଭୂଷା ଓ ଚାଲିଚଳନ ଉଦ୍ଦୀପନ ବିଭାବ । ଚକ୍ଷୁର ବିସ୍ତାର, ସଂକୋଚନ ତଥା ମୁଖବିକୃତି ଇତ୍ୟାଦି ଅନୁଭାବ । ନିଦ୍ରା, ଆଳସ୍ୟ, ଚପଳତା ଆଦି ସଂଚାରୀ ଭାବ । ଏହାର ସ୍ଥାୟୀ ଭାବ ହାସ ।

ସାହିତ୍ୟ ଦର୍ପଣାକାର ବିଶ୍ୱନାଥ କବିରାଜଙ୍କ ମତରେ ହାସ୍ୟ ହେଲା "ବାଗାଦି ବୈକୃତୈଶ୍ଚେତୋ - ବିକାସୋହାସ ଇଷ୍ୟତେ"। ଅର୍ଥାତ୍ ବାଣୀ, ରୂପ ଆଦି ବିକାରକୁ ଦେଖି ଚିତ୍ତରେ ଉଲ୍ଲସିତ ଭାବ ହାସ୍ୟ ସୃଷ୍ଟିକରେ ।

**ହାସ୍ୟ** – ସମାଜ ଅଥବା ବ୍ୟକ୍ତି ଜୀବନର ଦୋଷତ୍ରୁଟି ପରିହାସ କରି, ସତ୍ ଉଦ୍ଦେଶ୍ୟରେ ବ୍ୟଙ୍ଗାତ୍ମକ ଶୈଳୀରେ ହାସ୍ୟରସ ଧାରାର ରଚନାକୁ ହାସ୍ୟ ରଚନା କୁହାଯାଏ । ଆଦି

ବିକାରକୁ ଦେଖି ଚିତ୍ତରେ ଉଲ୍ଲସିତ ଭାବ ହାସ୍ୟ ସୃଷ୍ଟି କରେ । ନାଟ୍ୟଶାସ୍ତ୍ର ପ୍ରଣେତା ଭରତ ମୁନିଙ୍କ ଭାଷାରେ ''ଅଥ ହାସ୍ୟୋ ନାମ ହାସ ସ୍ଥାୟିଭବକଃ'' ଆକାର ଓ ବାକ୍ୟର ବିକୃତି ଦ୍ୱାରା ତଥା ଅଙ୍ଗବିକାର ଓ ବିକୃତି ବେଶଦ୍ୱାରା (ବିଦୂଷକାଦି) ଲୋକଙ୍କୁ ହସାନ୍ତି ବୋଲି ଏହି ରସକୁ ହାସ୍ୟରସ କୁହାଯାଏ । ବିଭିନ୍ନ ବିକାରକୁ ନେଇ ହିନ୍ଦି ସାହିତ୍ୟର ଲେଖକ ହାସ୍ୟକୁ ପାଞ୍ଚଭାଗରେ ବିଭକ୍ତ କରି ବିଚାର କରନ୍ତି ଯଥା (୧) ସହଜ (୨) ଦୃଷ୍ଟିବିକାର (୩) ଭାବ ବିକାର (୪) ଧ୍ୱନି ବିକାର (୫) ବୁଦ୍ଧି ବିକାର । ଏହି ପ୍ରତ୍ୟେକ ବିକାର ପୁନଶ୍ଚ ଦୁଇଟି ଲେଖାଏଁ ବିଭାଗରେ ବିଚାର କରାଯାଇଛି । ତେଣୁ ସହଜ ହେଲା 'ବିନୋଦ' ଏବଂ ଅଟ୍ଟହାସ୍ୟ, ଦୃଷ୍ଟି ବିକାଶ ହେଲା ଅତିରଞ୍ଜନ ଓ ବିଦ୍ରୁପ, ଭାବ ବିକାର ହେଲା ପରିହାସ ଓ ଉପହାସ ।

**ହୃଦୟ କବି** – ଭାରତୀୟ ସାହିତ୍ୟ ଶାସ୍ତ୍ରରେ କବିମାନଙ୍କ ଶ୍ରେଣୀ ବିଭାଗ ଦେଖାଯାଏ । ଯେଉଁମାନେ ସ୍ୱଭାବତଃ ରଚନାପ୍ରିୟ, କିନ୍ତୁ ନିଜ ଶକ୍ତି ବିଷୟରେ ସନ୍ଦିହାନ ହୋଇ କେବଳ ଆତ୍ମତୃପ୍ତି ପାଇଁ କବିତା ରଚନା କରନ୍ତି କିନ୍ତୁ କାହାକୁ ହେଲେ ତାହା ପଢ଼ି ଶୁଣାନ୍ତି ନାହିଁ କି ପତ୍ର ପତ୍ରିକାରେ ପ୍ରକାଶ କରନ୍ତି ନାହିଁ, ସେମାନଙ୍କୁ ହୃଦୟକବି କୁହାଯାଏ ।

**ହେତୁ** – ଓଡ଼ିଆ ସନ୍ଥ ସାହିତ୍ୟରେ 'ହେତୁ' ଶବ୍ଦର ବହୁଳ ପ୍ରୟୋଗ ରହିଛି । ଯୋଗୀମାନେ 'ହେତୁ' ବଳରେ ଜନ୍ମଜନ୍ମାନ୍ତର ର କଥା ସ୍ମରଣ କରିଥାନ୍ତି ।

''ସଂସାରେ ଜାଗି ଯୋଗୀଜନେ । ହେତୁକୁ ଧରିଥାନ୍ତି ମନେ ।
ଜନ୍ମମରଣ ତହିଁ ହେଲେ । ପାଶୋର ନଯାଇଟି ଭଲେ ।

(ହେତୁଉଦୟ ଭାଗବତ)

**ହେତୁବାଦ** – କାର୍ଯ୍ୟ ମୂଳରେ ଥିବା କାରଣର ବିଶ୍ଳେଷଣରୁ ହେତୁବାଦର ସୃଷ୍ଟି । ଏହାକୁ ଯୁକ୍ତିବାଦ ମଧ କୁହାଯାଏ । ବୈଜ୍ଞାନିକ ଭାବନା ସହିତ ଡାରଉଇନ୍‌ଙ୍କ ବିବର୍ତ୍ତନ ତତ୍ତ୍ୱ, ଫ୍ରୟେଡ୍‌ଙ୍କ ମନସ୍ତତ୍ତ୍ୱ, ମାର୍କସଙ୍କ ବସ୍ତୁବାଦ ସାହିତ୍ୟରେ ହେତୁବାଦକୁ ବଳବତ୍ତର କଲା । ସାମାଜିକ ଚଳଣୀ ଭିତ୍ତିକ ସାହିତ୍ୟ ଓ ମନସ୍ତତ୍ତ୍ୱ ହେତୁବାଦର ପ୍ରାଣପ୍ରତିଷ୍ଠାର କାରଣ ।

## ସ

**ସଗୁଣ ନିର୍ଗୁଣ** – ସଗୁଣ ଅର୍ଥ ଲୀଳାଯୁକ୍ତ ବା ଶରୀରୀ ଈଶ୍ୱର, ନିର୍ଗୁଣ ଅର୍ଥ ଲୀଳା ବିହୀନ, ବିକାରହୀନ ଈଶ୍ୱର । ଦୁଇଟିଯାକ ପରମ ସତ୍ତାର ପରିଚୟ । ପାର୍ଥକ୍ୟ ହେଉଛି ନିର୍ଗୁଣ ଈଶ୍ୱର ଉପାସନା ଅନ୍ତରର ବିଶ୍ୱାସ ସର୍ବସ୍ୱ କିନ୍ତୁ ସଗୁଣ ଈଶ୍ୱର ଉପାସନା ବିଶ୍ୱାସ ଓ ଉପଚାର ପ୍ରଧାନ । ଅଚ୍ୟୁତାନନ୍ଦ ଦାସ ତାଙ୍କ ଗୁରୁଭକ୍ତି ଗୀତାରେ ସଗୁଣକୁ ଦଧି ଏବଂ ନିର୍ଗୁଣକୁ ଲବଣୀ ଭାବରେ ପରିଚିତ କରାଇଛନ୍ତି । ଅର୍ଥାତ୍ ସଗୁଣର ମନ୍ଥନରୁ ନିର୍ଗୁଣର ଉପଲବ୍‌ଧି ହୁଏ । ସଗୁଣ ନିର୍ଗୁଣ ବ୍ରହ୍ମବାଦ ସମ୍ବନ୍ଧରେ ଓଡ଼ିଆ ସନ୍ଥ ସାହିତ୍ୟରେ ବିସ୍ତୃତ ବିଚାର ରହିଛି ।

**ସତ୍ୟନାରାୟଣ ପାଲା** – ସତ୍ୟନାରାୟଣ ପାଲା ଓଡ଼ିଆ ସାହିତ୍ୟ ତଥା ଆଧ୍ୟାତ୍ମିକ ଧାରାର ଏକ ବିଶେଷ ରଚନା । ଏହା ହିନ୍ଦୁ ଓ ମୁସଲମାନ ସଂସ୍କୃତି ସମନ୍ୱୟ ସ୍ଥାପନ କ୍ଷେତ୍ରରେ ବିଶିଷ୍ଟ ଭୂମିକା ଗ୍ରହଣ କରେ । ଏହା କବି କର୍ଣ୍ଣଙ୍କ ଦ୍ୱାରା ରଚିତ । ଯେ କୌଣସି ବ୍ୟକ୍ତି ମାନସିକ କରି ଯେକୌଣସି ଦିନ ସତ୍ୟନାରାୟଣ ପୂଜା କରିବା ସଂଗେ ସଂଗେ ପାଲା ପୁସ୍ତକ ପାରାୟଣ କରିଥାନ୍ତି । ସତ୍ୟନାରାୟଣଙ୍କ ମହିମା ଗାନ ପୂର୍ବରୁ ସଭାସ୍ଥଳରେ ପଞ୍ଚଦେବତାଙ୍କୁ ଷୋଡ଼ଶ ଉପଚାର କରି ଶିରିଣି ଭୋଗ ଦେଇଥାନ୍ତି ।

**ସତ୍ୟବାଦୀ ଯୁଗ** – ପୁରୀ ଜିଲ୍ଲାର ସତ୍ୟବାଦୀଠାରେ ପ୍ରତିଷ୍ଠିତ ସତ୍ୟବାଦୀ ବନବିଦ୍ୟାଳୟର ଶିକ୍ଷକ - ସାହିତ୍ୟିକଙ୍କ ଦ୍ୱାରା ଏକ ସାହିତ୍ୟିକ ଯୁଗ ସୃଷ୍ଟି ହୋଇଥିଲା । ଏହାର ପୁରୋଧା ଥିଲେ ଗୋପବନ୍ଧୁ ଦାସ, ନୀଳକଣ୍ଠ ଦାସ, ଆଚାର୍ଯ୍ୟ ହରିହର, କୃପାସିନ୍ଧୁ, ଲିଙ୍ଗରାଜ ମିଶ୍ର । ଓଡ଼ିଆ ସାହିତ୍ୟରେ ଏହା ଜାତୀୟ ଯୁଗ । ଗୋଷ୍ଠୀଗତ ଆଦର୍ଶର ଐକ୍ୟ ସମ୍ମିଳିତ ପ୍ରଚେଷ୍ଟାର ଏକରୂପତା ଓ ଗଣମୁଖୀ ଆଦର୍ଶ - ଏ ତିନୋଟି ସତ୍ୟବାଦୀ ଯୁଗ ସାହିତ୍ୟର ସ୍ୱରୂପ ବୋଲି ଗଣାଯାଏ ।

**ସନ୍ଦେଶ** – ଏହା ଏକ କାବ୍ୟଧାରା ଯେଉଁଠି ଖବର ପଠାଇବା ଉଦ୍ଦେଶ୍ୟ ସନ୍ନିହିତ ଥାଏ । ସାହିତ୍ୟରେ ଏହିପରି କାବ୍ୟକୃତି ଭାବରେ କାଳିଦାସଙ୍କ 'ମେଘଦୂତମ୍' ଅନବଦ୍ୟ ସୃଷ୍ଟି । ମେଘଦୂତମ ଅନୁସରଣରେ ବହୁ ସନ୍ଦେଶ କାବ୍ୟ ସଂସ୍କୃତରେ ରଚିତ ହୋଇଥିଲା । କୃଷ୍ଣାଚାର୍ଯ୍ୟଙ୍କ 'ମେଘ ସନ୍ଦେଶ ବିମର୍ଶ', ରାମଚନ୍ଦ୍ରଙ୍କ 'ଘନ ବୃତମ', ରାମ ଶାସ୍ତ୍ରୀଙ୍କ 'ମେଘପ୍ରତି ସନ୍ଦେଶ' ପ୍ରଧାନ । ଏହାପରେ ଧର୍ମ, ଭକ୍ତି, ଓ ବିପ୍ରଲମ୍ଭ ଶୃଙ୍ଗାର ଅବଲମ୍ବନରେ ସନ୍ଦେଶ କାବ୍ୟ ରଚିତ ହୋଇଛି ।

**ସନେଟ** – ଚତୁର୍ଦ୍ଦଶପଦୀ କବିତା । ସନେଟର ଅର୍ଥ କ୍ଷୁଦ୍ର ଧ୍ୱନି (Sonnetto) । ଇଟାଲୀ ଭାଷାରୁ ଏହା ଆନୀତ । ପ୍ରଥମେ ସନେଟ ଥିଲା ଏଗାର ଅକ୍ଷର ବିଶିଷ୍ଟ ୧୪ଟି ପାଦର

ସମାହାର । ପଦଯୋଜନାରେ ଚଉଦଟି ଚରଣ ଦୁଇଭାଗରେ ବିଭକ୍ତ - ପ୍ରଥମ ଆଠଚରଣ (Octave), ଓ ଦ୍ୱିତୀୟଟି ଛଅ ଚରଣ (Sestete) ହୁଏ । ଅଷ୍ଟକାଂଶ ଦୁଇଟି ସଂବୃତ୍ତ ଚତୁଷ୍କ(enclosed Quatrain) ର ମେଳ ବନ୍ଧନରେ ଗଠିତ ହୁଏ ଏବଂ ଷଷ୍ଟକାଂଶଟି ଦୁଇଟି ତ୍ରିପଦିକା (Tarcet) ର ମେଳ ବନ୍ଧରେ ଗଠିତ ହୁଏ । ଇଂରାଜୀ କବିତାରେ ଇଟାଲୀର ପେଟ୍ରାର୍କ ସନେଟର ଜନ୍ମଦାତା ଓ ଓଡ଼ିଆରେ ଏହି କବିତା ପ୍ରବର୍ତ୍ତନ କରିଥିଲେ ମଧୁସୂଦନ ରାଓ ।

**ସନ୍ଧାଭାଷା** – ଗୁଢ଼ ଅର୍ଥ ଥିବା ପ୍ରଚଳିତ ଶବ୍ଦକୁ ନେଇ ଗୀତ ରଚିତ କରିବାର ପଦ୍ଧତି । ରହସ୍ୟାତ୍ମକ ରଚନା ମଧ୍ୟ କୁହାଯାଇଥାଏ । ନାଥ ସାହିତ୍ୟ, ସହଜିୟା ବୌଦ୍ଧ ସାହିତ୍ୟ, ବଙ୍ଗଳା ବାଉଲ ଗୀତ, ଓଡ଼ିଆ ସନ୍ଥ ସାହିତ୍ୟରେ ସନ୍ଧାଭାଷାର କବିତା ଅସଂଖ୍ୟ । ଚର୍ଯ୍ୟାଗୀତି ଓ ଦୋହାକୋଷରେ ପ୍ରଯୁକ୍ତ ଭାଷା 'ସନ୍ଧ୍ୟା' ଭାଷା ନାମରେ ପରିଚିତ । ସାହିତ୍ୟରେ ଏହା ସାଙ୍କେତିକ ଭାଷା ବା ଅଭିପ୍ରାୟିକ ଭାଷା ଭାବରେ ପରିଗଣିତ ହୁଏ । ହିନ୍ଦୁ ତନ୍ତ୍ର ହେଉ ବା ବୌଦ୍ଧତନ୍ତ୍ର ହେଉ, ଏହା ଏପରି ଭାଷାରେ ଲିଖିତ ହୋଇଥାଏ ଯାହା ସର୍ବଦା ଦୁଇଟି ଅର୍ଥ ପ୍ରକାଶ କରେ - ଗୋଟିଏ ବାହ୍ୟ ବା ଆଭିଧାନିକ ଅର୍ଥ ଓ ଅନ୍ୟଟି ଗୁହ୍ୟ ବା ତାତ୍ତ୍ୱିକ ଅର୍ଥ । ଏହା ସନ୍ଧାଭାଷା ନାମରେ ପରିଚିତ । ସନ୍ଧାଭାଷାକୁ କେତେକ ''ଆଲୋ-ଆଁ ଧାରି ଭାଷା'' ଅର୍ଥାତ୍ ଗୋଧୂଳି ଭାଷା, ଯାହା ଆଲୋକ ପରି ପ୍ରକାଶିତ ଓ ଅନ୍ଧାର ପରି ଗୁପ୍ତ । କେତେକ ଭାଷାବିତ୍ ସନ୍ଧ୍ୟା ଶବ୍ଦର ଅର୍ଥ ଅଭିସନ୍ଧି ବା ସନ୍ଧି ଭାବରେ ଗ୍ରହଣ କରି ଉଭୟ ଗୁହ୍ୟ ଓ ବାହ୍ୟ ଅର୍ଥର ଅଭିସନ୍ଧି ରଖି ରଚନାଧାରାକୁ ବୁଝାଇଥାଏ ବୋଲି ମତ ଦିଅନ୍ତି । ତେବେ ସମ୍ୟକ୍ ଧ୍ୟାନ ପୂର୍ବକୁ ବିଶେଷ ପ୍ରୟୋଗ ପ୍ରତି ଦୃଷ୍ଟି ରଖି ଯେଉଁ ଭାଷାର ଗୂଢ଼ାର୍ଥ ବା ପ୍ରଚ୍ଛନ୍ନାର୍ଥ ନିରୂପଣ କରିବାକୁ ହୁଏ, ତାହା ସନ୍ଧ୍ୟା । ସମ - ପୂର୍ବକ ଧୈ (ଧ୍ୟାନକରି) (ଅ+ଅପ୍(ସ୍ତ୍ରୀ) = ସନ୍ଧା । ଅର୍ଥାତ୍ ସମ୍ୟକ୍ ବା ବିଶେଷ ଭାବରେ ଚିନ୍ତା କରି ଯେଉଁ ଭାଷାର (ପ୍ରଚ୍ଛନ୍ନ) ଅର୍ଥ ସ୍ଥିର କରିବାକୁ ହୁଏ, ତାହାହିଁ ସନ୍ଧା ଭାଷା । ତେଣୁ ସନ୍ଧାଭାଷା କୌଣସି ଅଞ୍ଚଳର ଭାଷା ନୁହେଁ । ଏହା ଏକ ସାଙ୍କେତିକ ଭାଷା, ଯାହା କିଛି ସ୍ପଷ୍ଟ, କିଛି ଅସ୍ପଷ୍ଟ, କିଛି ବୋଧ, କିଛି ଅବୋଧ । ଏହା ବାହ୍ୟ ଓ ଗୁହ୍ୟ - ଏହିପରି ଦ୍ୱୈତ - ଅର୍ଥ ସମ୍ୱଳିତ ରଚନାରେ ପରିଦୃଷ୍ଟ ହୁଏ । ବାହ୍ୟ ଅର୍ଥ ସରଳ ଓ ଆକ୍ଷରିକ; ଯାହା ଯେକୌଣସି ବ୍ୟକ୍ତି ବୁଝିପାରେ, ମାତ୍ର ଏହାର ଗୁହ୍ୟ ଅର୍ଥ ଅଭିସନ୍ଧି ମୂଳକ ବା ସନ୍ଧିଯୁକ୍ତ ଏବଂ ଏହା ବୁଝିବା ପାଇଁ ଗୁରୁ ବା ସଦ୍‌ଗୁରୁ ଏକାନ୍ତ ଆବଶ୍ୟକ । ଏହା ବିଭିନ୍ନ ଅଞ୍ଚଳର ପରବର୍ତ୍ତୀକାଳୀନ ସନ୍ଥସାହିତ୍ୟ ଓ ରହସ୍ୟବାଦୀ ସାହିତ୍ୟରେ ଯଥେଷ୍ଟ ପ୍ରଭାବ ବିସ୍ତାର କରିଛି । ଆମ ଦେଶରେ ସନ୍ଧାଭାଷା ପ୍ରୟୋଗର ପରମ୍ପରା ନୂତନ ନୁହେଁ । ବୈଦିକ ସାହିତ୍ୟ, ବୌଦ୍ଧ ସାହିତ୍ୟ, ଚର୍ଯ୍ୟା ସାହିତ୍ୟରେ ସନ୍ଧ୍ୟାଭାଷା ପ୍ରଯୁକ୍ତ ଥିଲା ।

**ସନ୍ଥ** – ସତ୍ୟ, ଶାନ୍ତି, ଦୟା, କ୍ଷମା ଓ ଧର୍ମ ହେଉଛି ସନ୍ଥର ଲକ୍ଷଣ । ସାଧୁ କୋଟିଏରେ ବୈଷ୍ଣବ ଜଣେ ଏବଂ ବୈଷ୍ଣବ କୋଟିଏରେ ସନ୍ଥ ଗୋଟିଏ । ଏଣୁ ସନ୍ଥମାନଙ୍କର କଳିଯୁଗରେ ଆବିର୍ଭାବ  ଏକପ୍ରକାର ଅସମ୍ଭବ । ଗୁରୁ ଓ ବୈଷ୍ଣବ ହେଉଛନ୍ତି ଭଗବାନଙ୍କ ସମଆସନରେ ଅର୍ପିତ । ଯେଉଁମାନେ ସନ୍ଥ ପଦବାଚ୍ୟ ।

**ସନ୍ଧି** – ଏହା ବ୍ୟାକରଣ ନିୟମ । ପରସ୍ପର ସନ୍ନିହିତ ଦୁଇଟି ବର୍ଣ୍ଣର ମିଳନ ଦ୍ୱାରା ଗୋଟିକର ବା ଉଭୟର କିଛି ପରିବର୍ତ୍ତନ ହେଲେ ସେହି ମିଳନକୁ ସନ୍ଧି ବୋଲାଯାଏ । ସନ୍ଧି ତିନିପ୍ରକାର ଯଥା - ସ୍ୱର ସନ୍ଧି, ବ୍ୟଞ୍ଜନ ସନ୍ଧି, ବିସର୍ଗ ସନ୍ଧି ।

**ସରହପା** – ସିଦ୍ଧାଚାର୍ଯ୍ୟ ସରହପା ଆଦି ସିଦ୍ଧ ଭାବରେ ଗୃହୀତ ହୋଇଥାନ୍ତି । ତିବ୍ବତୀୟ ପଣ୍ଡିତଙ୍କ ଗ୍ରନ୍ଥାନୁସାରେ ସେ ଉଡ୍‌ଡ୍ରୀୟାନ ବା ଓଡ଼ିଶାର ଅଧିବାସୀ ଥିଲେ । ତାଙ୍କ ପିତା ଥିଲେ ଜଣେ ବ୍ରାହ୍ମଣ ଓ ମାତା ଥିଲେ ଜଣେ ଡାକିଣୀ । ସେ ସେତେବେଳେ  ରାହୁଲଭଦ୍ର, ରାହୁଲଶୁଚି, ସରୋଜବଜ୍ର ବା ପଦ୍ମବଜ୍ର ନାମରେ ପରିଚିତ ଥିଲେ । ସେ ବବୌଦ୍ଧଶାସ୍ତ୍ର ଓ ବ୍ରାହ୍ମଣ୍ୟ ଶାସ୍ତ୍ର ଉଭୟରେ ପାଣ୍ଡିତ୍ୟ ଅର୍ଜନ କରିଥିଲେ । ସହରପା କିଛିଦିନ ପାଇଁ ନାଳନ୍ଦାରେ ଶିକ୍ଷାଦାନ କରିଥିଲେ । ସେ ମହାରାଷ୍ଟ୍ରକୁ ଯାଇ ସେଠାରେ ଜଣେ ଶରନିର୍ମାତାଙ୍କ କନ୍ୟାର ସାହଚର୍ଯ୍ୟରେ ସିଦ୍ଧିପ୍ରାପ୍ତ ହୋଇଥିଲେ । ସର୍ବଦା ଶରହସ୍ତ ହୋଇ ଭ୍ରମଣ କରୁଥିବାରୁ, ସରହପା ନାମରେ ପରିଚିତ ଥିଲେ ବୋଲି କେହି କେହି ଅନୁମାନ କରନ୍ତି । ସେ ସଂସ୍କୃତରେ ଜଣେ ବିଶିଷ୍ଟ ପଦକର୍ତ୍ତା ଥିଲେ ଏବଂ ତାଙ୍କର ଅନ୍ୟୁନ୍ୟ ୨୫ଟି ତାନ୍ତ୍ରିକ ଗ୍ରନ୍ଥ ତିବ୍ବତୀ ଭାଷାରେ ଅନୂଦିତ ହୋଇ ତାଙ୍ଗରରେ ସ୍ଥାନିତ । 'ଚର୍ଯ୍ୟାଗୀତି କୋଷ'ରେ ସଂକଳିତ ୨୨,୩୨, ୩୮ ଓ ୩୯ ସଂଖ୍ୟକ ଚର୍ଯ୍ୟାଗୀତି ଗୁଡ଼ିକ ତାଙ୍କ ଦ୍ୱାରା ରଚିତ ।

**ସପ୍ତପଞ୍ଚାତ୍ମିକ** – ଓଡ଼ିଶାର ବୈଷ୍ଣବ ସନ୍ଥସାଧକଗଣଙ୍କ ଧର୍ମ ଓ ଦର୍ଶନର ସାରତତ୍ତ୍ୱ ହେଉଛି ସପ୍ତପଞ୍ଚାତ୍ମିକ । ଏହାକୁ ଓଡ଼ିଶୀ ବୈଷ୍ଣବ ଧର୍ମର ଫର୍ମୁଲା ବା ଟୀକା କୁହାଯାଇପାରେ । ଏଏଥିରେ ୩୫ ଗୋଟି ଧର୍ମତତ୍ତ୍ୱର ପ୍ରସଂଗ କୁହାଯାଇଛି । କେବଳ ପାଣ୍ଡବ, କଟକ, ରତ୍ନ ଓ ବଟ ପ୍ରଭୃତିର ତତ୍ତ୍ୱ ପିଣ୍ଡବ୍ରହ୍ମାଣ୍ଡ ତତ୍ତ୍ୱ ପ୍ରସଙ୍ଗରେ ବର୍ଣ୍ଣିତ ବୋଲି ସନ୍ଥ ସଂପ୍ରଦାୟର ମତ । ବାକି ସମୀର, ମନ, ତତ୍ତ୍ୱ, ବୀଜ, ସ୍ୱର, ଆତ୍ମା ପ୍ରଭୃତି ଓଡ଼ିଶୀ ବୈଷ୍ଣବ ଧର୍ମର ଧର୍ମତତ୍ତ୍ୱ ।

**ସବୁଜ** – ଯୁବ ସୁଲଭ ବୈପ୍ଲବିକ ସୃଜନଶୀଳ ଦୃଷ୍ଟିଭଙ୍ଗୀ । ଓଡ଼ିଆ ସାହିତ୍ୟରେ ୧୯୨୦-୩୦ ସମୟରେ ନନ୍‌ସେନ୍‌ସ କ୍ଲବ ଓ ଅବକାଶ ପତ୍ରିକା ସହିତ ଜଡ଼ିତ ଅନ୍ନଦା ଶଙ୍କର ରାୟ, ବୈକୁଣ୍ଠ ନାଥ ପଟ୍ଟନାୟକ, କାଳିନ୍ଦୀ ଚରଣ ପାଣିଗ୍ରାହୀ, ଶରତ ଚନ୍ଦ୍ର ଚାଟାର୍ଜୀ ଓ

ହରିହର ମହାପାତ୍ରଙ୍କୁ ସବୁଜ ଗୋଷ୍ଠୀ କୁହାଯାଏ । ଓଡ଼ିଆ ସାହିତ୍ୟରେ ସବୁଜ ଦଳ ଅତୀତର ଅନ୍ୟାୟ, ଅବିଚାର ଓ ରକ୍ଷଣଶୀଳତା ବିରୁଦ୍ଧରେ ବିଦ୍ରୋହ କରିଥିଲେ ।

**ସର୍ବନାମ** – ଯେଉଁ ପଦ ଅନ୍ୟ ପଦର ପରିବର୍ତ୍ତନରେ ବ୍ୟବହୃତ ହୁଏ, ତାହାକୁ ସର୍ବନାମ ବୋଲାଯାଏ । ସର୍ମନାମ ପାଞ୍ଚଭାଗରେ ବିଭକ୍ତ । (୧) ବ୍ୟକ୍ତିବାଚକ ସର୍ବନାମ (୨) ପ୍ରଶ୍ନବାଚକ (୩) ନିର୍ଦ୍ଦେଶାତ୍ମକ ସର୍ବନାମ (୪) ସମ୍ବନ୍ଧବାଚକ ସର୍ବନାମ (୫) ସମୁଚ୍ଚୟୀ ସର୍ବନାମ ।

**ସମସ୍ୟମାନ ପଦ** – ବ୍ୟାକରଣ ନିୟମ ଅନ୍ତର୍ଗତ । ଯେଉଁ ପଦମାନଙ୍କୁ ସମାସ ଦ୍ୱାରା ଏକ ପଦରେ ପରିଣତ କରାଯାଏ ସେମାନଙ୍କ ମଧ୍ୟରୁ ପ୍ରତ୍ୟେକକୁ ସମସ୍ୟମାନ ପଦ ବୋଲାଯାଏ ।

**ସମସ୍ୟାମୂଳକ ନାଟକ** – ବିଜ୍ଞାନ ଓ ସମାଜ ବିଜ୍ଞାନର ନୂଆ ନୂଆ ତଥ୍ୟର ଆବିଷ୍କାର ଯୋଗୁଁ ଊନବିଂଶ ଶତକରୁ ସାହିତ୍ୟ ସମାଜଭିତ୍ତିକ ହେଲା । ଘର ଓ ବାହାରର ସମସ୍ୟା ଓ ଚରିତ୍ରଗୁଡ଼ିକ ସାହିତ୍ୟରେ ପ୍ରମୁଖ ସ୍ଥାନ ନେଲେ । ସମସ୍ୟାମୂଳକ ନାଟକରେ କଳାତ୍ମକ ସୌନ୍ଦର୍ଯ୍ୟ ଅନୁଭୂତ ହୁଏନାହିଁ ।

**ସମସ୍ତ ପଦ** – ଏହି ପଦମାନଙ୍କର ମିଳନରେ ଯେଉଁପଦ ଗଢ଼ାହୁଏ, ତାହାର ନାମ ସମସ୍ତ ପଦ ।

**ସମ୍ବନ୍ଧବାଚକ ସର୍ବନାମ** – ବ୍ୟାକରଣ ନିୟମ ଅନ୍ତର୍ଭୁକ୍ତ । କେତେକ ସର୍ବନାମ ବାକ୍ୟ ମଧ୍ୟରେ ପରସ୍ପରକୁ ଅପେକ୍ଷା କରନ୍ତି । ଗୋଟିଏ ବ୍ୟତୀତ ଅନ୍ୟଟି ବାକ୍ୟର ଅର୍ଥ ବୁଝାଇବାକୁ ଅସମର୍ଥ ହୁଏ । ଏ ପ୍ରକାର ସର୍ବନାମକୁ ସମ୍ବନ୍ଧବାଚକ ସର୍ବନାମ ବୋଲାଯାଏ ।

**ସମାଲୋଚନା** – ସାହିତ୍ୟ କୃତି ମଧ୍ୟରେ ସାହିତ୍ୟ ବସ୍ତୁଟିର ଆକଳନ, ପରଖାପରଖି କୁ ସମାଲୋଚନା କୁହାଯାଏ । ସାହିତ୍ୟର ଉତ୍କର୍ଷ ଓ ଅପକର୍ଷ ବିଚାରକୁ ନେଇ ସମାଲୋଚନା କରାଯାଏ । ସାହିତ୍ୟ କୃତିର ସତ୍ୟ, ତଥ୍ୟ, ରୂପ, ଆତ୍ମାକୁ ନେଇ ସମାଲୋଚନା ସମୀକ୍ଷା କରେ । ଯେଉଁ ଆଲୋଚନା ପ୍ରେରଣାଦାୟକ ନହୁଏ, କେବଳ ମାତ୍ର ଆଘାତ ଦିଏ, ପାଣ୍ଡିତ୍ୟ ପ୍ରଦର୍ଶନ ପାଇଁ ଉଦ୍ଦିଷ୍ଟ ତାହା ସୁସ୍ଥ ଆଲୋଚନା ହୋଇପାରେ ନାହିଁ ।

**ସମାସ** – ବ୍ୟାକରଣ ନିୟମ ଅନ୍ତର୍ଭୁକ୍ତ । ପରସ୍ପର ଅନ୍ୱୟର ଉପଯୋଗୀ ଦୁଇ ବା ତତୋଧିକ ପଦକୁ ଏକ ପଦରେ ପରିଣତ କରିବାର ନାମ ସମାସ ।

**ସମୁଚ୍ଚୟୀ ସର୍ବନାମ** – କୌଣସି କୌଣସି ସର୍ବନାମ ବିଶେଷ୍ୟ ପଦ ପରିବର୍ତ୍ତନରେ ବ୍ୟବହୃତ ହେବା ସଙ୍ଗେ ସଙ୍ଗେ ଦୁଇଟି ବାକ୍ୟକୁ ଯୋଗ କରିଥାଆନ୍ତି । ଏମାନେ ଏକାଧାରରେ ସର୍ବନାମ ଓ ଅବ୍ୟୟ କାର୍ଯ୍ୟ କରନ୍ତି । ଏମାନଙ୍କୁ ସମୁଚ୍ଚୟୀ ସର୍ବନାମ ବୋଲାଯାଏ ।

**ସମୋଚ୍ଚାରିତ ଶବ୍ଦ** – ବ୍ୟାକରଣ ନିୟମ । ଅର୍ଥ ଓ ପ୍ରୟୋଗ ଭିନ୍ନ ଥାଇ ସମାନ ଉଚ୍ଚାରିତ ଶବ୍ଦକୁ ସମୋଚ୍ଚାରିତ ଶବ୍ଦ କୁହାଯାଏ ।

**ସରଳ କଳାବୃତ୍ତ** – ଓଡ଼ିଆ ମାତ୍ରାବୃତ୍ତ ସଂସ୍କୃତ-ପ୍ରାକୃତରୁ ଆନୀତ ସଂସ୍କୃତର ହ୍ରସ୍ୱ-ଦୀର୍ଘସ୍ୱର ଉଚ୍ଚାରଣ ପଦ୍ଧତି ଓଡ଼ିଆରେ ନାହିଁ । ତେଣୁ ସଂସ୍କୃତ ମାତ୍ରାବୃତ୍ତ ଓଡ଼ିଆରେ ଅନୁସୃତ ହେବା ସମ୍ଭବ ହୋଇନାହିଁ । ଫଳତଃ ସରଳ କଳାବୃତ୍ତ ଆରମ୍ଭ ହୋଇଛି । କଳାବୃତ୍ତ ପ୍ରତିଷ୍ଠା କରିବା ଦିଗରେ ସବୁଜ କବିମାନଙ୍କ ଉଦ୍ୟମ ପ୍ରଶଂସନୀୟ । ରୂପ ବୈଚିତ୍ର୍ୟ ଦୃଷ୍ଟିରୁ କବିମାନଙ୍କ ପାଇଁ କଳାବୃତ୍ତ ହିଁ ଅଧିକ ଉପଯୋଗୀ ।

**ସରଳ ବାକ୍ୟ** – ବ୍ୟାକରଣ ନିୟମ । ଯେଉଁ ବାକ୍ୟରେ ଗୋଟିଏ ସମାପିକା କ୍ରିୟା ଥାଏ, ତାହାକୁ ସରଳ ବାକ୍ୟ କୁହାଯାଏ ।

**ସହଜିୟା** – ବୌଦ୍ଧଧର୍ମ ସଂପ୍ରଦାୟ । ଇନ୍ଦ୍ରଭୂତିଙ୍କ ପରେ ତାଙ୍କର ଭଗ୍ନୀ ଲକ୍ଷ୍ମୀ ବଜ୍ରଯାନରୁ ସହଜଯାନ ନାମକ ଅନ୍ୟ ଏକ ସ୍ୱତନ୍ତ୍ର ମାର୍ଗ ଆବିଷ୍କାର କଲେ । ତାଙ୍କ ମତରେ ଦେହ ହିଁ ଦେବତାଙ୍କ ଆଶ୍ରୟ ସ୍ଥଳ । ତେଣୁ ଦେହ ପୂଜା ବାଞ୍ଛନୀୟ । ପ୍ରବୃତ୍ତିର ଦର୍ଶନରେ ନୁହେଁ ସମ୍ଭୋଗରେ ପ୍ରକୃତ ସିଦ୍ଧି ।

**ସଂଗୀତ** – ଭାରତୀୟ ସଂଗୀତ ବିଶାରଦଙ୍କ ମତରେ "ଶ୍ରୋତୃଗନୋ ଯସ୍ମାତ୍ ରଞ୍ଜୟତି ତତଃ ସ୍ୱରା ଇତି ।" ତାହା ପୁଣି "ଷଡ଼ଜର୍ଷଭୌ ଚ ଗାନ୍ଧାରୋ ମଧ୍ୟମଃ ପଞ୍ଚମସ୍ତଥା । ଧୈବତଶ୍ଚ ନିଷାଦଶ୍ଚ ସ୍ୱର ସପ୍ତ ପ୍ରକୀର୍ତ୍ତିତାଃ ।" ଭରତ ମୁନି ସଂଗୀତର ସଂଜ୍ଞା ନିର୍ଣ୍ଣୟ କରିଥିଲେ ଯେ ଗୀତ, ବାଦ୍ୟ, ନୃତ୍ୟର ସମନ୍ୱିତ ରୂପ ହିଁ ସଂଗୀତ । ଓଡ଼ିଆ ସଂଗୀତ କହିଲେ ଚଉତିଶା, ପଦାବାଳୀ, ଚଉପଦୀ, ଭଜନ, ଜଣାଣ, ଚଂପୂ ଇତ୍ୟାଦିକୁ ବୁଝାଏ ।

**ସମାସୋକ୍ତି** – ସମାନ କାର୍ଯ୍ୟ, ଲିଙ୍ଗ ଓ ବିଶେଷଣ ଦ୍ୱାରା ବର୍ଣ୍ଣନୀୟ ପଦାର୍ଥରେ ଅପ୍ରାସଙ୍ଗିକ ଅନ୍ୟ ଗୋଟିଏ ପଦାର୍ଥର ବ୍ୟବହାର ଆରୋପିତ ହେଲେ ସମାସୋକ୍ତି ଅଳଙ୍କାର ହୁଏ ।

"ତରୁ ଆଲିଙ୍ଗିତା    ବାତ ଆନ୍ଦୋଳିତା
ଲଳିତ ଲବଙ୍ଗଲତା
ଦ୍ରୁମଗଣ୍ଡି ଚୁମ୍ବି    ମୁହଁ ହଲାଇଣ
କହେ କି ପ୍ରଣୟ କଥା ।

**ସମ୍ଭୋଗ ଶୃଙ୍ଗାର** – ପରସ୍ପର ଅନୁରକ୍ତ ନାୟକ ଓ ନାୟିକାର ମିଳନକୁ ସଂଯୋଗ ଶୃଙ୍ଗାର ଅଥବା ସମ୍ଭୋଗ ଶୃଙ୍ଗାର କୁହାଯାଏ । ଉଦାହରଣ -

କାମେ ଉନ୍ମତ୍ତ କାନ୍ତ ଦୁକୂଳ ହରେ
ସୁନ୍ଦରୀ ଦିଗମ୍ବରୀ ଥରେ ଲାଜରେ ।

**ସମାଳଙ୍କାର** – ଉପଯୁକ୍ତ କାର୍ଯ୍ୟ, ଗୁଣ ଓ ଧର୍ମ ବିଶିଷ୍ଟ ଦୁଇ ବସ୍ତୁର ଆଦର୍ଶ ମିଳନ ବର୍ଣ୍ଣନାକୁ ସମାଳଙ୍କାର କୁହାଯାଏ ।

ଜୟ ଅରିନ୍ଦମ ଶ୍ରୀ ପୁରୁଷୋତ୍ତମ
ବିଶ୍ୱେ ତୁମ୍ଭେ ବିଶ୍ୱରକ୍ଷା ଦୃଢକ୍ଷମ । (ଚିଲିକା)

**ସମୁଚୟ ଅଳଙ୍କାର** – ଯେ କୌଣସି ବର୍ଣ୍ଣନାରେ କ୍ରମହୀନ ଭାବରେ ଅନେକ କ୍ରିୟାର ସମାବେଶ ହେଲେ ଅଥବା କୌଣସି କାର୍ଯ୍ୟପ୍ରତି ଗୋଟିଏ କାରଣ ଯଥେଷ୍ଟ ହେଲେ ମଧ୍ଯ ଯଦି ଏକାଧିକ କାରଣ ଉଲ୍ଲେଖ ହୋଇଥାଏ; ତେବେ ସମୁଚ୍ଚୟ ଅଳଙ୍କାର ହୁଏ ।

**ସମ୍ଭାବନା ଅଳଙ୍କାର** – ବିବକ୍ଷିତ ବିଷୟର ଉତ୍କର୍ଷ ପ୍ରତିପାଦନ ପାଇଁ ଯେଉଁଠି ଗୋଟିଏ ଅଅସମ୍ଭବ ବସ୍ତୁ ସହିତ ସମ୍ଭାବିତ ସାଦୃଶ୍ୟ କଳ୍ପନା କରାଯାଏ, ସେଠାରେ ସମ୍ଭାବନା ଅଳଙ୍କାର ହୁଏ ।

ଦିଶୁଥିଲା ଶିଶୁ ହରିଣାକ୍ଷୀ ରତ୍ନ
ଭୂଷଣେ କିବା ମଞ୍ଜୁଳ
ତୁଳ ତା'ରି ସିନା ହୁଅନ୍ତା ଜଡ଼ିତ
ଲତାରେ ଫୁଟିଲେ ଫୁଲ । (ଯଯାତି)

**ସହୋକ୍ତି ଅଳଙ୍କାର** – ଯେ କୌଣସି ଅତିଶୟୋକ୍ତିପୂର୍ଣ୍ଣ ବର୍ଣ୍ଣନାରେ ଶବ୍ଦର ବିଚିତ୍ର ପ୍ରୟୋଗ ଯୋଗୁଁ କ୍ରିୟାଦିର ସାଦୃଶ୍ୟ ଅଥବା ସମକାଳୀନ ପ୍ରତିପନ୍ନ ହେଲେ ସହୋକ୍ତି ଅଳଙ୍କାର ହୁଏ ।

ଧନୁର ଗୁଣ ଯହୁଁ ରାମ ଆମଂଚିଲେ
ସୀତୟାର ଦୃଷ୍ଟି ତହିଁ ସଙ୍ଗେ ନେଲେ । (ଦାଣ୍ଡିରାମାୟଣ)

**ସ୍ମରଣ ଅଳଙ୍କାର** – ଗୋଟିଏ ବସ୍ତୁ ଦର୍ଶନରେ ତତ୍‌ସଦୃଶ ପୂର୍ବରୁ ଅନୁଭୂତ ଆଉ ଗୋଟିଏ ବସ୍ତୁର ସ୍ମରଣ କରାଗଲେ ସ୍ମରଣାଳଙ୍କାର ହୁଏ ।

ଦେଖି ବରାଙ୍ଗୀର ନୀଳାମ୍ବର ଶୋଭା
ସୁଚାରୁ ଅଙ୍ଗ ଲତିକା
ସରିଲେ ରାଣୀଏ ପରିଚିତ ନୀଳ
ସିନ୍ଧୁ ହିଲ୍ଲୋଳ ଚନ୍ଦ୍ରିକା । (ପାର୍ବତୀ)

**ସର୍ବଯମକ** – ସାର୍ଥକ କାବ୍ୟ ମଧ୍ୟରେ ସମାନୁରୂପ ବିଶିଷ୍ଟ ଅଥଚ ଭିନ୍ନାର୍ଥବୋଧକ ଶବ୍ଦମାନଙ୍କର ଏକାଧିକାର ବ୍ୟବହାରକୁ ଯମକାଳଂକାର କୁହାଯାଏ । ସର୍ବଯମକରେ ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ସମରୂପ ବିଶିଷ୍ଟ ଶବ୍ଦ ଗୁଡ଼ିକ ଆବୃତ୍ତି ହୋଇଥାଏ ।

ଅହିମକର ତାପ ନାଶେ ଶୋଭା ସାରସ ଚକ୍ରେ
ଅହିମକର ତାପ ନାଶେ ଶୋଭା ସାରସ ଚକ୍ରେ । (ଲାବଣ୍ୟବତୀ)

**ସଂସ୍ମରଣ** – ଉପନ୍ୟାସ ରଚନା ଶୈଳୀରେ ଲିଖିତ ଆତ୍ମଜୀବନୀ । ଏହାକୁ ଇଂରାଜୀରେ memoir ଓ ଓଡ଼ିଆରେ ସ୍ମୃତିକଥା କୁହାଯାଇପାରେ । ସଂସ୍ମରଣରେ ଲେଖକର ଆତ୍ମଚିନ୍ତା ଅପେକ୍ଷା ବହିର୍ଗତ ଘଟଣା ବର୍ଣ୍ଣନାର ପ୍ରାଧାନ୍ୟ ରହେ ।

**ସଂସୃଷ୍ଟି ଅଳଙ୍କାର** – ଯେଉଁଠାରେ ଏକାଧିକ ଅଳଙ୍କାର ମିଳିମିଶି ଥିଲେ ମଧ୍ୟ ତିଳ ତଣ୍ଡୁଳ (ରାଶି ଓ ଚାଉଳ) ପରି ନିରପେକ୍ଷ ଭାବରେ ନିଜ ନିଜର ସ୍ୱତନ୍ତ୍ର ସତ୍ତା ରକ୍ଷା କରିବାକୁ ସମର୍ଥ ହୋଇଥାଆନ୍ତି, ସେଠାରେ ସଂସୃଷ୍ଟି ଅଳଙ୍କାର ହୁଏ ।

ସୁମୁଖୀ ଚନ୍ଦ୍ରମା ମୁଖ ଦେଖି ମୁଗ୍ଧ
ମାନସ ଏସନେ ପାଞ୍ଚେ
ବିଶ୍ୱକାନ୍ତି ସାର ତୋଳି ଅବା ମାର
ଢ଼ାଳିଅଛି ପ୍ରେମ ଛାଞ୍ଚେ ।

**ସଂକର ଅଳଙ୍କାର** – ଯେଉଁ ରଚନାରେ ଏକାଧିକ ଅଳଙ୍କାର ପରସ୍ପର ସାପେକ୍ଷ ଭାବରେ ନୀରକ୍ଷୀର ପରି ମିଳିତ ହୋଇ ରହିଥାନ୍ତି, ସେଠରେ ସଂଚାରୀ ଅଳଂକାର ହୁଏ ।

ଶୋଭା ସେ ଲଭିଯେ ଅପସ୍ୱରୀ ଦିବ୍ୟ ଶୋଭାକୁ ଦଳି
ଫୁଟିଲା ଲାବଣ୍ୟ-ସରସେ ନବ କମଳ କଳି । (ଚନ୍ଦ୍ରଭାଗା)

**ସଂବୃତ୍ତି ବକ୍ରତା** – କୌଣସି ଗୋଟିଏ କହିବା କଥାକୁ ଘୋଡ଼ାଇ ପକାଇବା ପାଇଁ ଚେଷ୍ଟାକରି ଯେଉଁ ଶବ୍ଦ ପ୍ରୟୋଗ କରାଯାଏ ଏବଂ ଯେଉଁଠାରେ ସେହି ଶବ୍ଦ ବିବକ୍ଷିତ ଅର୍ଥଟିକୁ ଆହୁରି ଭଲଭାବରେ ଅଭିବ୍ୟଞ୍ଜନ କରେ ସେହିଠାରେ ସଂବୃତ୍ତି ବକ୍ରତା ହୁଏ ।

**ସଂଘାତ/ସଂଘର୍ଷ** – ନାଟକ ବିଷୟବସ୍ତୁର ଏକ ପରିଣତି । ଭଲ ସହିତ ମନ୍ଦର ବିରୋଧ । ଏହି ବିରୋଧୀ ତତ୍ତ୍ୱର ଚିତ୍ରଣରୁ ସାହିତ୍ୟର ଉତ୍କର୍ଷ, ଅପକର୍ଷ ପ୍ରତିପାଦିତ ହୁଏ ।

**ସଂବାଦ** – କଥୋପକଥନ ମାଧ୍ୟମରେ ସାହିତ୍ୟ ରଚନାକୁ ସଂବାଦ କୁହାଯାଏ । ଗୁରୁଶିଷ୍ୟ ପରଂପରାରେ ସାହିତ୍ୟର ଆଦ୍ୟକଥନ ସଂବାଦ ସାହିତ୍ୟ । ଦର୍ଶନ, ନୀତିଶାସ୍ତ୍ର, ବର୍ଣ୍ଣନା, ମାଳିକା ବା ଭବିଷ୍ୟତ କଥା ପ୍ରଭୃତି ସଂବାଦ ସାହିତ୍ୟର କୃତି ।

**ସଂକ୍ଷେପଣ** – ବ୍ୟାକରଣ ନିୟମ । ଭାବର ପରିବର୍ତ୍ତନ ନ କରି ବାକ୍ୟ ବା ଏକାଧିକ ଶବ୍ଦକୁ ସଂକ୍ଷିପ୍ତ କରି ପ୍ରୟୋଗ କରିବାକୁ ସଂକ୍ଷେପଣ ବା ଏକପଦୀକରଣ କହନ୍ତି ।

**ସଂଳାପ** *(Dialoge)* – ନାଟକର ଭାଷାକୁ ସଂଳାପ କୁହାଯାଏ । ଏହା ନାଟକର ଅନ୍ୟତମ ବଶିଷ୍ଟ ଅଂଗ । ପାତ୍ରୋଚିତ ଭାଷା ହେଉଛି ସଂଳାପର ବିଶିଷ୍ଟ ଗୁଣ । ଏହି ସଂଳାପ ଦ୍ୱାରା ହିଁ ନାଟକର କାହାଣୀ ରଙ୍ଗମଞ୍ଚରେ ଚରିତ୍ରମାନଙ୍କ ଅଭିନୟ ମାଧ୍ୟମରେ ମୂର୍ତ୍ତିମନ୍ତ ହୁଏ ।

ନାଟ୍ୟଶାସ୍ତ୍ରର ପ୍ରଣେତାଙ୍କ ମତରେ ନାଟକର ସଂଳାପ ଯୋଜନା ଏପରି କରାଯିବା ଉଚିତ, ଯାହାର ଅର୍ଥ ବୁଝିବାରେ ଦର୍ଶକମାନଙ୍କର ଆଦୌ ଅସୁବିଧା ହେବନାହିଁ । ସଂଳପର ଦ୍ୱିତୀୟ ଦିଗଟି ହେଉଛି ତାହା ନୀରସ ଭାବରେ ପରିକଳ୍ପିତ ହେବା ଉଚିତ ନୁହେଁ । ସେଥିରେ ଭାଷା, ଭାବ ଓ ଉଚ୍ଚାରଣଗତ ସ୍ପଷ୍ଟତା ସଙ୍ଗେ ସଙ୍ଗେ ସରସତାର ଯୋଜନା ଆବଶ୍ୟକ । ସଂଳାପର ତୃତୀୟଟି ହେଲା ତାହାର ଗଠନ କୌଶଳ ଯାହା ଫଳରେ ବୁଦ୍ଧିମାନ୍ ଅଭିନେତାମାନଙ୍କ ପାଇଁ ସଫଳ ଅଭିନୟର କାରଣ ହୋଇପାରିବ ।

**ସଂହିତା** – ପ୍ରାଚୀନ ସାହିତ୍ୟର ଅନ୍ତର୍ଗତ ଶାସ୍ତ୍ରରୂପ । ସଂହିତା ଶାସ୍ତ୍ର ଗୁଡ଼ିକ ଉଚ୍ଚ ଦାର୍ଶନିକ ଚିନ୍ତାରେ ପରିପୂର୍ଣ୍ଣ । ଓଡ଼ିଶୀ ବୈଷ୍ଣବ ଧର୍ମତତ୍ତ୍ୱର ପ୍ରଚାର ଏବଂ ପ୍ରସାର ଏହି ସବୁ ଗୀତା ସଂହିତା ଶାସ୍ତ୍ରରେ ରହିଛି । କୌଣସି ଗୋଟିଏ ବା ଏକାଧିକ ଧର୍ମତତ୍ତ୍ୱର ବ୍ୟାଖ୍ୟାନ ସଂହିତା ଶାସ୍ତ୍ରରେ କରାଯାଇଥାଏ । ଓଡ଼ିଆ ସାହିତ୍ୟରେ ଅଧିକାଂଶ ସଂହିତା ଗ୍ରନ୍ଥ ପଞ୍ଚସଖା ଯୁଗରେ ଲେଖାଯାଇଛି । ଯଥା - ଅଣାକାର ସଂହିତା, ଶୂନ୍ୟସଂହିତା ଇତ୍ୟାଦି । ଅଧିକାଂଶ ସହିତା ଗ୍ରନ୍ଥ ମହାପୁରୁଷ ଅଚ୍ୟୁତାନନ୍ଦ ରଚନା କରିଯାଇଛନ୍ତି । ପରବର୍ତ୍ତୀ ସମୟରେ ନିର୍ଗୁଣ ସଂହିତା ଭଳି କେତେକ ସଂହିତା ମହିମାଧର୍ମୀ ସନ୍ନ୍ୟାସୀମାନେ ରଚନା କରିଛନ୍ତି ।

**ସ୍ୱଭାବ କବି** – ରାଧାନାଥ ଯୁଗର ଅନ୍ୟତମ ବିଶିଷ୍ଟ କବି ଗଙ୍ଗାଧର ମେହେରଙ୍କୁ ସ୍ୱଭାବକବି କୁହାଯାଏ । ୧୮୬୨ ମସିହାରେ ଶ୍ରାବଣ ପୂର୍ଣ୍ଣିମା ଦିନ ସମ୍ବଲପୁର ଜିଲ୍ଲାର ବରପାଲି ଗ୍ରାମରେ ତାଙ୍କର ଜନ୍ମ ହୋଇଥିଲା । ତାଙ୍କର ପିତାଙ୍କ ନାମ ଥିଲା ଚୈତନ୍ୟ ମେହେର ଓ ମାତାଙ୍କ ନାମ ଥିଲା ସେବତୀ । ଗଙ୍ଗାଧର ପ୍ରଥମେ ଲୁଗା ବୁଣୁଥିଲେ ପରେ ଅମିନ, ମୋହରରିର ଓ ଅଡ଼ିଟର ଚାକିରୀ କରିଥିଲେ । ଗଙ୍ଗାଧରଙ୍କ ପ୍ରଥମ ପୁସ୍ତକର ନାମ 'ରସରତ୍ନାକର' । ତାଙ୍କ ରଚିତ କାବ୍ୟ ମଧ୍ୟରେ ଅହଲ୍ୟାସ୍ତବ, ଇନ୍ଦୁମତୀ, ଉତ୍କଳଲକ୍ଷ୍ମୀପ୍ରତିମା, କୀଚକବଧ, କବିତାକଲ୍ଲୋଳ, ତପସ୍ୱିନୀ, ପ୍ରଣୟବଲ୍ଲରୀ, ଅର୍ଘ୍ୟଥାଳି, ଭାରତଭାବନା ଇତ୍ୟାଦି ପ୍ରଧାନ । ତାଙ୍କୁ ଉତ୍କଳର କାଳିଦାସ ବି କୁହାଯାଏ । ୧୯୨୪ ମସିହା ଚୈତ୍ର୍ୟ ଅମାବାସ୍ୟାରେ କବି ଗଙ୍ଗାଧର ମେହେରଙ୍କ ମୃତ୍ୟୁ ଘଟିଥିଲା ।

**ସ୍ୱଭାବ ବାଦ** – ବାସ୍ତବତାର ଉପସ୍ଥାପନ ହେଉଛି ସ୍ୱଭାବବାଦର ଲକ୍ଷ୍ୟ । କାରଣ ସ୍ୱଭାବବାଦ ବାସ୍ତବବାଦରୁ ଜନ୍ମ ଲାଭ କରିଛି । ଆଦର୍ଶର ଅନୁରକଣ ନୁହେଁ, ବାସ୍ତବତାର ରୂପାୟନ ହିଁ ଏହାର ଉଦ୍ଦେଶ୍ୟ । ପ୍ରଥା ପରଂପରାଗତ ପଦ୍ଧତିରେ ନୁହେଁ, ବରଂ ବିଜ୍ଞାନ ସମ୍ମତ ରୀତିରେ ଜଗତ ଓ ଜୀବନକୁ ସାହିତ୍ୟରେ ଉପସ୍ଥାପନ କରିବା ସ୍ୱଭାବବାଦର ଆଦର୍ଶ । ବୈଜ୍ଞାନିକ ବିବର୍ତ୍ତନ ବାଦ ଓ ଦାର୍ଶନିକ ପ୍ରକୃତିବାଦର ସମ୍ମିଶ୍ରଣ ହିଁ ସ୍ୱଭାବବାଦ । ଶ୍ଳୀଳ ହେଉ ବା ଅଶ୍ଳୀଳ ହେଉ, ନୀତି ହେଉ ବା ଅନୀତି ହେଉ ସ୍ୱଭାବବାଦୀ ଶିଳ୍ପୀ ଏ ସମସ୍ତଙ୍କର ପ୍ରକୃତ ସତ୍ୟକୁ ସ୍ୱାଭାବିକ ଭାବରେ ପ୍ରକାଶ କରେ । ଈଶ୍ୱରତ୍ୱ, ଆଦର୍ଶବାଦ ଓ କଳ୍ପନା ପ୍ରବଣତାକୁ ଏହା ଅସ୍ୱୀକାର କରେ । ସ୍ୱଭାବବାଦ ହେଉଛି ବସ୍ତୁଭିତ୍ତିକ ଉତ୍କଟ

ବାସ୍ତବବାଦ । ମାନବିକ ମର୍ଯ୍ୟାଦା, ପ୍ରଗତି ପ୍ରତି ଅନସ୍ଥାଭାବରୁ ହିଁ ସ୍ୱଭାବବାଦର ଜନ୍ମ । ଏମିଲି ଜୋଲଙ୍କ ଘନିଷ୍ଟ ବନ୍ଧୁ Paul Alexy ସ୍ୱଭାବବାଦର ବ୍ୟାଖ୍ୟା କରି କହିଥିଲେ, ସ୍ୱାଭବାଦ ହେଉଛି ଏକପ୍ରକାର ବିଶେଷ ରଚନା ନୀତି, ଜୀବନ ସଂପର୍କରେ ଏକ ଅଲଗାଧାରଣାକରି "way of thinking of seeing of reflecting, of studying of making experiments and need to analysis in order to know".

**ସଂଦିଗ୍ଧତା** – ପ୍ରାଚୀନ ସାହିତ୍ୟ ତତ୍ତ୍ୱରେ ପଦଦୋଷର ଅନ୍ତର୍ଗତ । କୌଣସି କବିତାରେ ପପ୍ରଯୁକ୍ତ ହୋଇଥିବା ଶବ୍ଦ ଅସ୍ପଷ୍ଟ ହେବା ଉଚିତ ନୁହେଁ । ପଠନ ମାତେ ପାଠକ ଲେଖକର ମନୋଗତ ଭାବକୁ ଯଥାର୍ଥ ଭାବରେ ବୁଝିପାରିବା କବିତାର ଶ୍ରେଷ୍ଠ ଧର୍ମ । ଏଣୁ ସେଥିରେ ବ୍ୟବହୃତ ହୋଇଥିବା ଯେ କୌଣସି ଶବ୍ଦର ଅର୍ଥ ଅବଗତିରେ ସନ୍ଦେହ ହେଲେ ସଂଦିଗ୍ଧତା ଦୋଷ ହୁଏ । ଏହା ପଦଗତ, ବାକ୍ୟଗତ, ଅର୍ଥଗତ ଦୋଷ ଭାବରେ ଗ୍ରହଣ କରାଯାଏ ।

''କର୍ମକ୍ଲାନ୍ତ ଜନେ କରନ୍ତି ସୁରାଳୟେ ଗମନ
ସେଠାରେ ପ୍ରବେଶି ସଭିଙ୍କ ହୁଏ ପ୍ରଫୁଲ୍ଲ ମନ ।''

**ସ୍ୱଭାବୋକ୍ତି ଅଳଙ୍କାର** – ଯେଉଁଠାରେ ପ୍ରକୃତି କିମ୍ବା କୌଣସି ପଦାର୍ଥର ଗୁଣଗତ, ଦ୍ରବ୍ୟଗତ, ଜାତିଗତ, ସ୍ୱାଭାବିକ କ୍ରିୟା ବା ରୂପ ଚମତ୍କାର ବର୍ଣ୍ଣନା ଦ୍ୱାରା ସୂଚିତ ହୁଏ, ସେଠାରେ ସ୍ୱଭାବୋକ୍ତି ଅଳଙ୍କାର ହୁଏ । ଉଦାହରଣ –

ସ୍ୱଭାବ ସୁଲଭ ଲମ୍ଫେ କୃଷ୍ଣସାର
ଗଗନେ ଅଧିକ ଯାଇ
ଥରେ ଥରେ ମାତ୍ର ଦେଖାଯାଏ ବନ
ଭୂମିରେ ପାଦ ପକାଇ ।

**ସଂଚାରୀ ଭାବ** – 'ଭାବ' ଦୁଇ ପ୍ରକାର, ସ୍ଥାୟୀ ଭାବ ଓ ସଂଚାରୀ ଭାବ । ଯେଉଁ ଭାବଗୁଡ଼ିକ ଆମ ମନ ମଧ୍ୟରେ ଅଳ୍ପକ୍ଷଣ ପାଇଁ ପ୍ରଭାବ ବିସ୍ତାର କରି କୁଆଡ଼େ ଉଭେଇ ଯାଆନ୍ତି, ସେହିପରି ଭାବମାନଙ୍କୁ ସଂଚାରୀ ଭାବ କୁହାଯାଏ । ସେମାନେ ସଦା ସଂଚାରଣଶୀଳ । ସ୍ଥାୟୀ ସେମାନଙ୍କର ଧର୍ମ ନୁହେଁ । ସଂଚାରୀ ଭାବମାନଙ୍କର ସର୍ବବାଦୀ ସମ୍ମତ ସଂଖ୍ୟା ୩୩ । ସେଗୁଡ଼ିକ ହେଲେ ନିର୍ବେଦ, ଆବେଗ, ଦୈନ୍ୟ, ଶ୍ରମ, ମଦ, ଜଡ଼ତା, ଔଗ୍ର୍ୟ, ମୋହ, ବିବୋଧ, ସ୍ୱପ୍ନ, ଅପସ୍ମାର, ଗର୍ବ, ମରଣ, ଅଳସତା, ଅମର୍ଷ, ନଦ୍ରା, ଅବହିତ୍ଥା, ଔତ୍ସୁକ୍ୟ, ଉନ୍ମାଦ, ଶଙ୍କା, ସ୍ମୃତି, ଚପଳତା, ବ୍ୟାଧି, ତ୍ରାସ, ଲଜ୍ଜା, ଉର୍ଷ, ଅସୂୟା, ବିଷାଦ, ଧୃତ, ଚପଳତା, ଗ୍ଲାନି, ଚିନ୍ତା ଓ ବୈତର୍କ ।

ସ୍ଥାୟୀଭାବର ପୂର୍ଣ୍ଣାଙ୍ଗ ଅଭିବ୍ୟକ୍ତି ପାଇଁ ସଂଚାରୀ ଭାବମାନଙ୍କର ଏକାନ୍ତ ଆବଶ୍ୟକ ।

**ସାର ଅଳଙ୍କାର** – ପୂର୍ବ ପୂର୍ବ ପଦାର୍ଥ ଅପେକ୍ଷା ଉତ୍ତରୋତ୍ତର ପଦାର୍ଥର ଅଥବା ଅପକର୍ଷ ବର୍ଣ୍ଣନାକୁ ସାର ଅଳଙ୍କାର ହୁଏ ।

**ସ୍କନ୍ଦ ପୁରାଣ** – ଏହା ପୁରାଣ ସାହିତ୍ୟର ଅନ୍ତର୍ଗତ । ଏହା ବ୍ୟାସଦେବଙ୍କ ସଙ୍କଳିତ । ଏହି ପୁରାଣରେ ଶ୍ଳୋକ ସଂଖ୍ୟା ୮୧,୧୦୦ । ଏଥିରେ ସନତ, କୁମାର ସଂହିତା, ସତ ସଂହିତା, ଶଙ୍କର ସଂହିତା, ବୈଷ୍ଣବ ସଂହିତା, ବ୍ରାହ୍ମ ସଂହିତା, ସୌର ସଂହିତା, ନାମକ ୨୭ ସଂହିତା ଓ ମାହେଶ୍ୱରୀ ଖଣ୍ଡ, ବୈଷ୍ଣବ ଖଣ୍ଡ, ବ୍ରାହ୍ମଖଣ୍ଡ, ବାଟୀ ଖଣ୍ଡ, ରେବା ଖଣ୍ଡ ଓ ପାପୀ ଖଣ୍ଡ ଓ ପ୍ରଭାସ ଖଣ୍ଡ ଅଛି । ଏଥିରେ ଉତ୍କଳ ଖଣ୍ଡରେ ଓଡ଼ିଶାର ତୀର୍ଥମାନଙ୍କର ଉଲ୍ଲେଖ ଅଛି ।

**ସାତବାରେଣୀ** – ସାଧନା କ୍ରିୟାରେ ସ୍ନାନବିଧି ରହିଛି । ଚନ୍ଦ୍ର ଓ ସୂର୍ଯ୍ୟ ନାଡ଼ି ଅନୁଯାୟୀ ସ୍ନାନ ବିଧି କରାଯାଇଥାଏ । ରବି, ମଙ୍ଗଳ, ବୃହସ୍ପତି ବା ଗୁରୁବାରେ ସ୍ନାନ କର୍ତ୍ତବ୍ୟ ଓ ସୋମ, ବୁଧ, ଶୁକ୍ର ଓ ଶନିବାରରେ ସ୍ନାନ କରେଇବା ବିଧେୟ ନୁହେଁ ବୋଲି ସନ୍ଥ ସାହିତ୍ୟରେ ନିର୍ଦ୍ଦେଶ ଅଛି । ସେହିପରି ଖାଇବା, ଶୋଇବା ମଧ୍ୟ ଏହି ବାର ଅନୁଯାୟୀ ନିର୍ଦ୍ଦେଶ ରହିଛି । ସପ୍ତାଙ୍ଗ ସାଧନା ପାଇଁ ଏହି ସାତବାରେଣୀ ନିର୍ଦ୍ଦେଶ ଅନ୍ୟତମ ।

**ସାତ୍ତ୍ୱିକ** – ଭରତ ମୁନିଙ୍କ ମତରେ ନାଟକ ସାତ୍ତ୍ୱିକ ନାମରେ ପରିଚିତ । ତେଣୁ ଅନୁଭୂତି ଯୁକ୍ତ, ହୃଦୟଗତ ଉଚ୍ଚ, ରସଯୁକ୍ତ ପ୍ରକଟିତ ହେବାର ଅଭିନୟ ସାତ୍ତ୍ୱିକ ଅଭିନୟ । ସ୍ତମ୍ଭ, ଖେଦ, ରୋମାଞ୍ଚ, ସ୍ୱରଭଙ୍ଗ, ବେପଥୁ, ବୈବର୍ଣ୍ଣ୍ୟ, ଅଶ୍ରୁ, .... ଏହି ପ୍ରକାର ଆଠ ପ୍ରକାର ।

**ସୁଆଙ୍ଗ** – ହାସ୍ୟରସ ପ୍ରଚୁର ରଂଗ ରହସ୍ୟପୂର୍ଣ୍ଣ ଅଭିନୟକୁ ସୁଆଙ୍ଗ କୁହାଯାଏ । ଏହା ପ୍ରହସନର ସଗୋତ୍ର ଏବଂ ଗୀତିନାଟ୍ୟ ଓ ଲୀଳାଠାରୁ ନିମ୍ନ ଶ୍ରେଣୀୟ ରଚନା । ସଂଗୀତ ବାହୁଲ୍ୟ ଗୀତିନାଟ୍ୟର ପ୍ରଧାନ ବିଶେଷତ୍ୱ । ସୁଆଙ୍ଗର ସଂଳାପ ପଦ୍ୟାତ୍ମକ ।

**ସୂକ୍ଷ୍ମଅଳଙ୍କାର** – ଯେଉଁଠାରେ ଜଣେ ବ୍ୟକ୍ତି ସ୍ୱକୀୟ ବିଦ୍‌ଗ୍ଧ ଚେଷ୍ଟାଦ୍ୱାରା ନିଜର ଅଭିପ୍ରାୟ ସୂକ୍ଷ୍ମ ସୂଚନା ମାଧମରେ ବ୍ୟକ୍ତକରେ, ସେଠାରେ ସୂକ୍ଷ୍ମ ଅଳଙ୍କାର ହୁଏ ।

''କର ଅରବିନ୍ଦେ ଧରି ନିମୀଳିତ କରି ବାଳା
ମିଳନ ଆତୁର ଜାର ପୁରୁଷର ଜଣାଏ ମିଳନ ବେଳା ।

**ସାମ୍ୟବାଦ** – କାର୍ଲମାର୍କସ୍ ଯେଉଁ ରାଜନୀତିକ ଚିନ୍ତାଧାରା ପ୍ରକାଶ କଲେ ତାହା ମାର୍କସବାଦ କୁହାଯାଏ ଏବଂ କେତେକ ଏହାକୁ ସାମ୍ୟବାଦର ଏକ ବିଷୟଗତ ନାମ ଭାବରେ ମଧ୍ୟ ଗ୍ରହଣ କରନ୍ତି । ତେବେ ପୃଥିବୀରେ ଧନରତ୍ନରେ ସମସ୍ତଙ୍କର ସମାନ ଅଧିକାର ସାବ୍ୟସ୍ତ କରୁଥିବା ରାଜନୀତିକ ସାମ୍ୟବାଦ । ଯେଉଁ ଶ୍ରେଣୀହୀନ ସମାଜ ବ୍ୟବସ୍ଥାରେ ଉତ୍ପାଦନର ସାଧନ ଗୁଡ଼ିକ ଉପରେ ଏକ ପ୍ରକାର ସର୍ବସାଧାରଣ ମାଲିକାନା ରହିଥାଏ, ଆଉ ପ୍ରତ୍ୟେକ ସଭ୍ୟ ପରିପୂର୍ଣ୍ଣ ସାମାଜିକ ସମତାର ଅଧିକାରୀ ହୋଇଥାନ୍ତି, ତାହାହିଁ ହେଉଛି ସାମ୍ୟବାଦ ବା କମ୍ୟୁନିଜିମ୍ । ସାହିତ୍ୟରେ ଜୀବନଯନ୍ତ୍ରଣା, ଶାସନ ଶୋଷଣ, ଜମିଦାରୀ ପୁଞ୍ଜିପତି ଶାସନର ଅତ୍ୟାଚାର ଓ ଅନ୍ୟାୟ ବିରୁଦ୍ଧରେ ଶ୍ରମଜୀବୀ ମଣିଷର ପ୍ରତିକ୍ରିୟାର ଚିତ୍ର, ଧର୍ମ

ବିରୋଧି ପ୍ରଗତିଶୀଳ ଚିନ୍ତାଧାରା, ବସ୍ତୁବାଦ ଚିନ୍ତାଧାରା

**ସାମାଜିକ ନାଟକ** – ସମକାଳୀନ ସମାଜ-ଜୀବନ ଓ ବ୍ୟକ୍ତି ଜୀବନକୁ ନେଇ ରଚିତ ନାଟକକୁ ସାମାଜିକ ନାଟକ କୁହାଯାଏ । ସାହିତ୍ୟ ସମାଜ ସଚେତନ ହେଲାପରେ ସାମାଜିକ ନାଟକର ସୃଷ୍ଟି ସମ୍ଭବ ହୋଇଛି । ପ୍ରଥମେ ସମାଜ-ସଂସ୍କାରମୂଳକ ନାଟକ ଓ ପରେ ସାମାଜିକ ସମସ୍ୟାମୂଳକ ନାଟକ ରଚିତ ହୋଇଅଛି ।

**ସମାଧି ଅଳଙ୍କାର** – କାରଣ ଥିବା ସତ୍ତ୍ୱେ କାର୍ଯ୍ୟ ସିଦ୍ଧି ହେଉ ନଥିବାବେଳେ ହଠାତ୍ ଆବିର୍ଭୂତ ଆକସ୍ମିକ କାରଣ ଦ୍ୱାରା ସେହି କାର୍ଯ୍ୟ ସହଜରେ ସିଦ୍ଧ ହେଲେ ସମାଧି ଅଳଙ୍କାର ହୁଏ ।

ମାନବଶେ ପ୍ରିୟା ନବସିଲା ପାଶେ<br>
ପାଦେ ପଡ଼ିବାକୁ ଗଲି ମୁଁ ରଭସେ<br>
ଏ ସମୟେ ଭାଗ୍ୟ ଗରଜିଲା ଘନ<br>
ଗାଢ଼େ ମଦାଳସା କଲା ଆଲିଙ୍ଗନ ।

**ସାଦୃଶ୍ୟ** – ଉପମା, ରୂପକ, ପ୍ରତୀକ, ଚିତ୍ରକଳ୍ପ । ସବୁଥିରେ ବସ୍ତୁ ସହିତ ବସ୍ତୁର ରୂପଗତ ଓ ଗୁଣଗତ ସାମଞ୍ଜସ୍ୟକୁ ସାଦୃଶ୍ୟ କୁହାଯାଏ । ଉପମା ଅଳଙ୍କାର ଓ ଇଂରାଜୀ ରେ ଏହିପରି ସାଦୃଶ୍ୟ ପରିକଳ୍ପନା କରାଯାଇଛି ।

**ସାରଳାଯୁଗ** – ଓଡ଼ିଆ ସାହିତ୍ୟରେ ଖ୍ରୀଷ୍ଟୀୟ ପଞ୍ଚଦଶ ଶତାବ୍ଦୀକୁ ସାରଳାଯୁଗ କୁହାଯାଏ । ଏ ଯୁଗରେ ସାରଳା ଦାସ କେବଳ ଏକମାତ୍ର କବି ନଥିଲେ ପରନ୍ତୁ ସବୁଠାରୁ ଶକ୍ତିଶାଳୀ ତଥା ପ୍ରଭାବଶାଳୀ କବିତ୍ୱର ଅଧିକାରୀ ଥିଲେ । ତେଣୁ ତାଙ୍କ ନାମରେ ଏଯୁଗ ନାମିତ । ଏ ଯୁଗରେ ସଂସ୍କୃତ ଭାଷାରୁ ସାହିତ୍ୟ ମୁକ୍ତିଲାଭ କରି କଥିତ ଓଡ଼ିଆ ସାହିତ୍ୟର ଭିତ୍ତି ସ୍ଥାପନ ପ୍ରତିଷ୍ଠିତ ହେଲା । ସାହିତ୍ୟରେ ଓଡ଼ିଆ ସଂସ୍କୃତି, ସମାଜ, ପରଂପରା, ବିଶ୍ୱାସ ତଥା ଲୋକଭାଷା ପ୍ରୟୋଗ ଦ୍ୱାରା ଏକ ଜାତୀୟ ଐତିହ୍ୟର ସ୍ମାରକୀ ବହନକଲା । ଓଡ଼ିଆ ପଦ୍ୟ ସାହିତ୍ୟରେ ଗଦ୍ୟର ବ୍ୟବହାର ହୋଇ ସେ ପରବର୍ତ୍ତୀ ସାହିତ୍ୟ ପାଇଁ ଆଦର୍ଶ ହୋଇ ରହିଲା । ନିଜେ ଶକ୍ତି ଉପାସକ ହେଲେ ହେଁ ନିଜ ଗ୍ରନ୍ଥ ମାନଙ୍କରେ ସର୍ବଧର୍ମର ସମନ୍ୱୟ ଆଣି ଉତ୍କଳୀୟ ଧର୍ମଧାରାର ପ୍ରକୃତ ପରିଚିତି ଆଣିଥିଲେ, ଯାହାକି ପରବର୍ତ୍ତୀ କବିମାନଙ୍କୁ ଉତ୍ସାହିତ କଲା । ଅନୁବାଦ ମାଧ୍ୟମରେ ସାରଳାଦାସ ପୁରାଣମାନ ରଚନା କରିଥିଲେ ବି ସ୍ୱକୀୟ ମୌଳିକତା ପ୍ରଦର୍ଶନ କରାଇବା ଏ ଯୁଗର ଅନ୍ୟତମ ବିଶେଷତ୍ୱ ।

**ସାହିତ୍ୟ** – ସାହିତ୍ୟର ବ୍ୟୁତ୍ପତ୍ତିଗତ ଅର୍ଥ ହେଉଛି ହିତ ସହିତ ବର୍ତ୍ତମାନ । ଜୀବନ ସଂପର୍କିତ ଭାବନା, ଅନୁଭୂତି ଓ ଆଭିମୂଖ୍ୟର ମୁଗ୍ଧ ରୂପାୟନର ହେଉଛି ସାହିତ୍ୟ । ବ୍ୟକ୍ତିର ଆତ୍ମପ୍ରକାଶ ଲିପ୍ସା, ପାରିପାର୍ଶ୍ୱିକ ଜଗତ ସହିତ ଯୋଗସୂତ୍ର ସ୍ଥାପନ, କଳ୍ପଜଗତର

ପ୍ରୟୋଜନୀୟତା ଓ ରୂପ ପ୍ରିୟତା ଏହି ୪ଟି ସାହିତ୍ୟ ସୃଷ୍ଟିର ମୂଳଉତ୍ସ ବୋଲି କୁହାଯାଇଥାଏ । ସାହିତ୍ୟର ଲକ୍ଷ୍ୟ କେବଳ ମଣିଷ ନୁହେଁ, ସଂପୂର୍ଣ୍ଣ ସୃଷ୍ଟି । ତେବେ ସାହିତ୍ୟର ଭୋକ୍ତା କେବଳ ମଣିଷ ।

**ସାମାନ୍ୟ ଅଳଙ୍କାର** – ଦୁଇଟି ବିଭିନ୍ନ ବସ୍ତୁର ଗୁଣଗତ ସମତା ଯୋଗୁଁ ସେମାନଙ୍କର ମଧ୍ୟରେ ଅଭିନ୍ନତା ପ୍ରତିଷ୍ଠିତ ହେଲେ ସାମାନ୍ୟ ଅଳଙ୍କାର ହୁଏ ।

ନାରୀ ଯଦି ବାରି ନୋହିଲେ ତହିଁ ଘଡ଼ିଏଁ ଯାଏଁ
ହାସ କୁମୁଦ ନେତ୍ର ମୀନ ମୁଖ କମଳ ପ୍ରାୟେ । (ଲାବଣ୍ୟବତୀ)

**ସାହିତ୍ୟ ସଂଗ୍ରହ** – ସାହିତ୍ୟିକ ସୃଷ୍ଟିର ସଂଗ୍ରହ ଏକ ବିଶିଷ୍ଟ ଦିଗ । ଦୁର୍ଲଭ ସାହିତ୍ୟ, ସଂସ୍କୃତି, କଳାର ଲିଖିତ ସଂଗ୍ରହ ଓ ପ୍ରକାଶନ କରିବାର କର୍ମକୁ ସାହିତ୍ୟ ସଂଗ୍ରହ କୁହାଯାଏ ।

**ସାହିତ୍ୟ ସିଦ୍ଧାନ୍ତ** – ଭାରତୀୟ ସାହିତ୍ୟରେ ମୁଖ୍ୟତଃ ଛଅଗୋଟି ସିଦ୍ଧାନ୍ତ ପ୍ରତିଷ୍ଠା ଲାଭ କରିଛନ୍ତି । ସେଗୁଡ଼ିକ ହେଲେ (୧) ଭାମହଙ୍କ ଅଳଙ୍କାର ସିଦ୍ଧାନ୍ତ, (୨) ବାମନଙ୍କ ରୀତି ସିଦ୍ଧାନ୍ତ, (୩) କୁନ୍ତକଙ୍କ ବକ୍ରୋକ୍ତି ସିଦ୍ଧାନ୍ତ, (୪) କ୍ଷେମେନ୍ଦ୍ରଙ୍କ ଔଚିତ୍ୟ ସିଦ୍ଧାନ୍ତ, (୫) ଆନନ୍ଦବର୍ଦ୍ଧନଙ୍କ ଧ୍ୱନି ସିଦ୍ଧାନ୍ତ, (୬) ବିଶ୍ୱନାଥ କବିରାଜଙ୍କ ରସ ସିଦ୍ଧାନ୍ତ ।

**ସ୍ତୁତି** – ଦେବ ଦେବୀଙ୍କ ଆୟୁଧ, ସ୍ୱରୂପ, ବାହନ, ବିଭିନ୍ନ ନାମକୁ ଏବଂ ସେମାନଙ୍କ କାର୍ଯ୍ୟାବଳୀକୁ ନେଇ ଲେଖାଯାଇଥିବା ସ୍ତୋତ୍ରକୁ ସ୍ତୁତି କୁହାଯାଏ । କବଚ, ସହସ୍ର ନାମ, ଇତ୍ୟାଦି ଏହାର ଅନ୍ତର୍ଗତ ।

**ସୃଷ୍ଟିତତ୍ତ୍ୱ** – ପଞ୍ଚ ମହାଭୂତ ସହ ମନ, ବୁଦ୍ଧି ଓ ଅହଂକାର ସମ୍ମିଶ୍ରଣ ହେବା ଫଳରେ ସୃଷ୍ଟି ପ୍ରକ୍ରିୟା ଆରମ୍ଭ ହୋଇଛି । ମହିମା ଧର୍ମରେ ଶୂନ୍ୟରୁ ସକଳ ଜଗତର ସୃଷ୍ଟି ସମ୍ଭବ ହୋଇଥାଏ ବୋଲି ବିଶ୍ୱାସ ଅଛି । ଏହି ଶୂନ୍ୟ ଆକାଶ ବାଚକ । ବିଶେଷ ଶକ୍ତି ବିଶିଷ୍ଟ ତମଃ ପ୍ରଧାନ ଅଜ୍ଞାନ ଆବୃତ୍ତ ଚୈତନ୍ୟରୁ ଆକାଶ, ଆକାଶରୁ ବାୟୁ, ବାୟୁରୁ ଅଗ୍ନି, ଅଗ୍ନିରୁ ଜଳ ଓ ଜଳରୁ ପୃଥିବୀ ଉତ୍ପନ୍ନ ହୋଇଛି ।

**ସ୍ଥିତିବାଦ** – ସ୍ଥିତିବାଦ ଈଶ୍ୱରବାଦ ଓ ନିରୀଶ୍ୱର ବାଦ ଭେଦରେ ଦୁଇ ପ୍ରକାର । ସ୍ଥିତିବାଦ ରାଜନୀତି ଓ ଧର୍ମ ସମ୍ବନ୍ଧୀୟ ଉଦାରତାରେ ଥିବା ପ୍ରତିବନ୍ଧ ଗୁଡ଼ିକୁ ଦେଖାଇଦିଏ । ସ୍ଥିତିବାଦରେ ଉଦାରତା ଗ୍ରହଣୀୟ ନୁହେଁ । ଉଦାର ମନୋଭାବ ସାମାଜିକ ଅବନ୍ନତିର କାରଣ ଏବଂ ସ୍ଥିତିବାଦ ତାହାର ବିରୋଧ କରେ । ସ୍ଥିତିବାଦୀମାନଙ୍କ ମତରେ ହେତୁବାଦ ଜନସମାଜକୁ ବସ୍ତୁବାଦ ଓ ଭାବବାଦ ପରି ଦୁଇଟି ଶ୍ରେଣୀରେ ବିଭକ୍ତ କରିଦେଇଛି । ହେତୁବାଦୀମାନେ ମଣିଷ ସହିତ ସମସ୍ତ ବାସ୍ତବତାକୁ ବସ୍ତୁ ବୋଲି ବିଚାର କରେ । ଏହି ଧାରଣା ସହିତ ମଣିଷ ଆଦୌ ପରିଚିତ ନୁହେଁ । ସ୍ଥିତିବାଦ ଭାବ ଓ ବସ୍ତୁର ସମନ୍ୱୟରୁ ଜନ୍ମ । ନିଜପ୍ରତି ସଚେତନ ହେବା ସ୍ଥିତିବାଦର ମୁଖ୍ୟ ଆହ୍ୱାନ । କିନ୍ତୁ ସ୍ୱାଧୀନତା ଏଥିରେ ବ୍ୟକ୍ତିତ୍ୱବାଦ ହୋଇଥାଏ । ସ୍ଥିତିବାଦ ଓ ବ୍ୟକ୍ତିତ୍ୱବାଦ ଗୋଟିଏ ମୁଦ୍ରାର ଦୁଇଟି ପାର୍ଶ୍ୱପରି ।

ତେଣୁ କଳା ସାହିତ୍ୟରେ ସାମାଜିକ ବିକାଶ ଦୃଷ୍ଟିରୁ ଏହାର ଉପଯୋଗୀତା ରହିଛି । ସ୍ଥିତିବାଦୀଙ୍କ ମତରେ ମଣିଷ ର ବିବେକ ରୋଗଗ୍ରସ୍ତ । ସରଳ ବିବେକ ବୋଲି କିଛିନାହିଁ । ମଣିଷ ହେଉଛି ଜଟିଳ, ଦୁଷ୍କାମୀ ତା'ର ଅବଲମ୍ବନ । ଚେତନା ଓ ପଦାର୍ଥ ବିଜ୍ଞାନର ସ୍ଥିତି ନାହିଁ । ସ୍ଥିତିପାଇଁ ଦୁନିଆରେ ହୀନକଥା ରୂପକର ବି ମୂଲ୍ୟଅଛି । ସ୍ଥିତିବାଦରେ ସମସ୍ତ ନଷ୍ଟ କରି ମଧ ମଣିଷ ଜୀବନକୁ ଭଲପାଏ ଏବଂ ଭଲପାଏ ଭଲ ପାଇବା ଦୃଷ୍ଟିରୁ । ନୂଆକରି ଜୀବନ ଗଢ଼ିବା ପରମ ଲକ୍ଷ୍ୟ । ସ୍ଥିତିବାଦୀ ସହନଶୀଳ ପ୍ରତିରୋଧର ବିପରୀତ ଦୃଷ୍ଟି । ସ୍ଥିତିବାଦର ପ୍ରଥମ ପ୍ରବକ୍ତା ଥିଲେ ଜର୍ମାନୀ ଦାର୍ଶନିକ କିର୍କେଗତ, ସାର୍ତ୍ରେ, କାମ୍ୟୁ ।

**ସୋମନାଥ ବ୍ରତ କଥା** – 'ସୋମନାଥବ୍ରତ କଥା' ଶୈବଧର୍ମ ପ୍ରଖ୍ୟାପକ ଏକ ଗଦ୍ୟଗ୍ରନ୍ଥ । ଓଡ଼ିଶାର ବହୁ ପ୍ରାଚୀନ କାଳରୁ ପ୍ରଚଳିତ ବହୁ ଓଷା ଓ ବ୍ରତ ମଧ୍ୟରେ ଏକ  ଏକତମ । ଶିବ ପାର୍ବତୀଙ୍କ କଥୋପକଥନରୁ ଏହା ଆରମ୍ଭ ହୋଇଛି । ସୋମନାଥ ବ୍ରତ କଥା ଶୈବଧର୍ମ ପ୍ରଚାର ଉଦ୍ଦେଶ୍ୟରେ ରଚିତ । ଶିବଙ୍କ ମାହାତ୍ମ୍ୟ ପ୍ରଖ୍ୟାପନ କରାଯାଇଥିବାରୁ ଏହି ବ୍ରତକଥା ଭକ୍ତମାନଙ୍କ ମନରେ ଭଗବାନ ଶିବଙ୍କ ପ୍ରତି ଗଭୀର ଭକ୍ତିଭାବ ଜାତ ହୁଏ । ଓଡ଼ିଆ ଗଦ୍ୟ ସାହିତ୍ୟର ଦୁର୍ବଳ ଗଦ୍ୟ ପରମ୍ପରା ଭାଷାତତ୍ତ୍ୱ ଓ ଧର୍ମତତ୍ତ୍ୱ ଦୃଷ୍ଟିରୁ ସୋମନାଥ ବ୍ରତକଥା ଏକ ସାହସିକ ପ୍ରଚେଷ୍ଟା ।

**ସୌନ୍ଦର୍ଯ୍ୟ** – ଯାହା ପ୍ରତି ମନୁଷ୍ୟ ଇନ୍ଦ୍ରିୟ ଆପେ ଆପେ ଆକୃଷ୍ଟ ହୋଇଯାଏ କିମ୍ବା ଯାହାକୁ ଦେଖିଲେ ଦର୍ଶକ ଆପେ ଆପେ ଆତ୍ମହରା ହୋଇପଡ଼େ, ତାହା ହେଉଛି ସୌନ୍ଦର୍ଯ୍ୟ । ସୌନ୍ଦର୍ଯ୍ୟର ତିନୋଟି ଅବସ୍ଥା । (୧) ଆକର୍ଷଣ (୨) ଆତ୍ମଲୀନତା (୩) ଆହ୍ଲାଦ ପ୍ରାପ୍ତି । ଅପସାଦ ଅପହରଣ କିମ୍ବା ଚିତ୍ତବିନୋଦନ ସୌନ୍ଦର୍ଯ୍ୟର ସାଧାରଣ ଧର୍ମ ।

**ସୌନ୍ଦର୍ଯ୍ୟ ଅଭିରୁଚି (Sublimity)** – ପ୍ରକୃତିର ଦୁଇଟି ଦିଗ - ଗୋଟିଏ ସୌନ୍ଦର୍ଯ୍ୟ (Beauty) ଅନ୍ୟଟି ସୌନ୍ଦର୍ଯ୍ୟାନୁଭୂତି (Sublimity) । ସବ୍‌ଲିମିଟ ତତ୍ତ୍ୱର ମୁଖ୍ୟ ପ୍ରବକ୍ତା ହେଉଛନ୍ତି ରୋମାନ୍ ଦାର୍ଶନିକ ଲଙ୍ଗନସ । ତାଙ୍କ ମତ ଅନୁସାରେ ପ୍ରାକୃତିକ ବିଭବର ସୌନ୍ଦର୍ଯ୍ୟ ଅର୍ଥ ଯାହାର ରୂପ ଯେମିତି ତାହା ଠିକ୍ ସେମିତି ଏବଂ ତାହା ମନକୁ ଉଲ୍ଲସିତ କରେ, ସନ୍ତୋଷ ଦିଏ କିନ୍ତୁ ସବ୍‌ଲାଇମ୍ ହେଉଛି ସେହି ପ୍ରାକୃତିକ ବିଭବ ଯାହା ମନକୁ ଉର୍ଦ୍ଧ୍ୱାୟତନ କରେ । ସବ୍‌ଲାଇମ୍ ଆତ୍ମାକୁ ପରମାତ୍ମା ସହିତ ଆତ୍ମୀୟତା ପ୍ରତିଷ୍ଠା କରେ । କଳା ସାହିତ୍ୟ ଦୃଷ୍ଟିରୁ ସବ୍‌ଲାଇମ୍ ଶବ୍ଦ ସମୂହ ଅପେକ୍ଷା ଅଧିକ ଆଧ୍ୟାତ୍ମିକ ଦର୍ଶନ ଯୋଗାଇଥାଏ । ସବ୍‌ଲାଇମ୍ ଅଖଣ୍ଡ ଓ ଅସୀମ ବସ୍ତୁରେ ନିହିତ । ସାହିତ୍ୟର ଓଜସ୍ୱୀଭାଷା ବିନ୍ୟାସ ଓ ଉଦାତ୍ତ ଶୈଳୀ (grand style) ସବ୍‌ଲାଇମ୍ ସୃଷ୍ଟିକରେ ।

**ସାକାଙ୍‌କ୍ଷତା ଦୋଷ** – ଭାରତୀୟ ସାହିତ୍ୟ ତତ୍ତ୍ୱରେ ଅର୍ଥଦୋଷର ଅନ୍ତର୍ଭୁକ୍ତ । ସମୁଚିତ ଭାବରେ କାବ୍ୟାର୍ଥର ଅବବୋଧପାଇଁ ସେଥିରେ ବ୍ୟବହୃତ ହୋଇଥିବା ପଦଗୁଡ଼ିକ ନିରାକାଙ୍‌କ୍ଷ ହେବା ଉଚିତ ଅର୍ଥାତ୍ ଗୋଟିଏ ଶବ୍ଦର ଅର୍ଥ ଅବଗତି ପାଇଁ ତାହା ଆଧାହୃତ

ଅର୍ଥ ଉପରେ ନିର୍ଭର କରିବା ଉଚିତ ନୁହେଁ । ଯେଉଁଠି ବ୍ୟବହୃତ ଶବ୍ଦ ଅର୍ଥ ବ୍ୟକ୍ତ କରିବା ପାଇଁ ସ୍ୱୟଂସମ୍ପୂର୍ଣ୍ଣ ନୁହେଁ, ସେଠାରେ ଏହି ଦୋଷ ହୁଏ । ଉଦାହରଣ-

କଚ ଚାହିଁ କୁଚ କମ୍ପନ ହେଉଛି କୁଚ ଚାହିଁ କଚ କମ୍ପନ
ନୟନ ଲୋକନେ ଭୟେ କଟି ବଶ ତରେ କଟି ଦେଖିନୟନ
ଅଛି ଆହୁରି, ସେ ଅଙ୍ଗେ ଆଶ୍ଚର୍ଯ୍ୟ ଅପାର
ଭୂଜ ଚାହିଁ ଗତି କାତର ହେଉଛି, ଗତି ଚାହିଁ ଭୂଜ କାତର ।

(ପ୍ରେମସୁଧାନିଧି)

**ସ୍ୱରବର୍ଣ୍ଣ** – ବ୍ୟାକରଣ ନିୟମ । ଯେଉଁ ବର୍ଣ୍ଣ ଅନ୍ୟବର୍ଣ୍ଣ ସାହାଯ୍ୟ ବ୍ୟତୀତ ଉଚ୍ଚାରିତ ହୋଇପାରନ୍ତି, ସେଗୁଡ଼ିକ ସ୍ୱରବର୍ଣ୍ଣ । ଓଡ଼ିଆ ଭାଷାରେ ତେରଟି ସ୍ୱରବର୍ଣ୍ଣ ଅଛି - ଅ ଆ ଇ ଈ ଉ ଊ ଋ ୠ ଌ ଏ ଐ ଓ ଔ । ଏହା ଦୁଇ ଭାଗରେ ବିଭକ୍ତ । ହ୍ରସ୍ୱ ସ୍ୱର, ଦୀର୍ଘ ସ୍ୱର ।

**ସ୍ଥାନ କାଳ ପାତ୍ର** – ସ୍ଥାନ କାଳ ପାତ୍ର ସାହିତ୍ୟ ରଚନାର ଏକ ବିଶିଷ୍ଟ ଭାବ । କାରଣ ନାଟକ, ଉପନ୍ୟାସ, ଗଳ୍ପ ଆଦି ରଚନା କଲାବେଳେ ଲେଖକ ସ୍ଥାନ, କାଳ, ପାତ୍ରର ପ୍ରଭାବ ଓ ଉପଯୋଗୀ ଜ୍ଞାନ ଅନୁଯାୟୀ ରଚିତ ହୋଇଥାଏ । ମନସ୍ତତ୍ତ୍ୱ ଓ ଦର୍ଶନରେ ମଧ୍ୟ ସ୍ଥାନ କାଳର ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଥାଏ । ଏହା ମଣିଷର ଚେତନପ୍ରବାହକୁ ନିୟନ୍ତ୍ରିତ କରିଥାଏ । ତେଣୁ ସାହିତ୍ୟରେ ଏହା ସ୍ପଷ୍ଟ ଛାପ ସ୍ୱାଭାବିକ ।

**ସ୍ଥାୟୀଭାବ** – ଯେଉଁ ଭାବଗୁଡ଼ିକ ଆମ ମନ ଭିତରେ ବହୁ ସମୟ ପାଇଁ ନିଜ ନିଜର ସ୍ଥିତି ଦୃଢ଼ଭାବରେ ରଖିପାରନ୍ତି, ସେଗୁଡ଼ିକ ସ୍ଥାୟୀଭାବ କୁହାଯାଏ । ଭରତମୁନି ନାଟକ ସାହିତ୍ୟ ଉପଯୋଗୀ କେବଳ ଆଠଟି ସ୍ଥାୟୀଭାବର ପରିକଳ୍ପନା କରିଥିଲେ ହେଁ ଅଭିନବ ଗୁପ୍ତ ସ୍ଥାୟୀ ଭାବ ନଅଟି ବୋଲି ସ୍ଥିର କରିଛନ୍ତି । ବିଶ୍ୱନାଥ କବିରାଜଙ୍କ ମତରେ ସ୍ଥାୟୀଭାବମାନଙ୍କ ସଂଖ୍ୟା ଦଶ ଓ ସେଥିରୁ ଉତ୍ପନ୍ନ ହେଉଥିବା ରସମାନଙ୍କ ସଂଖ୍ୟା ଦଶ

| ସ୍ଥାୟୀ ଭାବ | ରସ | ସ୍ଥାୟୀ ଭାବ | ରସ |
|---|---|---|---|
| (୧) ରତି | ଶୃଙ୍ଗାର | (୭) ଜୁଗୁପ୍ସା | ବିଭତ୍ସ |
| (୨) ହାସ | ହାସ୍ୟ | (୮) ବିସ୍ମୟ | ଅଦଭୁତ |
| (୩) ଶୋକ | କରୁଣ | (୯) ଶମ | ଶାନ୍ତ |
| (୪) କ୍ରୋଧ | ରୌଦ୍ର | (୧୦) ବତ୍ସଳ | ବାତ୍ସଲ୍ୟ |
| (୫) ଉତ୍ସାହ | ବୀର | | |
| (୬) ଭୟ | ଭୟାନକ | | |

## ଶ

**ଶଙ୍କରାଭରଣ** – ଏହା ଏକ ବୃତ୍ତ ବା ଛନ୍ଦ । ଏହାର ପ୍ରତ୍ୟେକ ପାଦ ଚାରିପାଦ ବିଶିଷ୍ଟ । ପ୍ରଥମ, ଦ୍ୱିତୀୟ ଓ ଚତୁର୍ଥ ପାଦରେ ଚଉଦଟି ଲେଖାଏଁ ଓ ତୃତୀୟ ପାଦରେ ଆଠଟି ଅକ୍ଷର ଥାଏ । ପ୍ରଥମ ପାଦର ଅନ୍ତ୍ୟବର୍ଣ୍ଣ ସହ ଦ୍ୱିତୀୟ ପାଦର ଅନ୍ତ୍ୟବର୍ଣ୍ଣର ଓ ତୃତୀୟ ପାଦର ଅନ୍ତ୍ୟବର୍ଣ୍ଣ ସହ ଚତୁର୍ଥପାଦର ଅନ୍ତ୍ୟବର୍ଣ୍ଣର ମେଳ ଥାଏ । ତୃତୀୟ ପାଦର ଶେଷ ଅକ୍ଷର ଉପରେ ଓ ଅନ୍ୟ ପାଦମାନଙ୍କର ଅଷ୍ଟମ, ଏକାଦଶ ଓ ଶେଷ ଅକ୍ଷର ଉପରେ ଯତିପଡ଼େ । ଉଦାହରଣ -

ସତ୍ୟପଥେ ଧର୍ମପଥେ ଘେନିଯା'ଅ ମୋତେ'
ଭସାଅ ପରାଣ ମୋର ତବ ପ୍ରେ'ମ ସ୍ରୋତେ
ପ୍ରଭୋ ପରମ ଶରଣ
ଏ ଜୀବନ ଶ୍ରୀଚରଣେ କଲି ସମର୍ପଣ ।

**ଶବ୍ଦ** – ଏହା ବ୍ୟାକରଣ ନିୟମର ଅନ୍ତର୍ଭୁକ୍ତ । ଅର୍ଥବୋଧକ ଏକ କିମ୍ବା ଏକାଧିକ ଅକ୍ଷର କୁ ଶବ୍ଦ କୁହାଯାଏ । ଅନ୍ୟଭାଷାରେ ଅର୍ଥବୋଧକ ବର୍ଣ୍ଣ ବା ବର୍ଣ୍ଣ ସମଷ୍ଟିକୁ ଶବ୍ଦ ବୋଲାଯାଏ । ଏହା ଚାରି ଶ୍ରେଣୀରେ ବିଭକ୍ତ ଯଥା - ତତ୍ସମ, ତଦ୍ଭବ, ଦେଶଜ, ବୈଦେଶିକ । କେତେଗୁଡ଼ିଏ ଶବ୍ଦ ମିଶି ବାକ୍ୟ ଗଠନ ହୁଏ । ପ୍ରୟୋଗାର୍ଥକ ସାର୍ଥକ ଶବ୍ଦ ବା ଶବ୍ଦ ସମୂହକୁ ପଦ କୁହାଯାଏ ।

ମହାଭାଷ୍ୟକାର ପତଞ୍ଜଳିଙ୍କ ମତରେ "ପ୍ରତୀତ ପଦାର୍ବକୋ ଲୋକେ ଧ୍ୱନିଃ ଶବ୍ଦ ଇତ୍ୟୁଚ୍ୟତେ"। ଅର୍ଥାତ୍ ଏ ସଂସାରରେ ବିଭିନ୍ନ ପଦାର୍ଥର ପ୍ରତୀତି ଯେଉଁ ଧ୍ୱନି (ଶବ୍ଦ) ଦ୍ୱାରା ହୁଏ, ତାହାର ନାମ ଶବ୍ଦ । ସାଧାରଣତଃ ଧ୍ୱନି, ପଦ, ବାକ୍ୟ ଏ ସମସ୍ତଙ୍କୁ ସାହିତ୍ୟ କ୍ଷେତ୍ରରେ ଶବ୍ଦ କୁହାଯାଏ । ଯାହା ଶୁଣାଯାଏ ତାହା ଶବ୍ଦ, ସେଥିରୁ ଯାହା ବୁଝାପଡ଼େ ତାହା ଅର୍ଥ । ଶବ୍ଦ ଓ ଅର୍ଥ କାବ୍ୟର ଶରୀର ସ୍ଥାନୀୟ । ମଣିଷ ନିଜର ଅନୁଭୂତି, ଜ୍ଞାନ ଓ ଧାରଣାକୁ ପ୍ରକାଶ ପାଇଁ ଶବ୍ଦ ବ୍ୟବହାର କରେ ।

**ଶବ୍ଦ କବି** – ପ୍ରାଚୀନ ସାହିତ୍ୟ ତତ୍ତ୍ୱରେ ବିଷୟ ଦୃଷ୍ଟିରୁ କବିମାନଙ୍କୁ ବିଭିନ୍ନ ନାମର ନାମିତ କରାଯାଏ । ଯଥା (୧) ରଚନା କବି (୨) ଶବ୍ଦକବି (୩) ଅର୍ଥକବି (୪) ଅଳଙ୍କାର କବି (୫) ଭକ୍ତକବି (୬) ରସକବି (୭) ମାର୍ଗ କବି (୮) ଶାସ୍ତ୍ରାର୍ଥ କବି । ଶବ୍ଦ କବି ନିଜ ବିଷୟରେ କବିତ୍ୱପୂର୍ଣ୍ଣ ଦକ୍ଷତା ପ୍ରଦର୍ଶିତ କରିଥାନ୍ତି ।

**ଶବ୍ଦକୋଷ** – ଶବ୍ଦାର୍ଥପ୍ରକାଶକ ଗ୍ରନ୍ଥ । ଏହା ଅଭିଧାନଠାରୁ ପୃଥକ୍ । ଅଭିଧାନରେ ଶବ୍ଦର ଅର୍ଥାନ୍ୱୟ ହୋଇଥାଏ କ୍ରମିକ ଭାବରେ କିନ୍ତୁ ଶବ୍ଦକୋଷରେ ପାରିଭାଷିକ ରହିଥାଏ ।

**ଶବ୍ଦ ବ୍ରହ୍ମ** – ପ୍ରାଚୀନ ଓଡ଼ିଆ ସାହିତ୍ୟରେ ଅଚ୍ୟୁତାନନ୍ଦ ଦାସଙ୍କ କେତେକ 'ଶବ୍ଦ' ନାମଧେୟ ରଚନା ରହିଛି । ସନ୍ଥ ମତରେ ଶବ୍ଦର ଅର୍ଥ ଜ୍ଞାନ । ପରେ ଏହା ଅପୌରୁଷେୟ ବାଣୀ ବା ଗୁରୁଙ୍କ ବାଣୀକୁ ବୁଝାଇଲା । ଉପଦେଶାତ୍ମକ ଓ ସିଦ୍ଧାନ୍ତ ନିରୂପକ ପଦ ଶବ୍ଦ ଭାବରେ ଆଖ୍ୟାତ । ଶବ୍ଦର ରୂପ ଅଖଣ୍ଡ । ଶବ୍ଦ ଅଗାଧ ଓ ସେ ପ୍ରତ୍ୟେକ ଘଟରେ ରହିଛି । ସେ ସ୍ୱୟଂ ବ୍ରହ୍ମ ସ୍ୱରୂପ । ଓଡ଼ିଶାରେ ସନ୍ଥକବିଗଣ ଶବ୍ଦକୁ ଶବ୍ଦବ୍ରହ୍ମ ଭାବରେ ଗ୍ରହଣ କରିଛନ୍ତି ।

**ଶବ୍ଦଚିତ୍ର କାବ୍ୟ** – ଭାରତୀୟ ସାହିତ୍ୟରେ ଚିତ୍ରକଳା ପରିପ୍ରେକ୍ଷୀରେ ଶବ୍ଦାଳଙ୍କାରଗତ ଚମତ୍କାରିତା ପ୍ରାଧାନ୍ୟକୁ ଆଖିରେ ରଖି ଶବ୍ଦଚିତ୍ର କାବ୍ୟ ପରିକଳ୍ପନା କରଯାଏ । ଏଥିରେ ସଂଯୋଜନା ପାଇଁ କବିଙ୍କର ସମସ୍ତ ଦକ୍ଷତା ବିନିଯୁକ୍ତ ହେଉଥିବାର କେବଳ ଆଙ୍ଗିକ ସୌଷ୍ଠବ ପରିଦୃଷ୍ଟ ହୋଇଥାଏ ମାତ୍ର ଆତ୍ମିକ ଭାବ ବିଭବ ଦୁର୍ବଳ ରହେ । ତେଣୁ ଏହି ରଚନାକୁ ଆଳଙ୍କାରିକମାନେ ଅଧମକାବ୍ୟ ଭାବରେ ଗ୍ରହଣ କରିଥାନ୍ତି । ଉଦାହରଣ-

ଦେଖରେ ନଳିନୀ ନଳିନୀ ନଳିନୀରେ ପୂରିତ
ଭ୍ରମନ୍ତି ଭ୍ରମରେ ଭ୍ରମରେ ଭ୍ରମରେ ଏ ଶୋଭିତ ।

**ଶବ୍ଦଶକ୍ତି** – ଶବ୍ଦରୁ ନିର୍ଦ୍ଦିଷ୍ଟ ଅର୍ଥ ପରିପ୍ରକାଶ ପାଇଁ ତିନୋଟି ଶକ୍ତି ବା ପ୍ରକ୍ରିୟାର ପରିକଳ୍ପନା କରାଯାଇଛି । ସେଗୁଡ଼ିକ ହେଲେ ଅଭିଧା, ଲକ୍ଷଣା, ବ୍ୟଞ୍ଜନା । ଅଭିଧା ଶକ୍ତିଦ୍ୱାରା ବାଚକ ଶବ୍ଦ ବାଚ୍ୟ ଅର୍ଥକୁ ବ୍ୟକ୍ତକରେ, ଲକ୍ଷଣା ଶକ୍ତିଦ୍ୱାରା ଲାକ୍ଷଣିକ ଶବ୍ଦ ଲକ୍ଷ୍ୟ ଅର୍ଥକୁ ପ୍ରକାଶ କରେ ଓ ବ୍ୟଞ୍ଜନା ଶକ୍ତିଦ୍ୱାରା ବ୍ୟଞ୍ଜନଶବ୍ଦ ବ୍ୟଙ୍ଗଅର୍ଥକୁ ବ୍ୟଞ୍ଜିତ କରେ ।

''ବାଚ୍ୟଃର୍ଥୋଭିଧୟା ବୋଧ୍ୟା ଲକ୍ଷ୍ୟୋ ଲକ୍ଷଣାୟାମତଃ
ବ୍ୟଙ୍ଗ୍ୟୋ ବ୍ୟଞ୍ଜନୟା ତାଃ ସ୍ୟୁସ୍ତିସ୍ରଃ ଶବ୍ଦସ୍ୟ ଶକ୍ତୟଃ''।

**ଶବ୍ଦାଳଙ୍କାର** – କାବ୍ୟରେ ଅଳଙ୍କାରମାନଙ୍କ ଅବସ୍ଥିତି ଦୃଷ୍ଟିରୁ ସେଗୁଡ଼ିକ ତିନିଭାଗରେ ବିଭକ୍ତ ହୋଇଥାଏ । (୧) ଶବ୍ଦାଳଙ୍କାର (୨) ଅର୍ଥାଳଙ୍କାର (୩) ଉଭୟାଳଙ୍କାର । ସାହିତ୍ୟରେ ଶବ୍ଦମୂଳକ ବୈଚିତ୍ର୍ୟକୁ ଶବ୍ଦାଳଙ୍କାର କୁହାଯାଏ । ଯମକ, ଅନୁପ୍ରାସ, ଉପମା, ରୂପକ ଇତ୍ୟାଦି ଶବ୍ଦାଳଙ୍କାର ଅନ୍ତର୍ଭୁକ୍ତ । ଆଳଙ୍କାରିକ ଭାଷାରେ ଶବ୍ଦକୁ 'ଶବଦ୍ ପରିବୃତ୍ତି ଅସହ' କୁହାଯାଏ । ଆଳଙ୍କାରିକଯୁକ୍ତ ରଚନାରେ ବ୍ୟବହୃତ ହେଉଥିବା ଶବ୍ଦକୁ ବଦଳାଇ ତଦର୍ଥକ ଆଉ ଗୋଟିଏ ଶବ୍ଦ ବ୍ୟବହାର କଲେ, ଯଦି ଶବ୍ଦନିଷ୍ଠ ଅଳଙ୍କାର ମଧ୍ୟ ବିଲୁପ୍ତି ଘଟେ, ତେବେ ସେଠାରେ ଶବ୍ଦାଳଙ୍କାର ଅଛି, ଏକଥା ବୁଝିବାକୁ ହେବ । ତେଣୁ ଶବ୍ଦାଳଙ୍କାର ଶବ୍ଦସାପେକ୍ଷ ଓ ଅର୍ଥାଳଙ୍କାର ଅର୍ଥ ସାପେକ୍ଷ । ସାହିତ୍ୟରେ ବୈଚିତ୍ର୍ୟ ସମ୍ପାଦନ ପାଇଁ ଆଠଟି ଶବ୍ଦାଳଙ୍କାର, ପ୍ରାୟ ଶହେଟି ଅର୍ଥାଳଙ୍କାର ଓ ଗୋଟିଏ ଉଭୟାଳଙ୍କାର ର ପ୍ରଚଳନ ଓ ପ୍ରୟୋଗ ଦେଖାଯାଏ ।

ଶବରୀପା – ଶବରୀପା ଶବରପା ନାମରେ ଖ୍ୟାତ । ସେ ଜାତିରେ ଶବର ଥିବାର ତାଙ୍କର ଏପରି ନାମ ହୋଇଥିବାର ଜଣାଯାଏ । ସେ ନିଜର ଦୁଇପତ୍ନୀ ଲୋକୀ ଓ ଗୁଣୀଙ୍କ ସହିତ ସିଦ୍ଧାଚାର୍ଯ୍ୟ ନାଗାର୍ଜୁନଙ୍କ ଦ୍ୱାରା ମନ୍ତ୍ରଯାନରେ ଦୀକ୍ଷିତ ହୋଇଥିଲେ । ଲୋକୀ ଓ ଗୁଣୀଙ୍କ ଚର୍ଯ୍ୟାନାମ ଥିଲା ପଦ୍ମାବତୀ ଓ ଜ୍ଞାନବତୀ । ମହାପଣ୍ଡିତ ରାହୁଲ ସାଂକୃତ୍ୟାୟନ ତାଙ୍କୁ ଜାତିରେ କ୍ଷତ୍ରୀୟ ଭାବରେ ଓ ବିକ୍ରମଶୀଳାର ଅଧିବାସୀ ହିସାବରେ ଗ୍ରହଣ କରିଥିଲେ । ଶବରୀପା ଜଣେ ବିଶିଷ୍ଟ ପଣ୍ଡିତ ଥିଲେ । ତାଞ୍ଜୁର ତାଲିକାରେ ତାଙ୍କ ନାମରେ ଦଶପୋଟ ବଜ୍ରଯାନୀ ଶାସ୍ତ୍ରର ଉଲ୍ଲେଖ ଅଛି । ଉଡ୍‌ଡୀୟାନରେ ପୂଜିତା ଦେବୀ କରୁକୁଲ୍ଲାଙ୍କ ସମ୍ବନ୍ଧରେ ମଧ୍ୟ ସେ ଏକ ସାଧନ ରଚନା କରିଥିଲେ । ଚର୍ଯ୍ୟାଗୀତି କୋଷସ୍ଥ ୨୮ ଓ ୫୦ ସଂଖ୍ୟକ ଚର୍ଯ୍ୟାଦ୍ୱୟ ତାଙ୍କ ଦ୍ୱାରା ରଚିତ ।

ଶୁଦ୍ଧ ସଂଦେହ – ଉପମେୟ ଉପମାନର କବିଚାତୁରୀମୂଳକ ସନ୍ଦେହ ସୃଷ୍ଟିହେଲେ ସନ୍ଦେହ ଅଳଙ୍କାର ହୁଏ । କିନ୍ତୁ ଯେଉଁ ସନ୍ଦେହ ଅଳଙ୍କାର ରେ ଏ ସନ୍ଦେହର ନିରାକରଣ ହୋଇନଥାଏ, ତାହା ଶୁଦ୍ଧ ସନ୍ଦେହମୂଳକ ଅଳଙ୍କାର ହୁଏ । ଉଦାହରଣ-

ଦେଖିଲା ରମଣୀ ସମ୍ମୁଖେ ଅପୂର୍ବ
ସୁନ୍ଦର ଯୁବକ ବର
ଅଙ୍ଗବନ୍ତ କି ସେ ଅନଙ୍ଗ ଅଥବା
ନରରୂପୀ ସୁଧାକର । (ପ୍ରଣୟ ବଲ୍ଲରୀ)

ଶୃଙ୍ଖଳା – ରୀତିଯୁଗୀୟ କାବ୍ୟିକ ରୀତି । ପୂର୍ବ ପାଦର ଅନ୍ତ ପରପାଦର ଆଦ୍ୟରେ ରହିବା ରୀତିକୁ ଶୃଙ୍ଖଳା କୁହାଯାଏ । ଶୃଙ୍ଖଳା ଅନେକ ପ୍ରକାର ରହିଛି । ଯମକ ପ୍ରାନ୍ତ ଶୃଙ୍ଖଳା - ଏଥିରେ ପାଦର ଅନ୍ତ ଶବ୍ଦ ପରପାଦର ଆଦ୍ୟରେ ଦେଖାଯାଏ । ଚକ୍ରସିଂହାବଲୋକନ - ପ୍ରଥମ ପାଦର ଆଦ୍ୟରେ ଥିବା ଶବ୍ଦ ପୁଣି ପର ପାଦର ଆଦ୍ୟରେ ରହେ । ମଣ୍ଡୁକପ୍ଲୁତ ଶୃଙ୍ଖଳା - ପୂର୍ବପାଦର ଶେଷ ଶବ୍ଦ ପରପାଦରେ ରହି ଅକ୍ଷରମାନ ଛାଡ଼ି ଛାଡ଼ି ଯାଏ । ଗଙ୍ଗା ସ୍ରୋତାଧିକାର ଶୃଙ୍ଖଳା - ପ୍ରଥମ ପାଦର ପ୍ରଥମ ଅକ୍ଷର ସ୍ଥିର ଏବଂ ପାଦର ଶେଷ ସର୍ବାଙ୍ଗ ପାଦ ଶୃଙ୍ଖଳା - ପାଦର ପଦମାନଙ୍କ ଏପରି ଯୋଜନା ଥାଏ ଯେ ଶିକୁଳିରେ ବନ୍ଧାହେଲାପରି ପଦକୁପଦ ବନ୍ଧା ହୋଇଥାଏ ।

ଶୃଙ୍ଗାର- ଯାହା ମନୁଷ୍ୟକୁ ଉତ୍କର୍ଷର ଚରମ ସୀମାରେ ପହଞ୍ଚାଇ ଦେଇଥାଏ, ତାହା ଶୃଙ୍ଗାର । ପରସ୍ପର ପ୍ରତି ଭୀଷଣ ଭାବରେ ଆକୃଷ୍ଟ ହେଉଥିଲେ ମଧ୍ୟ ପ୍ରତିକୂଳ ପରିବେଶ ହେତୁ ମିଳିତ ନହୋଇପାରିଲେ ଅଯୋଗ ଶୃଙ୍ଗାର ହୁଏ । ଏହା ବିପ୍ରଯୋଗ ମିଳନର ପୂର୍ବାବସ୍ଥା । ଏହି ଅଯୋଗ ଶୃଙ୍ଗାରର ଦଶଟି ଅବସ୍ଥା ଥାଏ । ଯାହାକୁ ଦଶ କାମଦଶା କୁହାଯାଏ । ଏଗୁଡ଼ିକ ହେଲେ - ଅଭିଳାଷ, ଚିନ୍ତା, ସ୍ମୃତି, ଗୁଣକଥନ, ଉଦ୍‌ବେଗ, ପ୍ରଳାପ, ଉନ୍ମାଦ, ସୁଂନ୍ଦର, ଜଡ଼ତା ଓ ପରମ । କବିମାନେ କାବ୍ୟରେ ସମସ୍ତ ଦଶାଗୁଡ଼ିକର

ବର୍ଣ୍ଣନା କରୁଥିଲେ ମଧ ଅନ୍ତିମ ଦଶା 'ମୃତ୍ୟୁ' ବର୍ଣ୍ଣନା କରାଯାଏ ନାହିଁ, ମାତ୍ର ସୂଚନା ଥାଏ ।

**ଶୃଙ୍ଗାର ରସ** – ସ୍ଥାୟୀଭାବ ରତି (ନାୟକ ନାୟିକା ମଧ୍ୟରେ ପରସ୍ପର ପ୍ରତି ଅନୁରାଗ), (ଆଲମ୍ବନ ବିଭବ ନାୟକ ଓ ନାୟିକା), ନାୟକ ବିଷୟକ ରତି ପାଇଁ ନାୟିକା ଓ ନାୟିକା ବିଷୟକ ରତି ପାଇଁ ନାୟକ ଆଲମ୍ବନ ହୋଇଥାଏ । ଉଦ୍ଦୀପନ ବିଭବ - ଚନ୍ଦ୍ର, କୌମୁଦୀ, ବନ, ଉପବନ, ପୁଷ୍ପ, ଶୀତଳ ମନ୍ଦ ସୁଗନ୍ଧ ସମୀର, ବସନ୍ତଋତୁ । କମନୀୟ କେଳିକୁଞ୍ଜ, ସଖା, ସଖୀ, ଦୂତୀ, ଭ୍ରମର, ଗୁଞ୍ଜନ ଶବ୍ଦ, ଅନୁଭବ- ପରସ୍ପର ପ୍ରତି ଅନୁରାଗପୂର୍ଣ୍ଣ ଦୃଷ୍ଟିପାତ, କଟାକ୍ଷ, ଅଧୋବଦନ, ସ୍ମିତହାସ୍ୟ । ଭେଦ - ସଂଯୋଗ, ବିପ୍ରଯୋଗ, ଅଯୋଗ । ପରସ୍ପର ଅନୁରକ୍ତି ନାୟକ ନାୟିକାର ମିଳନକୁ ସଂଯୋଗ ଶୃଙ୍ଗାର ଅଥବା ସମ୍ଭୋଗ ଶୃଙ୍ଗାର କୁହାଯାଏ । ନାୟକ ନାୟିକା ମଧ୍ୟରେ ଉତ୍କୃଷ୍ଟ ପ୍ରେମର ସମସ୍ତ ନିଦର୍ଶନ ଥିଲେ ମଧ ଯେଉଁଠି ପ୍ରିୟ ସମାଗମ ହୁଏନାହିଁ, ସେଠାରେ ବିପ୍ରଯୋଗ ବା ବିପ୍ରଲମ୍ଭ ହୁଏ ।

**ଶ୍ରବ୍ୟକାବ୍ୟ** – ଶ୍ରବଣ ଓ ଦର୍ଶନର ପ୍ରାଧାନ୍ୟ ଦୃଷ୍ଟିରୁ ସମଗ୍ର କାବ୍ୟ ସାହିତ୍ୟକୁ ଦୁଇ ଭାଗରେ ବିଭକ୍ତ କରାଯାଏ ଯଥା - ଶ୍ରବ୍ୟକାବ୍ୟ ଓ ଦୃଶ୍ୟକାବ୍ୟ । ଶ୍ରବ୍ୟକାବ୍ୟ ହେଉଛି ଶ୍ରବଣ ଯୋଗ୍ୟ ଯାହାକୁ ପଢ଼ି ଓ ଶୁଣି କାବ୍ୟାନନ୍ଦ ଉପଲବ୍ଧ କରାଯାଏ । ନାଟକ ତଥା ଅଭିନୟ ଯୋଗ୍ୟ କାବ୍ୟ ବ୍ୟତୀତ ଅନ୍ୟ ସବୁ କାବ୍ୟ ଏହି ଶ୍ରେଣୀର ଅନ୍ତର୍ଗତ । ପୁଣି ଶ୍ରବ୍ୟକାବ୍ୟ ତିନିଭାଗରେ ବିଭକ୍ତ । (୧) ମହାକାବ୍ୟ, (୨) ଖଣ୍ଡକାବ୍ୟ (୩) ମୁକ୍ତକ । ରଚନାତ୍ମକ କଳାର ବୈଶିଷ୍ଟ୍ୟ ହେତୁ ସମସ୍ତ ଶ୍ରବ୍ୟକାବ୍ୟ ଗଦ୍ୟ କିମ୍ବା ପଦ୍ୟରେ ମଧ ବିଭକ୍ତ ।

**ଶାକ୍ତ ସାହିତ୍ୟ** – ଶକ୍ତି ଉପାସନା ଓ ଦେବୀପୂଜାକୁ ନେଇ ଶାକ୍ତ ସାହିତ୍ୟ ରଚନା ହୋଇଥାଏ । ଲୋକ ସାହିତ୍ୟ ଦୃଷ୍ଟିରୁ ଓଷା ବ୍ରତ, ମନ୍ତ୍ର ଯନ୍ତ୍ର, ଲୋକଗୀତ, ପାଟୁଆ ନାଚ, ଦଣ୍ଡନାଚ ଗୀତ, ଚଇତିଘୋଡ଼ା ନାଚ ଆଦି ଶାକ୍ତ ସାହିତ୍ୟର ଅନ୍ତର୍ଭୁକ୍ତ । ଶିଷ୍ଟ ସାହିତ୍ୟ କ୍ଷେତ୍ରରେ ଚର୍ଯ୍ୟାପଦ, ପୁରାଣ, ଜ୍ଞାନମିଶ୍ରା ଭକ୍ତି ସାହିତ୍ୟ, କାବ୍ୟ, ଗୀତିକବିତା, ଗଦ୍ୟ ଇତ୍ୟାଦି ଓଡ଼ିଆ ଶାକ୍ତସାହିତ୍ୟ ବିସ୍ତାରିତ ।

**ଶାବ୍ଦୀ ବ୍ୟଞ୍ଜନା** – ଶବ୍ଦ ଓ ଅର୍ଥରେ ବ୍ୟାପାର ବ୍ୟଞ୍ଜନାରେ ନିହିତ ଥାଏ । ଏଣୁ ବ୍ୟଞ୍ଜନାର ଦୁଇଟି ରୂପ - ଶାବ୍ଦୀ ବ୍ୟଞ୍ଜନା ଓ ଆର୍ଥୀ ବ୍ୟଞ୍ଜନା । ଯେଉଁଠି ବ୍ୟଙ୍ଗାର୍ଥର ପ୍ରକାଶିତ ହେବାର ଶବ୍ଦର ଭୂମିକା ଗୁରୁତ୍ୱପୂର୍ଣ୍ଣ ସେଠାରେ ଶାବ୍ଦୀ ବ୍ୟଞ୍ଜନା ହୁଏ । ଶାବ୍ଦୀ ବ୍ୟଞ୍ଜନା ଦୁଇ ପ୍ରକାର (୧) ଅଭିଧାମୂଳା ଶାବ୍ଦୀବ୍ୟଞ୍ଜନା (୨) ଲକ୍ଷଣାମୂଳା ଶାବ୍ଦୀବ୍ୟଞ୍ଜନା ।

**ଶାନ୍ତରସ** - ସାହିତ୍ୟଶାସ୍ତ୍ରଗତ ନବରସ ମଧ୍ୟରୁ ଅନ୍ୟତମ । ଏହାର ସ୍ଥାୟୀଭାବ ଶମ(ଚିତ୍ତଶାନ୍ତି) ଅଥବା ନିର୍ବେଦ । ସଂସାରର ଅସାରତା, ଅନିତ୍ୟତା ଓ କ୍ଷଣଭଙ୍ଗୁରତା ଆଲମ୍ବନ । ସତ୍‌ସଙ୍ଗ, ପୂଣ୍ୟଶ୍ରମ, ଦେବସ୍ଥାନ ଦର୍ଶନ ଓ ତୀର୍ଥଯାତ୍ରା ଇତ୍ୟାଦି ଉଦ୍ଦୀପନ । ରୋମାଞ୍ଚ, ଗଦ୍‌ଗଦ୍ ସ୍ୱର, ଅଶ୍ରୁବିର୍ଷଣ, ପଶ୍ଚାତାପ ଇତ୍ୟାଦି ଅନୁଭାବ । ହର୍ଷ, ଧୃତି, ସ୍ମରଣ ଆଦି ସଂଚାରୀ ଭାବ । ଉଦାହରଣ-

ଧୂଳିର ଏ ମର କଳେବର
ଅହୋମାନବ ଜୀବନ କି ଅଦ୍‌ଭୁତ ଉଦ୍‌ଭବନ
ବରଦେ ଅମର ଆତ୍ମା ଦିବ୍ୟ ସୌନ୍ଦର୍ଯ୍ୟରେ ।

**ଶାସ୍ତ୍ର** – ତତ୍ତ୍ୱ, ଉପଦେଶ ତଥା ସାର୍ବଜନୀନ ମୂଲ୍ୟବୋଧଗତ ବଳିଷ୍ଠ ରଚନାକୁ ଶାସ୍ତ୍ର ଆଖ୍ୟା ଦିଆଯାଇଥାଏ । ଜୀବନର ଧାର୍ମିକ, ସାମାଜିକ ତଥା ଆଚାରବିଚାର ର ସୁଶୃଙ୍ଖଳ ତଥା ନୀତି ନିର୍ଦ୍ଧାରଣ କ୍ଷେତ୍ରରେ 'ଶାସ୍ତ୍ର' ପ୍ରତ୍ୟେକ ଜାତିର ସାରସ୍ୱତ ଅବଦାନ ଭାବେ ଗୃହୀତ ହୋଇଥାଏ ।

**ଶାସ୍ତ୍ରକବି** – ପ୍ରାଚୀନ ଭାରତୀୟ ସାହିତ୍ୟ ସମାଲୋଚକ ରାଜଶେଖର କବିମାନଙ୍କୁ ତିନି ଭାଗରେ ବିଭକ୍ତ କରିଛନ୍ତି ଯଥା - ଶାସ୍ତ୍ରକବି, କାବ୍ୟକବି ଓ ଉଭୟକବି । ଶାସ୍ତ୍ର କବି ନିଜ କବିତାରେ ଶାସ୍ତ୍ରୀୟ ବିଷୟର ରସାଳଚିତ୍ର ଅଙ୍କନ କରେ ଏବଂ କାବ୍ୟକବି ତର୍କ, କର୍କଶ ଶାସ୍ତ୍ରୀୟ ତତ୍ତ୍ୱଗୁଡ଼ିକ ସହିତ ସାବଲୀଳ ଉପଯୋଗ କରି କାବ୍ୟ ବୈଚିତ୍ର୍ୟ ସମ୍ପାଦନ କରେ ।

**ଶିଶୁବେଦ** – ଓଡ଼ିଆ ନାଥ ଧର୍ମର ପ୍ରଥମ ଗ୍ରନ୍ଥ ରୂପେ ଶିଶୁବେଦ ଏକ ଯୋଗଭିତ୍ତିକ ଗ୍ରନ୍ଥ । ଏହାର ରଚୟିତା ଗୋରକ୍ଷନାଥ । ମାତ୍ର ପଚିଶଗୋଟି ଶ୍ଳୋକର ସମାହାରରେ ରଚିତ ଏ ଗ୍ରନ୍ଥଟିର ଗୋଟି ଶ୍ଳୋକ ଓ ପରେ ତା'ର ଗଦ୍ୟରୂପ କ୍ରମରେ ଲିଖିତ । ଏହାର ଭାଷା ବିଶେଷତଃ ଗଦ୍ୟାଂଶର ଭାଷା । କେହି କେହି ଗବେଷକ ଏହାକୁ ସାରଳା ଯୁଗର ପୂର୍ବବର୍ତ୍ତୀ ରଚନା ଭାବରେ ମତ ଦେଉଥିଲେ ମଧ୍ୟ, ଅନ୍ୟ କେତେକ ଏହା ପଞ୍ଚସଖା ଯୁଗ ଅର୍ଥାତ୍ ଷୋଡ଼ଶ ଶତାବ୍ଦୀର ଗ୍ରନ୍ଥ ବୋଲି ମତ ଦିଅନ୍ତି । ଶିଶୁବେଦ ଶୂନ୍ୟ ଦର୍ଶନର ଏକ ଆଦିଗ୍ରନ୍ଥ ।

**ଶିକ୍ଷା**– ଏହା ବୈଦିକ ସାହିତ୍ୟର ଅନ୍ତର୍ଭୁକ୍ତ । ପ୍ରତ୍ୟେକ ବେଦରେ ସ୍ୱତନ୍ତ୍ର ଶିକ୍ଷା ରହିଥାଏ । ସେଗୁଡ଼ିକ ହେଲା - ପାଣିନୀୟ ଶିକ୍ଷା, ଯାଜ୍ଞବଲକ୍ୟ ଶିକ୍ଷା, ବାଶିଷ୍ଠୀ ଶିକ୍ଷା, କାତ୍ୟାୟନୀ ଶିକ୍ଷା, ପାରଶରୀ ଶିକ୍ଷା, ମାଣ୍ଡଲ୍ୟ ଶିକ୍ଷା, ଅମୋଘାନନ୍ଦିନୀ ଶିକ୍ଷା, ମାଧ୍ୟଦିନୀ ଶିକ୍ଷା, ବର୍ଣ୍ଣରତ୍ନ ପ୍ରଦୀପିକା, କେଶବୀ ଶିକ୍ଷା, ମଲ୍ଲଶର୍ମ ଶିକ୍ଷା, ସ୍ୱରାଙ୍କୁଶ ଶିକ୍ଷା, ଷୋଡ଼ଶଶ୍ଳୋକ

ଶିକ୍ଷା, ଅପସାନ ନିର୍ଣ୍ଣୟ ଶିକ୍ଷା, ସ୍ୱରଭକ୍ତି ଲକ୍ଷଣ ଶିକ୍ଷା, ପ୍ରତିଶିଶ୍ୟ ଶିକ୍ଷା, ପ୍ରଦୀପ ଶିକ୍ଷା, ନାରଦୀୟ ଶିକ୍ଷା, ଗୌତମୀ ଶିକ୍ଷା, ଲୋମକୀ ଶିକ୍ଷା, ମାଣ୍ଡୁକ୍ୟ ଶିକ୍ଷା, । ଏତଦ୍ ବ୍ୟତୀତ ପଚାଶଟି ଶିକ୍ଷାଗ୍ରନ୍ଥର ପାଣ୍ଡୁଲିପି ମିଳିଛି । ଶିକ୍ଷାର ଅଙ୍ଗ ଛଅଟି - ବର୍ଣ୍ଣ, ସ୍ୱର, ମାତ୍ରା, ବଳ, ସାମ ଓ ସନ୍ତାନ ।

ଶିକ୍ଷାପ୍ରଦ – କାବ୍ୟକଳାର ବିଶେଷ ପରିଚୟ ହେଉଛି ଶିକ୍ଷା ଓ ଆନନ୍ଦର ମଧୁର ସମନ୍ୱୟ । ନୀତିଗର୍ଭ ସାହିତ୍ୟ ସୃଷ୍ଟିର ମୌଳିକ ଲକ୍ଷ୍ୟହେଲା ଶିକ୍ଷାଦେବା, ଉପଦେଶ ଦେବା । ଶିକ୍ଷା ମିଳୁଥିବା ସାହିତ୍ୟ କିନ୍ତୁ ନୀତିଗର୍ଭ ସାହିତ୍ୟ ନୁହେଁ । ଯେଉଁ ସାହିତ୍ୟ ସୃଷ୍ଟି ସତ୍ୟ ଶିବ ସୁନ୍ଦରର ଚିତ୍ରଣ କରି ସମାଜକୁ ଉପଯୁକ୍ତ ଦିଗ୍‌ଦର୍ଶନ ଦେଇଥାଏ, ତାହାକୁ ଶିକ୍ଷାପ୍ରଦ ସାହିତ୍ୟର ପର୍ଯ୍ୟାୟଭୁକ୍ତ କରାଯାଇଥାଏ ।

ଶିଶୁ ସାହିତ୍ୟ – ଶିଶୁମାନଙ୍କ ଉପଯୋଗୀ ଗଳ୍ପ, କବିତା, ରଚନା ପ୍ରଭୃତିକୁ ଶିଶୁ ସାହିତ୍ୟ କୁହାଯାଏ । ଭାରତରେ ୫ ବର୍ଷରୁ ୧୫ ବର୍ଷ ପର୍ଯ୍ୟନ୍ତ ବୟସର ପିଲାମାନଙ୍କୁ ଶିଶୁ ବୋଲି ଧରାଯାଇଥାଏ । ତେବେ ଶିଶୁ ସାହିତ୍ୟରେ ଶିଶୁ ପାଠ୍ୟକ୍ରମ, ଶିଶୁଗଳ୍ପ, ଶିଶୁ କବିତା, ବିଜ୍ଞାନ କାହାଣୀ ଆଦି ରହିଥାଏ । ଶିଶୁମାନଙ୍କ ମନସ୍ତତ୍ତ୍ୱ, ଭାଷା, ଭାବ, ଜ୍ଞାନକୁ ସ୍ୱଚ୍ଛ, ସୁଗଠିତ କରି ଗଢ଼ିବାକୁ ଯେଉଁ ସାହିତ୍ୟ ସୃଷ୍ଟି ହୋଇଥାଏ ତାହା ବାସ୍ତବିକ ଶିଶୁ ସାହିତ୍ୟ ପର୍ଯ୍ୟାୟଭୁକ୍ତ ।

ଶ୍ରୁତ୍ୟାନୁପ୍ରାସ – ଏହା ଶବ୍ଦାଳଙ୍କାର ଅନ୍ତର୍ଭୁକ୍ତ ଅନୁପ୍ରାସର ଏକ ବିଭାଗ । ଉଚ୍ଚାରଣ ସ୍ଥାନ ଦୃଷ୍ଟିରୁ ସମଜାତୀୟ କଣ୍ଠ୍ୟ, ତାଲବ୍ୟ ଆଦି ବ୍ୟଞ୍ଜନା ବର୍ଣ୍ଣମାନଙ୍କର ଏକାଧିକାର ଆବୃତ୍ତିକୁ ଶ୍ରୁତ୍ୟାନୁପ୍ରାସ କୁହାଯାଏ ।

''ଆନ ଆନନ୍ଦକୁ ଲକ୍ଷ୍ୟ ଦେବାର ନୋହେ
ଜନ ଜନକ ଜନନୀ ମନକୁ ମୋହେ । (ବିଦଗ୍ଧଚିନ୍ତାମଣି)

ଶ୍ରୁତି – ହିନ୍ଦୁମାନଙ୍କ ଧର୍ମଗ୍ରନ୍ଥ ଦୁଇ ଭାଗରେ ବିଭକ୍ତ ଯଥା- ଶ୍ରୁତି ଓ ସ୍ମୃତି । ବେଦ, ବେଦର ବ୍ରାହ୍ମଣ ଭାଗ ଓ ଉପନିଷଦ, ବେଦାନ୍ତ ଶ୍ରୁତିର ଅନ୍ତର୍ଗତ । ଅନ୍ୟ ଶାସ୍ତ୍ରମାନଙ୍କୁ ସ୍ମୃତି କୁହାଯାଏ ।

ଶ୍ରୁତିକଟୁ – ସାହିତ୍ୟ ତତ୍ତ୍ୱରେ ପଦଦୋଷର ଅନ୍ତର୍ଗତ । ମନୋହର କବିତା ରଚନା ପାଇଁ କବିତାରେ ମଧୁରତା ସଂପାଦନା କରିବାପାଇଁ ନିର୍ଦ୍ଦେଶ ଦେଇଥିଲେ ସୁଦ୍ଧା କେତେକ ସ୍ଥଳରେ କବିର ଶବ୍ଦଯୋଜନା ମଧୁରତା ସମ୍ପାଦନାର ବିରୋଧି ହେଲେ ତାହା 'ଶ୍ରୁତିକଟୁ' ଦୋଷ ବୋଲି ବିବେଚିତ ହୁଏ ।

''ପ୍ରାଣନାଥଙ୍କର ପ୍ରେମ ଭରା ଭରା ମଧୁମୟ ସମ୍ଭାଷଣ
ହୃଦଫୋନଗ୍ରାଫେ ପରବେଶି ଆପେ ତୋଳୁଛି ନିର୍ମଳ ସ୍ୱନ ।
(ତପସ୍ୱିନୀ)

ଶୁଦ୍ଧାଲକ୍ଷଣା – ସାହିତ୍ୟତତ୍ତ୍ୱରେ ଲକ୍ଷଣାର ବହୁପ୍ରକାର ଭେଦ ପରିକଳ୍ପନା କରାଯାଇଥିଲେ ମଧ ମମ୍ମଟଭଟ୍ଟ ତାହାକୁ ଛ'ଗୋଟି ଶ୍ରେଣୀରେ ବିଭକ୍ତ କରିଛନ୍ତି । ପ୍ରଥମେ ଶୁଦ୍ଧା ଓ ଗୌଣୀ ଭେଦରେ ଲକ୍ଷଣା ଦୁଇପ୍ରକାର । ଶୁଦ୍ଧାଲକ୍ଷଣା – ଉପାଦାନ ଲକ୍ଷଣା ଓ ଲକ୍ଷଣାଲକ୍ଷଣା ଭେଦରେ ପୁଣି ଦୁଇପ୍ରକାର । ପୁଣି ପ୍ରତ୍ୟେକ ସରୋପା ଓ ସାଧବସନା ଭେଦରେ ଦୁଇ ଶ୍ରେଣୀରେ ବିଭକ୍ତ । ସାଦୃଶ୍ୟ ବ୍ୟତୀତ ବାଚାର୍ଥ ଓ ଲକ୍ଷ୍ୟାର୍ଥ ମଧ୍ୟରେ ଅନ୍ୟ ଯେକୌଣସି ସମ୍ବନ୍ଧ ଥାଇ ଲାକ୍ଷଣିକଶବ୍ଦ ପ୍ରଯୁକ୍ତ ହେଲେ 'ଶୁଦ୍ଧାଲକ୍ଷଣା' ହୁଏ ।

ଶ୍ଳେଷ – ଏକାଧିକ ଅର୍ଥବୋଧକ ଶବ୍ଦ ଥରେ ମାତ୍ର ବ୍ୟବହୃତ ହୋଇ ଭିନ୍ନ ଭିନ୍ନ ଅର୍ଥ ପ୍ରକାଶ କଲେ ଶ୍ଳେଷାଳଙ୍କାର ହୁଏ । ଏହା ତିନି ପ୍ରକାର – ସଭଙ୍ଗ, ଅଭଙ୍ଗ ଓ ସଭଙ୍ଗାଭଙ୍ଗ । ଶବ୍ଦକୁ ଭାଙ୍ଗି ଭିନ୍ନ ଭିନ୍ନ ଅର୍ଥକଲେ ସଭଙ୍ଗଶ୍ଳେଷ ଓ ଶବ୍ଦକୁ ନଭାଙ୍ଗି ଭିନ୍ନ ଭିନ୍ନ ଅର୍ଥକଲେ ଅଭଙ୍ଗ ଶ୍ଳେଷ ଏବଂ ସେ ଦୁଇଟିର ସମ୍ମିଶ୍ରଣରେ ସଭଙ୍ଗା ଭଙ୍ଗ ଶ୍ଳେଷ ହୁଏ । ଉଦାହରଣ –

ବାବୁନାକଶିରୀ ଦାନ ଯୋଗ୍ୟଯୋଖାକୁ
ବିହର କାନନ କରି ଆଲିଙ୍ଗନକୁ ।        (ବୈଦେହୀଶବିଳାସ)

ଶ୍ଳେଷ ବକ୍ରୋକ୍ତି – ବକ୍ତାଦ୍ୱାରା ଗୋଟିଏ ଅର୍ଥରେ ବ୍ୟବହୃତ ହୋଇଥିବା ଶବ୍ଦ ଶ୍ରୋତା ଆଉ ଗୋଟିଏ ଅର୍ଥରେ ଗ୍ରହଣ କଲେ ବକ୍ରୋକ୍ତି ଅଳଙ୍କାର ହୁଏ । ଏହା ଦୁଇପ୍ରକାର (୧) ଶ୍ଳେଷ ବକ୍ରୋକ୍ତି (୨) କାକୁ ବକ୍ରୋକ୍ତି । ଶ୍ଳେଷ ବକ୍ରୋକ୍ତିରେ ବକ୍ତାର ଅଭିପ୍ରେତ ଅର୍ଥ ଦ୍ୟୋତକ ଶବ୍ଦକୁ ଶ୍ରୋତା ଭିନ୍ନ ଅର୍ଥରେ ଗ୍ରହଣ କରେ । ଉଦାହରଣ –

''ଶ୍ରୀକୃଷ୍ଣ ବୋଇଲେ ଗୋଳ ନକର ସୁନ୍ଦରୀ
ମୁହିଁ ଯେ ମାଧବ ଆସିଅଛି ତୋର ପୁରୀ
ରାଧିକା ବୋଇଲେ ତୁ ହୋ ହୋଇଲୁକି ବାଇ
ବସନ୍ତ କାଳକୁ ସିନା ମାଧବ ଯେ କହି ।

ଶ୍ଳେଷ ଅଳଙ୍କାର – ଯେଉଁଠାରେ ଥରେମାତ୍ର ବ୍ୟବହାର ହୋଇ ଗୋଟିଏ ଶବ୍ଦକୁ ଭିନ୍ନାର୍ଥ ଅର୍ଥାତ୍ ଦୁଇ ବା ଅନେକ ଅର୍ଥ ପ୍ରକାଶ ପାଏ, ସେଠାରେ ଶ୍ଳେଷ ଅଳଙ୍କାର ହୁଏ । ଯେଉଁ ଶବ୍ଦ ଏକାଧିକ ଅର୍ଥ ପ୍ରକାଶ କରୁଥାଏ, ତାହାକୁ ଶ୍ଳିଷ୍ଟ ଶବ୍ଦ କୁହାଯାଏ । ଶ୍ଳେଷାଳଙ୍କର ୩ ପ୍ରକାର ଯଥା - ସଭଙ୍ଗ, ଅଭଙ୍ଗ, ଅଭଙ୍ଗାଭଙ୍ଗ ବା ସଭଙ୍ଗାଭଙ୍ଗ ।

ଅଭଙ୍ଗ ଶ୍ଳେଷ – ଯେଉଁଠାରେ ବ୍ୟବହୃତ ଶ୍ଳିଷ୍ଟ ଶବ୍ଦ (ଏକାଧିକ ଅର୍ଥ ପ୍ରକାଶ କରୁଥିବା ଶବ୍ଦ) ଖଣ୍ଡିତ ନ ହୋଇ, ଏକାଧିକ ଅର୍ଥ ପ୍ରକାଶ କରି ସଂପୃକ୍ତ ପଦର ଏକାଧିକ ଅର୍ଥ

ପ୍ରକାଶ କରେ, ସେଠାରେ ଅଭଙ୍ଗ ଶ୍ଳେଷ ହୁଏ । ଉଦାହରଣ -

''ବିଭାଜିତ ବାରି ଝରି ତା'ର ଭବ ଯହିଁ
ବିଶୋଷିତ ଜ୍ୟୋତିର୍ବିଦ ଉପପତି ତହିଁ ।'' (ବୈଦେହୀଶ ବିଳାସ)

ସଭଙ୍ଗ ଶ୍ଳେଷ – ଯେଉଁ ରଚନାରେ ବ୍ୟବହୃତ ପଦ ସମୂହର ଗୋଟିଏ ଅର୍ଥ ପ୍ରକାଶ ପାଏ, ଅଥଚ ଉକ୍ତ ପଦମାନଙ୍କର ଅକ୍ଷରଗୁଡ଼ିକୁ ଭାଙ୍ଗି ନୂତନ ପଦ ସମୁହ ପ୍ରସ୍ତୁତ କଲେ (ଏହି ପ୍ରକିୟାରେ କୌଣସି ଅକ୍ଷରକୁ ବାଦ ଦିଆଯାଏ ନାହିଁ) ଏକ ନୂତନ ଅର୍ଥ ବା ଭାବ ପ୍ରକାଶ ପାଏ, ତାହାକୁ ସଭଙ୍ଗ ଶ୍ଳେଷ କୁହାଯାଏ । ଉଦାହରଣ -

ପାଣି ଗ୍ରହଣରୁ ବୁଝିଅଛୁଁ କାଲି
ସ୍ୱଭାବେ ତୁମ୍ଭେ ଉଦାର
ବାହୁଲ୍ୟ ମାତର କହୁଅଛୁ ଆମ୍ଭେ
ମୁନିକନ୍ୟା ହେ ଉଦାର । (ପ୍ରଣୟ ବଲ୍ଲରୀ)

ସଭଙ୍ଗାଭଙ୍ଗ ଶ୍ଳେଷ – ଯେଉଁଠାରେ କୌଣସି ରଚନାରେ ସଭଙ୍ଗ ଏବଂ ଅଭଙ୍ଗ ଉଭୟ ଶ୍ଳେଷ ଥାଏ ଓ ଏକାଧିକ ଅର୍ଥ ବା ଭାବ ପ୍ରକାଶ କରୁଥାଏ ତାହାକୁ ସଭଙ୍ଗାଭଙ୍ଗ ଶ୍ଳେଷ କୁହାଯାଏ । ଉଦାହରଣ -

''ବାବୁ ନାକଶିରୀ ଦାନ ଯୋଗ୍ୟ ଯୋଷାକୁ
ବିହର କାନ ନକରି ଆଲିଙ୍ଗନକୁ ।'' (ବୈଦେହୀଶ ବିଳାସ)

ଶୈବ ସାହିତ୍ୟ – ଶିବ ଉପାସନା ଓ ଭକ୍ତି ଚେତନା ସମ୍ବଳିତ ସାହିତ୍ୟ । ଶିବୋପାସାନା କହିଲେ ଶିବଙ୍କ ପରିବାର ଅମ୍ବା, ଗଣେଶ, କାର୍ତ୍ତିକ, ବୃଷଭ, ସର୍ପ ଆଦିକୁ ବୁଝାଏ । ଋକ୍‌ବେଦରେ ଅଙ୍ଗୀରସ, ବଶିଷ୍ଠମାନଙ୍କ ସ୍ତୋତ୍ରରେ ରୁଦ୍ରଙ୍କ ପରିଚୟ ପ୍ରଦତ୍ତ ହୋଇଛି । ଯଜୁର୍ବେଦରେ ଶତରୁଦ୍ରୀୟ, ଅଥର୍ବବେଦରେ ପଶୁପତି ସୂକ୍ତ, ତୈତିରୀୟରେ ଆରଣ୍ୟକ, ଶ୍ୱେତାଶ୍ୱରେ ଉପନିଷଦ, ମହାଭାରତରେ ଶୈବମତର ବିଶେଷ ଆଲୋଚନା ରହିଛି । ଅଷ୍ଟାଦଶ ପୁରାଣ ମଧ୍ୟରୁ ଦଶଟି ପୁରାଣରେ ଶିବତତ୍ତ୍ୱ, ଶିବମହିମା ବର୍ଣ୍ଣିତ ହୋଇଛି । ସେଗୁଡ଼ିକ ହେଲା - ଶୈବ, ସ୍କନ୍ଦ, କୂର୍ମ, ବାମନ, ବରାହ, ଭବିଷ୍ୟ, ମତ୍ସ୍ୟ, ମାର୍କେଣ୍ଡେୟ ଓ ବ୍ରହ୍ମାଣ୍ଡ । ଭାଗବତ ଓ ମାର୍କେଣ୍ଡେୟ ପୁରାଣର ରୁଦ୍ର ସର୍ଗରେ ରୁଦ୍ର ଅର୍ଦ୍ଧନାରୀଶ୍ୱର ରୂପରେ ସଂସାରର ସ୍ରଷ୍ଟା ହୋଇଛନ୍ତି ।

ଶୈବମତ ପରବର୍ତ୍ତୀ ସମୟରେ ଅନେକ ସଂପ୍ରଦାୟ ସୃଷ୍ଟି କରିଛି । ଯଥା- ପାଶୁପତ ମତ, ସିଦ୍ଧାନ୍ତ ମତ, ବୀରଶୈବମତ, ରାସେଶ୍ୱର ମତ ଓ ନାଥମତ । ଓଡ଼ିଆ ସାହିତ୍ୟରେ ବତ୍ସାଦାସଙ୍କ କଳସା ଚଉତିଶା, ସାରଳା ଦାସଙ୍କ ଚଣ୍ଡୀପୁରାଣ, ମହାଭାରତ, ଅବଧୂତସ୍ୱାମୀଙ୍କ ରୁଦ୍ରସୁଧାନିଧି, ସୋମନାଥ ବ୍ରତକଥା, ନୀଳାମ୍ବର ଦାସଙ୍କ ରୁଦ୍ରସୃଷ୍ଟି,

ଯଶୋବନ୍ତ ଦାସଙ୍କ ସ୍ୱରୋଦୟ, ବ୍ରଜନାଥ ବଡ଼ଜେନାଙ୍କ ଅମ୍ବିକାବିଳାସ କାବ୍ୟରେ ଶିବଙ୍କ ମହିମା ବର୍ଣ୍ଣିତ ହୋଇଛି ।

ଶୈଳୀ– ରଚନା ଭଙ୍ଗୀ । କବିର ମୌଳିକ ବ୍ୟକ୍ତିତ୍ୱର ପ୍ରକାଶ ହେଉଛି ଶୈଳୀ । ଲେଖକ ଗୋଟିକେ ପ୍ରକାଶ ଭଙ୍ଗୀ ଗୋଟିଏ । ଶୈଳୀ ଲେଖକର ବ୍ୟକ୍ତିତ୍ୱର ପରିଚୟ । ଶୈଳୀର ପୂର୍ଣ୍ଣ ପରିଚୟ ହେଉଛି ବିଷୟବସ୍ତୁ । ଲେଖକର ବ୍ୟକ୍ତିତ୍ୱ ତାର ସଂପର୍କ, ଘଟଣା, ଚରିତ୍ର, ପରିସ୍ଥିତି ଆଦିକୁ ପ୍ରଭାବିତ କରିଥାଏ । ତେବେ ଶୈଳୀ ବ୍ୟକ୍ତି ଓ ନୈର୍ବ୍ୟକ୍ତିତ୍ୱର ସମନ୍ୱୟକୁ ବୁଝାଏ ।

ଶୋକଗୀତ – ଅଳଙ୍କାର ଶାସ୍ତ୍ର ଅନୁସାରେ ଶୋକ, କରୁଣ ରସର ସ୍ଥାୟୀଭାବ ବୋଲି କଥିତ । ବିଶ୍ୱନାଥ କବିରାଜଙ୍କ ମତରେ ପ୍ରିୟ ବସ୍ତୁର ନାଶ ଜନିତ ଚିତ୍ତରେ ବିକଳତାକୁ ଶୋକ କୁହାଯାଏ । ଓଡ଼ିଆ ସାହିତ୍ୟରେ ପ୍ରିୟଜନ ନିଧନ ଓ ବିଭବ ବିନାଶ ପାଇଁ ଯେଉଁ ଗୀତ ରଚିତ ହୋଇଥିଲା ତାହା ହିଁ ଶୋକଗୀତ ।

ଇଂରାଜୀ ସାହିତ୍ୟରେ ଏଲିଜି ଶୋକଗୀତର ପ୍ରତିଶବ୍ଦ । ଏହା ସନେଟ୍ ଭଳି କୌଣସି ନିର୍ଦ୍ଦିଷ୍ଟ କାବ୍ୟରୀତିରେ ରଚିତ ହୁଏନାହିଁ । ଗ୍ରୀକ୍ Elegos ଶବ୍ଦରୁ Elegy ଶବ୍ଦର ଉତ୍ପତ୍ତି । ଇଂରାଜୀ ସାହିତ୍ୟରେ କଥିତ ଅଛି "Elegy, in ancient Greece, a poem written in elegiac couplets, sung to the accompaniment of the flute. Its themes included martial and convivial subject, laments and epitaph in which dead spoke in the first person, xxx a mournful lyric whose theme is either death in general or death of a specific person.

- The Readers Companion to World Literature.

ଶ୍ଳୋକ – ସଂସ୍କୃତ ପଦ ଗୁଡ଼ିକ ଶ୍ଳୋକ ନାମରେ କଥିତ ।

ଶୂନ୍ୟବାଦ – ଶୂନ୍ୟବାଦ ସମସ୍ତ ପ୍ରାଚୀନ ଧର୍ମ ବିଶ୍ୱାସରେ ରହିଛି । ଏହା ରହସ୍ୟାତ୍ମକ ଓ ଆଧିଭୌତିକ କଳ୍ପନା । ବୌଦ୍ଧ ମହାଯାନୀ ନାଗାର୍ଜ୍ଜୁନଙ୍କ ମତରେ ଶୂନ୍ୟ ଏପରି ଏକ ସତ୍ ଯାହା ସତ୍, ଅସତ୍, ସତ୍ ସତ୍ ଓ ଅସଦ୍‌ସଦ୍‌ର ବିଲକ୍ଷଣ ଓ ଅନିର୍ବଚନୀୟ । ନାଗାର୍ଜ୍ଜୁନଙ୍କ ମତରେ ଶୂନ୍ୟର ଚାରୋଟି ଅବସ୍ଥା । ଶୂନ୍ୟ, ଅତିଶୂନ୍ୟ, ମହାଶୂନ୍ୟ ଓ ସର୍ବଶୂନ୍ୟ । ନାଥ ଶିବତତ୍ତ୍ୱ ଶୂନ୍ୟର ପାଞ୍ଚଟି ଅବସ୍ଥା - ଆକାଶ, ତାରାକାଶ, ମହାକାଶ, ତତ୍ତ୍ୱାକଶ ଓ ସୂର୍ଯ୍ୟାଂକାଶ । ସାରଳା ସାହିତ୍ୟରେ ଶୂନ୍ୟ ହେଲା - ଶୂନ୍ୟ, ମହାଶୂନ୍ୟ, ନିରାକାରଶୂନ୍ୟ, ପରମ, ନିରଲମ୍ବ ଓ ମହାଶୂନ୍ୟ । ଶୂନ୍ୟର ସାଙ୍କେତିକ ଚିହ୍ନ ହେଉଛି ଏକ ଗାଣିତିକ ଚିହ୍ନ ( ୦ ) ଯାହାର ମୂଲ୍ୟ ଅସ୍ତି - ନାସ୍ତି । ସଂଖ୍ୟାର ପରେ ରହିଲେ ମୂଲ୍ୟ ଶବ୍ଦରେ, ପୂର୍ବରେ ରହିଲେ କିଛି ନାହିଁ । ବିଜ୍ଞାନରେ କ୍ୱାଣ୍ଟମ ଥିଓରୀ ର ଶୂନ୍ୟ ସମ୍ବନ୍ଧରେ ବିଶେଷ

ଓଡ଼ିଆ ପଞ୍ଚସଖା ସାହିତ୍ୟରେ ଅଣାକାର, ନିରାକାର ବ୍ରହ୍ମ, ସଗୁଣ ନିର୍ଗୁଣ ଚେତନା, ସୃଷ୍ଟି ରହସ୍ୟରେ ଶୂନ୍ୟବାଦୀ ଚେତନାର ବ୍ୟାପକ ପରିପ୍ରକାଶ ଘଟିଛି । ନାଥ ସଂପ୍ରଦାୟ ଓଡ଼ିଆ ସାହିତ୍ୟର ବୌଦ୍ଧ ଶୂନ୍ୟବାଦରେ ଗଣର ସାଧକ ଭାବରେ ଦେଖାଦେଇଥିଲେ ଓ ଶୂନ୍ୟବାଦକୁ ଭିତ୍ତିକରି ସାହିତ୍ୟ ସୃଷ୍ଟି କଲେ । ପରବର୍ତ୍ତୀ ସମୟରେ ମହିମା ସାହିତ୍ୟରେ ଶୂନ୍ୟବାଦର ତତ୍ତ୍ୱ ପରିଦୃଷ୍ଟ ହୁଏ । ଜଗନ୍ନାଥ ସାହିତ୍ୟରେ ଜଗନ୍ନାଥଙ୍କୁ ଶୂନ୍ୟ ବୋଲି କୁହାଯାଇଛି । ଯାହାଙ୍କ ଅସ୍ତିତ୍ୱକୁ ଶୂନ୍ୟ ବା ନାସ୍ତି କରାଯାଇନାହିଁ । ତାଙ୍କ ରୂପ ଅଦୃଶ୍ୟ, ଅବର୍ଣ୍ଣନୀୟ । ସେହି ଅର୍ଥରେ ଶୂନ୍ୟପୁରୁଷ ପଦ ପ୍ରଯୁକ୍ତ ହୋଇଛି । ଶୂନ୍ୟରୁ ଜଗତର ସୃଷ୍ଟି ଓ ଶୂନ୍ୟ ହିଁ ସୃଷ୍ଟିତତ୍ତ୍ୱ ।

## ଷ

**ଷଟ୍‌କର୍ମ** – ତନ୍ତ୍ର ସାହିତ୍ୟର ଅନ୍ତର୍ଗତ । ତନ୍ତ୍ରଶାସ୍ତ୍ରମତେ ଏଥିପାଇଁ ନିର୍ଦ୍ଦିଷ୍ଟ ମନ୍ତ୍ର ଓ ଉପଚାର ବିଧିଗତ । ଏହା ମାଧମରେ ସ୍ତମ୍ଭନ, ମୋହନ, ବଶୀକରଣ, ଉଚ୍ଚାଟନ, ବିଦ୍ୱେଷ, ମାରଣ ଏହି ଷଟ୍‌କର୍ମ କରାଯାଏ ।

**ଷଟ୍‌ଚକ୍ର** – ସନ୍ଥ ସାହିତ୍ୟରେ ମୂଳ, ଲିଙ୍ଗ, ନାଭି, ହୃଦୟ, କଣ୍ଠ ଓ ଲଲାଟ - ଏହି ଛଅଚକ୍ର ବିଷୟରେ ଉଲ୍ଲେଖ ଅଛି ।

**ଷଡ୍‌ଦର୍ଶନ** – ଏହା ବୈଦିକ ସାହିତ୍ୟର ଅନ୍ତର୍ଗତ । ବ୍ରାହ୍ମଣ୍ୟବାଦୀମାନଙ୍କ ମତରେ ଦର୍ଶନ ଛଅଗୋଟି । ଯଥା - ସାଂଖ୍ୟ, ଯୋଗ, ନ୍ୟାୟ, ବିଶେଷିକ, ବେଦାନ୍ତ ଓ ମୀମାଂସା ।

**ଷଡ଼ଙ୍ଗ** – ବୈଦିକ ସାହିତ୍ୟର ଅନ୍ତର୍ଗତ । ଶିକ୍ଷା, କଳ୍ପ, ବ୍ୟାକରଣ, ନିରୁକ୍ତ, ଜ୍ୟୋତିଷ, ଛନ୍ଦ - ଏହି ଛଅଟି ବେଦାଙ୍ଗକୁ ଷଡ଼ଙ୍ଗ କୁହାଯାଏ ।

**ଷଡ଼ପଦୀ (Sestafe)** – ଏହା ସନେଟ୍‌ର ଅଂଶ ବିଶେଷ । ଛଅ ଚରଣକୁ ନେଇ ରଚିତ । ଏହାର ପାଦର ମେଳ ଯଥାକ୍ରମେ କକ ଖଖ ଗଗ କିମ୍ବା କଖ କଖ ଖଗ ଖଗ  ଭାବେ ରଚିତ ହୋଇଥାଏ ।

**ଷତ୍ୱବିଧି** – ଏହା ବ୍ୟାକରଣ ନିୟମ । ଅ, ଆ, ଭିନ୍ନ ଅନ୍ୟସ୍ୱର ଏବଂ 'କ'ଏବଂ 'ଓ'ର ଏହି ବର୍ଣ୍ଣମାନଙ୍କର ପରିସ୍ଥିତି 'ସ', 'ଷ' ହୁଏ ଯଥା ଦିଗୀଶା, ବିଷାଦ ।

**ଷୋଳଡମ୍ବରୁ** – ସନ୍ଥ ସାହିତ୍ୟରେ ଷୋଳଡମ୍ବରୁ କଥିତ ଅଛି । କଣ୍ଠଠାରୁ ପିଚା ଶେଷ ଭାଗ ପର୍ଯ୍ୟନ୍ତ ସ୍ଥାନ । ଏହାକୁ ସ୍ପାଇନାଲ କର୍ଡ଼ କୁହାଯାଏ । ରୁଦ୍ରସୁଧାନିଧି ଓ ତୁଳାଭିଣାର ତୃତୀୟ ଅଧାୟରେ ଡମ୍ବରୁ ମାନଙ୍କର ନାମ ଓ ବର୍ଣ୍ଣ ଦିଆଯାଇଛି ।

**ଷୋଳଦଳ** – ସନ୍ଥ ସାହିତ୍ୟରେ ଷୋଳଦଳ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ଉଲ୍ଲେଖ ଅଛି । ଜଗମୋହନ ଘର ଷୋଳଦଳ । ଏଠାରେ ୧୬ ଟି ଖମ୍ବ ରହିଛି ।

## ଲ

**ଲକ୍ଷକ ଶବ୍ଦ** – କାବ୍ୟରେ ପ୍ରୟୋଗ କରାଯାଉଥିବା ତିନି ପ୍ରକାର ଶବ୍ଦରୁ ଅନ୍ୟତମ । ଯେବେ ବାଚକ ଶବ୍ଦ ନିଜର ମୁଖ୍ୟ ଅର୍ଥର ବାଧିତ ହୋଇ ଅଥବା ପ୍ରୟୋଜନ ହେତୁ ନିଜସ୍ୱ ମୁଖ୍ୟ ଅର୍ଥ ସହିତ ସମ୍ବନ୍ଧିତ ଅର୍ଥ ପ୍ରତିପାଳନ କରିଥାଏ ତେବେ ଏହାକୁ ଲକ୍ଷକ ବା ଲାକ୍ଷଣିକ ଶବ୍ଦ କୁହାଯାଏ । ଲକ୍ଷକ ଶବ୍ଦରେ ଏହି ଲକ୍ଷଣା ଶକ୍ତି ବା ବ୍ୟାପାର ପ୍ରତିପାଳିତ ହୋଇଥାଏ ।

**ଲକ୍ଷଣା** – ଯଦି କୌଣସି ବାକ୍ୟର ମୁଖ୍ୟ ଅର୍ଥ ଶବ୍ଦର ଅନ୍ୱୟ ଦ୍ୱାରା ଜଣାପଡ଼େ ନାହିଁ ଏବଂ ଅନ୍ୱିତ ଅର୍ଥକୁ ପରିତ୍ୟାଗ କରି ପ୍ରୟୋଜନ ଦୃଷ୍ଟିରୁ ଅନ୍ୟ ଅର୍ଥକୁ ଗ୍ରହଣ କରେ ଓ ତାହା ମୁଖ୍ୟ ଅର୍ଥ ସହିତ ସମ୍ବନ୍ଧ ରଖେ ସେଠାରେ ଲକ୍ଷଣା ହୁଏ । ଲକ୍ଷଣା ବହୁ ପ୍ରକାର ଯଥା - ରୂଢ଼ି ଲକ୍ଷଣା, ପ୍ରୟୋଜନୀତା ଲକ୍ଷଣା । ପ୍ରୟୋଜନିତା ଲକ୍ଷଣା ଦୁଇ ପ୍ରକାର - ଶୁଦ୍ଧା ଓ ଗୌଣୀ । ଶୁଦ୍ଧା ଲକ୍ଷଣା ଓ ଗୌଣୀ ଲକ୍ଷଣା ପୁଣି ଦୁଇ ପ୍ରକାର - ଉପାଦାନ ଲକ୍ଷଣା ଓ ଲକ୍ଷଣ ଲକ୍ଷଣା ।

**ଲକ୍ଷ୍ୟ** – ଗୋରଥନାଥ ହଠଯୋଗ ସାଧନା ପାଇଁ ଲକ୍ଷ୍ୟକୁ ଚିହ୍ନିବା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ବୋଲି ବିବେଚନା କରୁଥିଲେ । ଲକ୍ଷ୍ୟ ଦୁଇପ୍ରକାର ଯଥା ବାହ୍ୟଲକ୍ଷ୍ୟ ଏବଂ ଆଭ୍ୟନ୍ତରୀଣ ଲକ୍ଷ୍ୟ । ବାହ୍ୟ ଲକ୍ଷ୍ୟରେ ଷୋହଳ ଆଧାର ବିଶିଷ୍ଟ ଏବଂ ଆଭ୍ୟନ୍ତର ଲକ୍ଷ୍ୟକୁ ଷଡ଼ଚକ୍ରର ସାଧନା ଭାବରେ ଗ୍ରହଣ କରାଯାଇଥାଏ ।

**ଲଘୁଉପନ୍ୟାସ** – ଇଂରାଜିରେ ଛୋଟ ଉପନ୍ୟାସକୁ novellet ର ସଂଜ୍ଞା ଦିଆଯାଇଥାଏ । ଏହି ଉପନ୍ୟାସ ଜନ୍ମରୁ ହିଁ ଛୋଟ ଉପନ୍ୟାସ ଭାବେ ରଚିତ ହୋଇଥାଏ ।

**ଲୟ** – ସନ୍ଥ ସାହିତ୍ୟରେ ଲୟ ସଂପର୍କରେ କୁହାଯାଇଛି । ରାଗାନୁରାଗ ଭକ୍ତି ଧର୍ମରେ ଆଗେ ଲୀଳା ପରେ ଲୟ । ମାତ୍ର ପଞ୍ଚସଖାଙ୍କ ଧର୍ମରେ ଆଗେ ଲୟ ପରେ ଲୀଳା । ପ୍ରଥମେ ପରମାତ୍ମାଙ୍କଠାରେ ଲୟ କଲେ କ୍ରମେ ଆତ୍ମା ଓ ପରମାତ୍ମାଙ୍କ ମିଳନ ହୁଏ । ଏହି ମିଳନଜନିତ ଆନନ୍ଦ - ତଲ୍ଲୀନଭାବ ହିଁ ଲୀଳା । ଲୀଳା ସ୍ୱରୂପରେ ପହଞ୍ଚିବା ପାଇଁ ପଞ୍ଚସଖା ଆଠଟି ସୋପାନ ଅତିକ୍ରମ କରିବାକୁ ନିର୍ଦ୍ଦେଶ ଦେଇଚନ୍ତି । ଯନ୍ତ୍ର,ମନ୍ତ୍ର, ତନ୍ତ୍ର, ଛାୟା, ଜ୍ୟୋତି ଓ ଅବାତ । ପ୍ରଥମେ ଯୋଗ ଓ ପରେ ଭୋଗ ହିଁ ପଞ୍ଚସଖା ଧର୍ମର ଥିଲା ଆଭିମୁଖ୍ୟ ।

**ଲୀଳା** – ଦେବତା ଏବଂ ମହାପୁରୁଷମାନଙ୍କର ଜୀବନ ବୃତ୍ତାନ୍ତକୁ ଲୀଳା କୁହାଯାଏ । ତେଣୁ ସେମାନଙ୍କର ଜୀବନର ଘଟଣାବଳୀର ନାଟ୍ୟରୂପ ବା ଅଭିନୟାତ୍ମକ ପ୍ରକାଶ ମଧ୍ୟ ଲୀଳା ନାମରେ ଅଭିହିତ ହୋଇଥାଏ । ଲୀଳା ପଦ୍ୟ ଆକାରରେ ରଚିତ ହୋଇଥାଏ ।

ଲୁଇପା – ଅଧିକାଂଶ ତାନ୍ତ୍ରିକ ପରଂପରାରେ ଲୁଇପା ପ୍ରଥମ ସିଦ୍ଧାଚାର୍ଯ୍ୟ । ପାଗ୍ ସାମ୍ ଜୋନ୍ ଜାଙ'' ଅନୁସାରେ ସେ ଉଡ୍‌ଡ୍ରୀୟାନର ଏକ କୈବର୍ତ୍ତ ପରିବାରେ ଜନ୍ମଗ୍ରହଣ କରିଥିଲେ ଓ ଉଡ୍‌ଡ୍ରୀୟାନର ରାଜାଙ୍କ ଦ୍ୱାରା ଲିପିକାର ଭାବରେ ନିଯୁକ୍ତ ହୋଇଥିଲେ । ସେ ଶବରୀପାଦଙ୍କ ଶିଷ୍ୟ ଥିଲେ ଓ ମହାଯୋଗେଶ୍ୱର ନାମରେ ଖ୍ୟାତ ଥିଲେ । ଜଣେ ବିଶିଷ୍ଟ ତନ୍ତ୍ରଯାନୀ ସିଦ୍ଧ ହୋଇଥିବାରୁ ଲୁଇପାଙ୍କ ନାମରେ ତେଙ୍ଗୁର ତାଲିକାରେ ମିଳୁଥିବା ସକଳ ଗ୍ରନ୍ଥ ତାନ୍ତ୍ରିକ ବୌଦ୍ଧଧର୍ମ ଦର୍ଶନ ପ୍ରଖ୍ୟାପକ । 'ଦୋହା କୋଷ' ବ୍ୟତୀତ ତାଙ୍କ ଦ୍ୱାରା ରଚିତ ଶ୍ରୀଭଗବଦଭି ସମୟ, ଅଭିସମୟବିଭଙ୍ଗ, ବୁଦ୍ଧୋଦୟ, ବଜ୍ରସତ୍ତ୍ୱସାଧନ ପ୍ରଭୃତି ଗ୍ରନ୍ଥ ଗୁଡ଼ିକର ସୂଚନାମିଳେ । ଚର୍ଯ୍ୟାଗୀତିକା କୋଷସ୍ଥ ୧ମ ଓ ୨୯ଶ ଚର୍ଯ୍ୟାଦ୍ୱୟ ଲୁଇପାଙ୍କ ରଚନା ।

ଲୋକକଥା – ପରଂପରା କ୍ରମେ ଲୋକ ମୁଖରେ ବଂଚି ରହିଥିବା କଥା ଲୋକକଥା ଭାବରେ ପରିଚିତ । ଏହାର ଲେଖକ କେହି ନୁହଁନ୍ତି । ଲୋକକଥାର ପ୍ରଧାନ ଚରିତ୍ର ହେଉଛି ମୁଦ୍ରିତ ପୃଷ୍ଠାପରେ କେବଳ ଲିପିବଦ୍ଧ ରହିନଥାଏ । ଗୋଟିଏ ଜାତିର ରୀତି, ଐତିହ୍ୟ ଓ ବିଶ୍ୱାସ ଇତ୍ୟାଦି ବିସ୍ତୃତ ଭାବେ ପ୍ରଚଳିତ ଥାଏ ଲୋକମୁଖରେ । ଏହା ମାନବଜାତିର ଚିତ୍ର, ପ୍ରତ୍ନତତ୍ତ୍ୱ ସହ ମଧ୍ୟ ଅଙ୍ଗାଙ୍ଗୀଭାବେ ଜଡ଼ିତ । ଲୋକକଥା ଯୁଗେ ଯୁଗେ ଲୋକମୁଖରେ ଆଦୃତ ଥାଏ । ଏହା ସାହିତ୍ୟ ଓ ସଂସ୍କୃତିର ଏକ ମୁଖ୍ୟ ବିଭବ ।

ଲୋକ ନାଟକ – ଲୋକ ନୃତ୍ୟ ଓ ଲୋକ ଗୀତର ସୁମଧୁର ସ୍ୱମନ୍ୱୟରୁ ଲୋକନାଟକର ସୃଷ୍ଟି । ଲୋକ ନାଟକକୁ ଦୁଇଟି ପ୍ରଧାନ ଶ୍ରେଣୀରେ ବିଭକ୍ତ କରାଯାଇଥାଏ । ଯଥା- ସଂଳାପ ବିହୀନ ଗୀତ ନୃତ୍ୟ ସର୍ବସ୍ୱ ଲୋକନାଟକ ଏବଂ ସଂଳାପଯୁକ୍ତ, ସଂଗୀତବହୁଳ ଏବଂ ନାଟକୀୟ ଆଙ୍ଗିକ ସମ୍ପନ୍ନ ଲୋକନାଟକ ।

ରାମଲୀଳା, ରାହାସଲୀଳ, ସୁଆଙ୍ଗ, ଗୀତିନାଟ୍ୟ, ଗୀତାଭିନୟ ଓ ମୋଗଲତାମସା ଦ୍ୱିତୀୟ ଶ୍ରେଣୀର ଓ ଅନ୍ୟଗୁଡ଼ିକ ଯଥା- ରସରକେଳି, ଡାଲଖାଇ, ଜାମୁଡାଳୀ, ଦଣ୍ଡନାଟ, କେଳାକେଲୁଣୀ, ରାଉତ ରାଉତାଣୀ, ଶବର ଶବରୁଣୀ, ଚଢ଼େଇଆ ଚଢ଼େୟାଣୀ, ନଟ, ଚଇତିଘୋଡ଼ା ନାଟ, ଛଉନାଚ, ପାଟୁଆନାଚ, ସଖୀନାଟ, ଗୋଟିପୁଅ ନାଚ, ଗୋପାଳଙ୍କ ଓଗାଳ, ପାଇକ ନାଚ, ଦାସକାଠିଆ ।

ଲୋକନାଟ୍ୟ– ଲୋକନାଟକର ଉତ୍ପତ୍ତି ଲୋକ ବିଶ୍ୱାସ, ଲୋକ ପ୍ରଚଳନ, ଧାର୍ମିକ ଜନ ପରଂପରା, ବୀରପୂଜା, ମନୋରଞ୍ଜନ, ଉତ୍ସବ, ମାଙ୍ଗଳିକ ପର୍ବ ପାଳନ ଅବସରରେ ହୋଇଥାଏ । ଲୋକ ସମ୍ବନ୍ଧିତ ଉତ୍ସବ, ମାଙ୍ଗଳିକ କାର୍ଯ୍ୟରେ ଏହି ଲୋକନାଟକର ଆବଶ୍ୟକତା ବୋଲି ମନେକରାଯାଏ । ଲୋକନାଟକକୁ ଆଧୁନିକ ନାଟକର ଉତ୍ପତ୍ତି

ବୋଲି ମତ ଦେଇଛନ୍ତି । ରାସ, ରାମଲୀଳା, ସୁଆଙ୍ଗ, ଯାତ୍ରା ପ୍ରଭୃତିର ଲୋକନାଟକର ଏକ ଉତ୍ତରିତ ରୂପ । ଏହା ଦୁଇ ଭାଗରେ ବିଭକ୍ତ - ପ୍ରଦର୍ଶନାତ୍ମକ ଲୋକନାଟ୍ୟ ଏବଂ ନୃତ୍ୟଭିତ୍ତିକ ଲୋକନାଟ୍ୟ ।

**ଲୋକନୃତ୍ୟ** – ଲୋକନୃତ୍ୟ ବସ୍ତୁତଃ ପ୍ରାକୃତିକ ନୃତ୍ୟ ଅଟେ । ଲୋକ ଜୀବନରେ ଯେତେବେଳେ ଯେଉଁ କ୍ଷଣରେ ଭାବନା ଜାଗ୍ରତ ହୁଏ, ସେହି ଆବେଗ ତଥା ଭାବନା ଅନୁକୂଳ କୌଣସି ନା କୌଣସି ପ୍ରକାରେ ଏହା ନୃତ୍ୟ ରୂପ ନେଇଥାଏ । ଏହା ସ୍ୱତସ୍ଫୂର୍ତ ତଥା ସ୍ୱାଭାବିକ ଢଙ୍ଗରେ ହୋଇଥାଏ । ଏଥିରେ କଳାତ୍ମକ ଭାବବୈଚିତ୍ର୍ୟ ଥାଏ ସତ କିନ୍ତୁ କଳାତ୍ମକ ପରିବେଷଣର ବ୍ୟାକରଣ ନଥାଏ । ଏହି ନୃତ୍ୟ ଚେତନାଗତ ନୁହେଁ । ଅରଣ୍ୟର ଆଦିମ ଜନଜାତିର ଏହି ଲୋକନୃତ୍ୟର ନିଛକ ରୂପ ଦେଖିବାକୁ ମିଳେ । ଏହି ନୃତ୍ୟଗୁଡ଼ିକ ଭୂତପ୍ରେତ ବିଶ୍ୱାସ, କୃଷି, ଯୌନ ସଂକେତ, ଯାଦୁବିଦ୍ୟା, ବିବାହ, ଜନ୍ମମୃତ୍ୟୁର ସନ୍ଦେଶ ପ୍ରକାଶ କରିଥାଏ ।

**ଲୋକ ପରମ୍ପରା** – ଲୋକ ଜୀବନରେ ଯେଉଁ ରୀତିନୀତି, ଆଚାର, ବ୍ୟବହାର, ଚାଲିଚଳନ ପ୍ରଚଳିତ ଥାଏ, ତାହା ଲୋକ ପରମ୍ପରା ବୋଲି କୁହାଯାଏ । ଲୋକ ପରମ୍ପରା ଗୋଟିଏ ଜାତିର ସାମଗ୍ରିକ ଜୀବନବୋଧକୁ ସୂଚାଇ ଥାଏ ଏବଂ ଏକ ନିଜସ୍ୱ ଜୀବନସାମଗ୍ରୀ ଭିତରେ ଅଭିବ୍ୟକ୍ତ ଲାଭ କରିଥାଏ । ଲୋକ ପରଂପରାର ଗୋଟିଏ ଜାତିର ଆତ୍ମିକ ତଥା ଆଧ୍ୟାତ୍ମିକ ଜୀବନଚର୍ଯ୍ୟାକୁ ବୁଝାଇଥାଏ ଯାହା ସାହିତ୍ୟର ପ୍ରଧାନ ଉପାଦାନ ।

**ଲୋକ ପ୍ରବାହ** – ଲୋକ ପ୍ରବାହ ଲୋକ ପରଂପରା ଅନୁରୂପ ଅର୍ଥ ବହନ କରୁଥିଲେ ମଧ୍ୟ ଏହା ଲୋକମାନଙ୍କ ଆନନ୍ଦ ପ୍ରବାହର ଶକ୍ତି ଓ କାରଣ ଗୁଡ଼ିକୁ ଦର୍ଶାଇଥାଏ ।

**ଲୋକବିଦ୍ୟା** – ଲୋକବିଦ୍ୟା ଲୋକପଯୋଗୀ ବିଦ୍ୟା ନୁହେଁ ପରନ୍ତୁ ଏହିପରି ଏକ ବିଦ୍ୟା ଯାହା ଲୋକଙ୍କର ବିବିଧ ବ୍ୟବସାୟ, ବ୍ୟାପାର ଏବଂ ତଦ୍ ବିଷୟରେ ଅନୁଷ୍ଠାନର ପରଂପରା ସହିତ ଜଡ଼ିତ । କୃଷି ବିଜ୍ଞାନ ଲୋକଉପଯୋଗୀ ବିଦ୍ୟା କିନ୍ତୁ କୃଷି କର୍ମରେ ପ୍ରବୃତ୍ତ ହେଲେ ଲୋକ କେଉଁ ପ୍ରକାର ଅନୁଷ୍ଠାନ ଗତ କର୍ମରେ ନିୟୋଜିତ ରହେ ଏବଂ ତାଙ୍କର କୃଷିକର୍ମର ସ୍ୱରୂପ କ'ଣ ଏହା ଲୋକବିଦ୍ୟାର ଅନ୍ତର୍ଗତ ହୁଏ । ଲେକବିଦ୍ୟା ମଧ୍ୟ ଲୋକଜୀବନର ଭେଉମୂଳ, ଉପଯୋଗୀତା, କୃଷିକର୍ମ ପ୍ରଭୃତି ପାରମ୍ପରିକ ରୂପେ ଚାଲୁଥାଏ । ଲୋକବିଦ୍ୟା ଲୋକପ୍ରବାହର ଏକ ଅଂଶ ହୋଇପାରେ ।

**ଲୋକମାନସ** – ଲୋକ ସାହିତ୍ୟ ନିର୍ମାଣର ପୃଷ୍ଠଭୂମିରେ ଏକ ସାମୂହିକ ଲୋକମାନସର କଳ୍ପନା କରାଯାଇଥାଏ । ଅନେକ ବିଦ୍ୱାନଙ୍କ ମତରେ ଲୋକଗୀତ ତଥା ଲୋକକଥା

ପ୍ରଭୃତିର ରଚନା ଲୋକ ସମୁଦାୟଙ୍କ ଦ୍ୱାରା ସାଧିତ ହୋଇଥାଏ । କେହି କେହି ମତ ଦିଅନ୍ତି ଯେ ଲୋକ ସାହିତ୍ୟର ରଚନା କୌଣସି ଗୋଟିଏ ଲୋକଦ୍ୱାରା ପ୍ରଥମେ ହୋଇଥାଏ ଏବଂ ପରବର୍ତ୍ତୀ ସମୟରେ ସମୁଦାୟ ସମାଜ ଦ୍ୱାରା ଏହାର ପରିବର୍ତ୍ତନ ଓ ପରିବର୍ଦ୍ଧନ ଘଟିଥାଏ । ତେବେ ଲୋକମାନସ ଏକ ନୈସର୍ଗିକ ସାମୂହିକ ବ୍ୟକ୍ତିସତ୍ତା ସଙ୍ଗେ ସଙ୍ଗେ ମୌଳିକ ରଚୟିତାଙ୍କ ମାନସଭୂମିକୁ ସୂଚାଇ ଥାଏ ।

**ଲୋକସାହିତ୍ୟ** – 'ଲୋକ' ଶବ୍ଦର ଅର୍ଥ ହେଉଛି ଜନତା ବା ଜନସାଧାରଣ । ଯେଉଁ ସାହିତ୍ୟ ଗ୍ରାମ୍ୟ କଥିତ ଭାଷାରେ ରଚିତ ହୋଇ ଜନସାଧାରଣଙ୍କ ଦ୍ୱାରା ଗୃହୀତ, ଜନସାଧାରଣଙ୍କ ନିମିତ୍ତ ଅଭିପ୍ରେତ ଏବଂ ଜନସାଧାରଣଙ୍କର ଆନନ୍ଦ ବିଧାନରେ ସମର୍ଥ ତାହା-ହିଁ ଲୋକ ସାହିତ୍ୟ । ଏହା ବିଦଗ୍ଧ ଓ ଶିଷ୍ଟ ସାହିତ୍ୟଠାରୁ ସ୍ୱତନ୍ତ୍ର ।

ଲୋକ କଥା, ଲୋକଗୀତ, ଲୋକ ସଂସ୍କୃତି କୁ ବୁଝାଇଥାଏ । କୌଣସି ଜାତିର ପାରଂପରିକ କଥା, ଗୀତ, ଢଗଢ଼ମାଳି, ଓଷା, ବ୍ରତ, ପର୍ବପର୍ବାଣୀର ଗୀତ ଏହି ଲୋକ ସାହିତ୍ୟର ଅନ୍ତର୍ଗତ ।

## କ୍ଷ

**କ୍ଷୁଦ୍ରଗଳ୍ପ** – କ୍ଷୁଦ୍ର ଆକାରର ଗଳ୍ପ କ୍ଷୁଦ୍ରଗଳ୍ପ । ଅନ୍ୟ ଭାଷାରେ ଯଥାସମ୍ଭବ ସଂକ୍ଷିପ୍ତ, ସଂଯତ ତଥା ସୀମିତ ସମୟରେ ଅଖଣ୍ଡ, ଅପରିମିତ, ଅନୁଭୂତିମୟ କଥା କାହାଣୀକୁ କ୍ଷୁଦ୍ରଗଳ୍ପର କୁହାଯାଏ । ଡଃ ବିଭୂତି ପଟ୍ଟନାୟକଙ୍କ ଭାଷାରେ କଥାବସ୍ତୁ ଅପେକ୍ଷା ଭାବବସ୍ତୁ, ଚରିତ୍ର ଅପେକ୍ଷା ଚରିତ୍ରାଭାସ, ପୃଷ୍ଠଭୂମି ଅପେକ୍ଷା ପରିବେଶ, ବର୍ଣ୍ଣନା ଅପେକ୍ଷା ବ୍ୟଞ୍ଜନା ଓ ଆୟତନର କ୍ଷୁଦ୍ରତା ହେଉଛି କ୍ଷୁଦ୍ରଗଳ୍ପର ପ୍ରଧାନ ଉପଜିବ୍ୟ ବସ୍ତୁ । ଡଃ କୃଷ୍ଣଚନ୍ଦ୍ର ବେହେରାଙ୍କ ଭାଷାରେ 'ପରିମିତ ସମୟ ମଧ୍ୟରେ ଜୀବନର ଗୋଟିଏ ଦିଗ, ଖଣ୍ଡ ଖଣ୍ଡ ଆବେଗ, ଅନୁଭୂତି, ବିଶେଷ ଦୃଶ୍ୟ ବା ଘଟଣାକୁ ଯାହା ସଂହତ ଓ ସଂଯତ ରୂପେ ପ୍ରଭାବଶାଳୀ କରି ପ୍ରକାଶ କରେ ତାହାହିଁ କ୍ଷୁଦ୍ରଗଳ୍ପ' । ବିଶ୍ୱକବି ରବୀନ୍ଦ୍ର ନାଥ ଟାଗୋରଙ୍କ ଭାଷାରେ ''ନାହିଁ ବର୍ଣ୍ଣନାର ଛଟା, ଘଟନାର ଘନଘଟା / ନାହିଁ ତତ୍ତ୍ୱ, ନାହିଁ ଉପଦେଶ / ଅନ୍ତରେ ଅତୃପ୍ତି ଭବେ, ସାଙ୍ଗକରି ମନେହବେ, ଶେଷ ହଏ, ହଇଲ ନା ଶେଷ । ଇଂରାଜୀ ସମାଲୋଚକ ହଡ୍‌ସନ (Hudson) ଙ୍କ ଭାଷାରେ - "Singleness of aim and singleness of effect are, therefore, two great causes by which we have to try the value of a short story as a piece of art."



